# ବୈଷ୍ଣବ ସାହିତ୍ୟ ତତ୍ତ୍ୱ

## ୨-ଜ୍ଞାନମିଶ୍ରାଭକ୍ତି



ଡଃ ଆଶୁତୋଷ ପଟ୍ଟନାୟକ ....

# ବୈଷ୍ଣବ ସାହିତ୍ୟ ତତ୍ତ୍ୱ (୨)

## ( ଜ୍ଞାନମିଶ୍ରାଭକ୍ତି )

ଡକ୍ଟର ଆଶୁତୋଷ ପଟ୍ଟନାୟକ
ଏମ୍.ଏ., ପିଏଚ୍.ଡି, ଡି.ଲିଟ୍

# ବୈଷ୍ଣବ ସାହିତ୍ୟ ତତ୍ତ୍ୱ (୨)

ଲେଖକ :
ଡକ୍ଟର ଆଶୁତୋଷ ପଟ୍ଟନାୟକ, ଏମ.ଏ, ପିଏଚ୍.ଡ଼ି, ଡି.ଲିଟ୍
ପ୍ରାଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

ପ୍ରକାଶକ :
ଶ୍ରୀ ଅମିତବିକ୍ରମ ପଟ୍ଟନାୟକ
ୟୁନିଟ-୬, ଭୁବନେଶ୍ୱର

ପ୍ରଥମ ସଂସ୍କରଣ
କାର୍ତ୍ତିକ ପୂର୍ଣ୍ଣିମା ୧୯୮୯

ମୁଦ୍ରଣ :
ଶ୍ରୀ ଲକ୍ଷ୍ମୀ ପ୍ରିଣ୍ଟର୍ସ
ଭୁବନେଶ୍ୱର

ମୂଲ୍ୟ—ତିରିଶ ଟଙ୍କା

Vaivshnav Sahitya Tatwa (2)

**Dr Ashutosh Pattanayak**, M.A, Ph.D.D Litt
Reader, P. G. Department of Oriya
Utkal University

Publisher : Amit Bikram Pattanaik
Unit-VI, Bhubaneswar

1st Edition
Kartik Purnami 1989

Printed at **Sri Laxmi Printers**
Bhubaneswar-9

Price—Rupees Thirty only

# ମୁଖବନ୍ଧ

ବୈଷ୍ଣବ ସାହିତ୍ୟ ତତ୍ତ୍ୱର ଏହି ଦ୍ୱିତୀୟ ଭାଗରେ, ଜ୍ଞାନମିଶ୍ରା ଭକ୍ତି ଧର୍ମର ତତ୍ତ୍ୱଗୁଡ଼ିକୁ କେବଳ ଆଲୋଚନା କରାଯାଇଛି । ଏହି ତତ୍ତ୍ୱଗୁଡ଼ିକ ଜଟିଳ, ସଙ୍କେତାତ୍ମକ ଏବଂ ଦୁର୍ବୋଧ ହେତୁ, ଏହାକୁ ଭାଗଭାଗ କରି ଦୃଷ୍ଟାନ୍ତ ସହିତ ଯଥା ସମ୍ଭବ ସରଳ ଭାବରେ ଉପସ୍ଥାପନା କରିବାର ଚେଷ୍ଟା କରାଯାଇଛି । ଓଡ଼ିଆ ଜ୍ଞାନମିଶ୍ରାଭକ୍ତି ସାହିତ୍ୟରେ ଏଭଳି ଅନେକ ସାଙ୍କେତିକ ଶବ୍ଦ ରହିଛି, ଯେଉଁ ଗୁଡ଼ିକର ଗୂଢ଼ାର୍ଥ ନ ଜାଣିଲେ, ସେହି ସେହି ସାହିତ୍ୟର ଅନ୍ତଃସ୍ୱରକୁ ସହଜରେ ଧରି ହୁଏନାହିଁ । "ବୈଷ୍ଣବ ସାହିତ୍ୟର ଭାଷା ଓ ଶୈଳୀ" ଗ୍ରନ୍ଥରେ ଏଭଳି ଶବ୍ଦ ଗୁଡ଼ିକର ବାସ୍ତବ ମର୍ମାର୍ଥ ଏବଂ ଶୁଦ୍ଧରାଗାନୁଗା ଭକ୍ତି ସାହିତ୍ୟ ତଥା ଜ୍ଞାନମିଶ୍ରାଭକ୍ତି ସାହିତ୍ୟର ଭାଷା ଓ ଶୈଳୀ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିବାର ଲକ୍ଷ୍ୟ ରହିଛି ଏବଂ ତଦନୁଯାୟୀ ମଧ୍ୟ ମୋର ଉଦ୍ୟମ ଆରମ୍ଭ କରିଛି । ଆଶା, ଈଶ୍ୱରଙ୍କ ଆଶୀର୍ବାଦରୁ ମୋର ଏହି ଉଦ୍ୟମ ସଫଳ ହେବ ।

ଏହି ଗ୍ରନ୍ଥର ବିଶେଷତ୍ୱ ହେଉଛି, ମୁଁ ତଥାକଥିତ ଭାବରେ ଜ୍ଞାନମିଶ୍ରାଭକ୍ତି ଧର୍ମର ମୂଳକୁ ବୌଦ୍ଧଧର୍ମ ସହିତ ସମ୍ପୃକ୍ତ ନକରି, ପ୍ରାଚୀନତମ ସାଂଖ୍ୟଧର୍ମର ନିର୍ଗୁଣ ପୁରୁଷତତ୍ତ୍ୱ ପାଖକୁ ନେଇଛି । ସାଂଖ୍ୟଧର୍ମର ନିର୍ଗୁଣ ପୁରୁଷ, ନିର୍ଗୁଣ ସାଧନା ଓ ନିର୍ଗୁଣସ୍ଥିତି ପରବର୍ତ୍ତୀ କାଳରେ ଉପନିଷଦ, ଯୋଗଦର୍ଶନ ଓ ଭକ୍ତି ପ୍ରଧାନ ଭାଗବତ ଧର୍ମରେ ଗର୍ଭିତ ହେବା ଫଳରେ ସେଥିରେ ରୂପାନ୍ତର ଘଟି ତାହା ଉପରି ଜ୍ଞାନମିଶ୍ରାଭକ୍ତି ଧର୍ମସୃଷ୍ଟି କରିଥିଲା । ତାହା ଦର୍ଶାଇବା ସହିତ, ଭାଗବତ ଧର୍ମର କେନ୍ଦ୍ର ପୀଠ ଓଡ଼ିଶାରେ ଏହି ସାଧନା ମାର୍ଗ ଉପରି ପଲ୍ଲବିତ ହୋଇଥିଲା, ତାହା ମୁଁ ଜ୍ଞାନମିଶ୍ରା ଭକ୍ତିଧର୍ମ ଆଲୋଚନା ପ୍ରସଙ୍ଗରେ ପ୍ରତିପାଦନ କରିଛି । ବଳରାମ ଆଦି ପଞ୍ଚସଖା କେବେ ପ୍ରଚ୍ଛନ୍ନ ବୌଦ୍ଧ ନଥିଲେ କିମ୍ବା ବୌଦ୍ଧ

ଦର୍ଶନକୁ ନିଜ ସାହିତ୍ୟରେ ଅବତାରଣା କରିନଥିଲେ । ସେମାନେ ଖାଣ୍ଟି ବିଷ୍ଣୁ ଉପାସକ ବୈଷ୍ଣବ ଥିଲେ । ବୈଷ୍ଣବ ଧର୍ମର ସମସ୍ତ ମନ୍ତ୍ର, ନାମ, ରୂପ ଓ ଭକ୍ତିମାର୍ଗ ସେମାନଙ୍କ ଧର୍ମରେ ଅଙ୍ଗୀଭୂତ ହୋଇଥିଲା । ଏହା ସହିତ ସେମାନେ ନିର୍ଗୁଣ କଳ୍ପନା ଓ ଯୋଗସାଧନାକୁ ବିଶେଷ ପ୍ରାଧାନ୍ୟ ଦେଉଥିଲେ । ଏହାହିଁ ହେଉଛି ସେମାନଙ୍କ ଆଚରିତ ଧର୍ମର ସଂକ୍ଷିପ୍ତ ପରିଚୟ । ମୋର ଏହି ଆଲୋଚନା ବେଳେ ଜ୍ଞାନମିଶ୍ରାଭକ୍ତି ଧର୍ମର ସମସ୍ତ ଗ୍ରନ୍ଥ ଏବଂ ସମସ୍ତ କବିଙ୍କୁ ଆଲୋଚନା ପରିସରକୁ ଆଣିନାହିଁ । କେବଳ ତତ୍ତ୍ୱବର୍ଣ୍ଣନା ପାଇଁ ଆନୁଷଙ୍ଗିକ ଉପାଦାନ ଯେତିକି ଗ୍ରନ୍ଥରୁ ଆବଶ୍ୟକ ତାହାହିଁ ଗ୍ରହଣ କରାଯାଇଛି । "ବୈଷ୍ଣବ ସାହିତ୍ୟର ଭାଷା ଓ ଶୈଳୀ" ଶୀର୍ଷକ ଗ୍ରନ୍ଥରେ ଯଥାସମ୍ଭବ ସମସ୍ତ କବି ଓ ଜ୍ଞାନମିଶ୍ରାଭକ୍ତି ସାହିତ୍ୟକୁ ଉଲ୍ଲେଖ କରିବାର ଲକ୍ଷ୍ୟ ରହିଥିବାରୁ ସୀମିତ ଜ୍ଞାନମିଶ୍ରାଭକ୍ତି ସାହିତ୍ୟର ଆଧାରରେ ଏହି ଗ୍ରନ୍ଥ ରଚିତ ହୋଇଛି । ଆଶାକରୁଛି, ମୋର ଏହି ଆଲୋଚନା ସମସ୍ତ ତତ୍ତ୍ୱକୁ ପ୍ରାଞ୍ଜଳ କରିବାରେ ସମର୍ଥ ହେବ ।

ସୁଧୀ ପାଠକ ସମାଜ ଓ ଗବେଷକ ବୃନ୍ଦ ମୋର ଏହି ନୂତନ ଆଭିମୁଖ୍ୟ ପ୍ରତି ସହୃଦୟତା ପ୍ରକାଶ କଲେ ମୋର ଶ୍ରମ ସାର୍ଥକ ହୋଇଛି ବୋଲି ଅନୁଭବ କରିବି ।

ଶ୍ରୀକୃଷ୍ଣାର୍ପଣମସ୍ତୁ

ବିନୀତ

ଆଶୁତୋଷ ପଟ୍ଟନାୟକ

# ସୂଚୀପତ୍ର





## ପ୍ରଥମ ପରିଚ୍ଛେଦ

# ଜ୍ଞାନମିଶ୍ରାଭକ୍ତି କୈନ୍ଦ୍ରିକ ବୈଷ୍ଣବ ଧର୍ମର ପୃଷ୍ଠଭୂମି

"ବୈଷ୍ଣବ ସାହିତ୍ୟତତ୍ତ୍ୱ" (ଶୁଦ୍ଧାଭକ୍ତି) ପୁସ୍ତକର ପ୍ରଥମ ଖଣ୍ଡରେ ଓଡ଼ିଆ ସାହିତ୍ୟରେ ପ୍ରତିଫଳିତ ଶୁଦ୍ଧରାଗାନୁଗା ଭକ୍ତି-ତତ୍ତ୍ୱର ବିଚାର କରାଯାଇଛି । ତାହା ହେଉଛି ବୈଷ୍ଣବଧର୍ମର ସଗୁଣ ଉପାସନା-ଦିଗ । ବୈଷ୍ଣବ ଧର୍ମରେ ଅନ୍ୟ ଏକ ନିର୍ଗୁଣ ଉପାସନା ଧାରାର ପ୍ରଚଳନ ମଧ୍ୟ ଥିଲା । ଏହାର ନାମ ଜ୍ଞାନମିଶ୍ରାଭକ୍ତି ମାର୍ଗ ଅନେକ ଏହାକୁ ବୈଷ୍ଣବ ଧର୍ମର ଅନ୍ତର୍ଭୁକ୍ତ କରିବାକୁ ପ୍ରସ୍ତୁତ ହୁଅନ୍ତି ନାହିଁ । କାରଣ ଏଥିରେ ଥିବା ଶୂନ୍ୟବାଦ, ଷଡ଼ଚକ୍ର ସାଧନା ଓ ପିଣ୍ଡବ୍ରହ୍ମାଣ୍ଡବାଦ ଆଦି ପ୍ରସଙ୍ଗ ଗୁଡ଼ିକୁ ହିନ୍ଦୁତନ୍ତ୍ର ଓ ବୌଦ୍ଧତନ୍ତ୍ରର କଥାବସ୍ତୁ ସେମାନେ ବୈଷ୍ଣବ ଧର୍ମଠାରୁ ପୃଥକ୍ କରି ଦେଇଥା'ନ୍ତି । କିନ୍ତୁ ବାସ୍ତବ କ୍ଷେତ୍ରରେ ଏଗୁଡ଼ିକ ବୈଷ୍ଣବଧର୍ମର ତତ୍ତ୍ୱ-ବହିର୍ଭୂତ ପ୍ରସଙ୍ଗ ନୁହେଁ । ଓଡ଼ିଶାରେ ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ଶୁଦ୍ଧରାଗାନୁଗା ଭକ୍ତିମାର୍ଗର ପ୍ରଚାର ଓ ପ୍ରସାର କାର୍ଯ୍ୟ ଆରମ୍ଭ ହେଲାବେଳେ ଓଡ଼ିଶାରେ ପୂର୍ବରୁ ନିର୍ଗୁଣ ସାଧନା କୈନ୍ଦ୍ରିକ ବୈଷ୍ଣବ ଧର୍ମର ସତ୍ତା ବେଶ୍ ସୁଦୃଢ଼ଥିଲା । ଏହାକୁ ବାସ୍ତବରେ ଉତ୍କଳର ମୂଳ ବୈଷ୍ଣବଧର୍ମ କୁହାଯାଇପାରେ । ଏହାର ସାଧନାମାର୍ଗ ହେଉଛି ଜ୍ଞାନମିଶ୍ରାଭକ୍ତି ସାଧନାମୂଳକ ଏବଂ ଏହାର କେନ୍ଦ୍ରବିନ୍ଦୁ ହେଉଛନ୍ତି ନିର୍ଗୁଣ ବ୍ରହ୍ମର ପ୍ରତୀକ ଶ୍ରୀଜଗନ୍ନାଥ ମହାପ୍ରଭୁ । ସେ ନିର୍ଗୁଣ ରାଧାକୃଷ୍ଣ ଓ ନିର୍ଗୁଣ ରାମଙ୍କର ପ୍ରତୀକ ମଧ୍ୟ । ବଳରାମ, ଜଗନ୍ନାଥ, ଅଚ୍ୟୁତ, ଯଶୋବନ୍ତ ଓ ଅନନ୍ତ ଆଦି ପଞ୍ଚସଖା ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ଏହି ଧର୍ମର ମୁଖ୍ୟ ଦାୟିତ୍ୱବହ ରୂପେ

ଆବିର୍ଭୂତ ହୋଇଥିଲେ ମଧ୍ୟ ତାଙ୍କର ବହୁ ପୂର୍ବରୁ ଏହାର ଅନ୍ତଃସ୍ରୋତ ପ୍ରବାହିତ ହେଉଥିଲା । ଖ୍ରୀଷ୍ଟୀୟ ଷୋଡଶ ଶତାବ୍ଦୀରୁ ସପ୍ତଦଶଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଏହି ଧର୍ମର ପ୍ରଚାର ଆଭିମୁଖ୍ୟ ବହନ କରି ଓଡ଼ିଆ ସାହିତ୍ୟ ପୁଷ୍ଟ ହୋଇ-ଉଠିଛି । ତେଣୁ ଏହି ଧର୍ମର ମୂଳସ୍ରୋତ ଓ ତାତ୍ତ୍ୱିକ ଦିଗ ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିବା ପ୍ରତ୍ୟେକ ଓଡ଼ିଆ ସାହିତ୍ୟ ପ୍ରେମୀଙ୍କ ପକ୍ଷରେ ଏକାନ୍ତ ଆବଶ୍ୟକ ଓଡ଼ିଶାର ନିର୍ଗୁଣ ଧର୍ମଧାରା ସମ୍ବନ୍ଧରେ ପର୍ଯ୍ୟାପ୍ତ ଆଲୋଚନା ହୋଇ ସାରିଛି । ତଥାପି ଏହାର ମୂଳ ଉତ୍ସକୁ ଅନୁସନ୍ଧାନ କରିବାର ପ୍ରୟାସ ଏ ପର୍ଯ୍ୟନ୍ତ ସଫଳ ହୋଇପାରି ନାହିଁ ବୋଲି ମୋର ବିଶ୍ୱାସ । କେତେକ ଏହାକୁ ଉତ୍ତର ଭାରତୀୟ ସନ୍ଥଧର୍ମ ସହିତ ସମ୍ପୃକ୍ତ କଳ୍ପିବଲେ, ଆଉ କେତେକ ନାଥଧର୍ମ ସହିତ କେତେକ ବୌଦ୍ଧଧର୍ମ ସହିତ ଓ ଆଉ କେତେକ ଉପନିଷଦୀୟ ଚିଂତାଧାରା ସହିତ ସମ୍ପର୍କିତ କରିଥାନ୍ତି । ଉକ୍ତ ଧର୍ମଗୁଡ଼ିକ ସହିତ ନିଶ୍ଚୟ ଏହାର ଅନେକ ସମ୍ପର୍କ ରହିଛି ଏହାକୁ ଅସ୍ୱୀକାର କରିହେବ ନାହିଁ । କିନ୍ତୁ ପ୍ରକୃତରେ ଏହାର ମୂଳ କ'ଣ ସେଥିରେ ନିହିତ ? ନା ନୁହେଁ । ଏହାର ମୂଳ ହେଉଛି ଅନ୍ୟ ଏକ ସ୍ଥାନରେ ବୃକ୍ଷର ଶାଖା, ପ୍ରଶାଖା, ସୁମନ ଭଳି ଏହି ଧର୍ମରେ ବିଭିନ୍ନ ଧର୍ମ ଧାରଣାର ତତ୍ତ୍ୱ-ସୁଷମା ବିକଶିତ ହୋଇଛି ଏବଂ ତାହା ସ୍ୱାଭାବିକ ପରିଣତି ମଧ୍ୟ ।

## ଜ୍ଞାନମିଶ୍ରାଭକ୍ତି ଧର୍ମର ଉଦ୍ଭବ ଓ ବିକାଶ

ବୈଦିକ ଯୁଗର ପୂର୍ବାର୍ଦ୍ଧ ପ୍ରତି ଦୃଷ୍ଟିପାତ କଲେ ଦେଖାଯାଏ, ବୈଦିକ ଋଷିବୃନ୍ଦ ଐହିକ ଓ ପାରତ୍ରିକ ସୁଖ ପାଇଁ ଯଜ୍ଞାନୁଷ୍ଠାନ ଓ ବେଦପାଠ ଉପରେ ପ୍ରାଧାନ୍ୟ ଅର୍ପଣ କରିଥିଲେ । ଏହାକୁ କର୍ମ ଓ ଭକ୍ତି ମାର୍ଗର ସମନ୍ୱୟ କୁହାଯାଇ ପାରେ । କିନ୍ତୁ ଏହି ସାଧନାମାର୍ଗ କ୍ରମେ ମୂଲ୍ୟହୀନ, ଆୟାସସାଧ୍ୟ ଓ ସଂହିସ ଉପାସନା ମୂଳକ ରୂପେ ସମାଲୋଚିତ ହୋଇଥିଲା । କୁହାଯାଇଥାଏ ବୈଦିକ ଋଷିବୃନ୍ଦ ଭାରତବର୍ଷର ମୂଳ ବାସିନ୍ଦା ନଥିଲେ । କାସ୍ପିୟାନ୍ ହ୍ରଦ କୂଳରୁ ଆର୍ଯ୍ୟ ଜାତିର ଏକ ଶାଖା ଭାରତରେ ପ୍ରବେଶ କରି ସିନ୍ଧୁ ନଦୀ କୂଳରେ ବାସ କରିଥିଲେ ଏବଂ ବୈଦିକ ଧର୍ମର ପ୍ରଚାର କରିଥିଲେ । ତତ୍ପୂର୍ବରୁ ଭାରତ ଭୂଖଣ୍ଡର ଏକ ମୌଳିକ ଧର୍ମ ଥିଲା । ସେତେବେଳେ ଭାରତର ଭୌଗୋଳିକ ସ୍ଥିତି ଅନ୍ୟ ପ୍ରକାର ଥିଲା । ଏହା ବିଶାଳ ଜମ୍ବୁ ଦ୍ୱୀପର ଏକ ଅଂଶ ଥିଲା । ଚୀନ୍, ନେପାଳ, ବ୍ରହ୍ମଦେଶ ପ୍ରଭୃତି ଏହି ଜମ୍ବୁ ଦ୍ୱୀପର ଅନ୍ତର୍ଭୁକ୍ତ ଥିଲା । ଭାରତର ଉତ୍ତର ଓ ଉତ୍ତର ପଶ୍ଚିମ ସୀମାନ୍ତ ସ୍ଥାନରେ ଭାରତର ମୂଳ ବାସିନ୍ଦା ଆର୍ଯ୍ୟେତରଜାତିର ଏକ ଉନ୍ନତ ସଂସ୍କୃତି ସମ୍ପନ୍ନ ବସତି ଥିଲା । ଆବିଷ୍କୃତ ମହେଞ୍ଜୋଦାରୋ ଓ ହରପ୍ପା ଏହାର

ସାକ୍ଷୀ । ଏଠାରୁ ଆବିଷ୍କୃତ ବିଭିନ୍ନ ମୂର୍ତ୍ତିରୁ ଲିଙ୍ଗ ଯୋନି ପୂଜା ମୂଳକ ତନ୍ତ୍ରସାଧନାର ପରିଚୟ ମିଳିଥାଏ । ତେଣୁ ଆର୍ଯ୍ୟମାନଙ୍କର ଭାରତ ଆଗମନ ପୂର୍ବରୁ ଭାରତ ଭୂଖଣ୍ଡର ମୌଳିକ ଧର୍ମ ଥିଲା ତନ୍ତ୍ର ସାଧନା ବା ଶକ୍ତି ସାଧନା । ତନ୍ତ୍ର ସାଧନାର ଉଦ୍ଦେଶ୍ୟ ହେଉଛି ନିର୍ଦ୍ଦିଷ୍ଟ ଅନୁଶାସନ ଅନୁଯାୟୀ ସଂଯମ ଓ ଏକାଗ୍ରତା ଅବଲମ୍ବନ ପୂର୍ବକ ପରମାତ୍ମାଙ୍କ ସହିତ ତାଦାତ୍ମ୍ୟ ଲାଭକରିବା । ଏହାକୁ ଯୋଗ ସାଧନା କୁହାଯାଇଥାଏ । ଶିବ ଥିଲେ ଏହି ମାର୍ଗର ପଥପ୍ରଦର୍ଶକ । ମୁକ୍ତିଲାଭ କରିବା ବ୍ୟତୀତ ସୁନ୍ଦର ସାଂସାରିକ ଜୀବନ ଯାପନ ପାଇଁ ମଧ୍ୟ ତନ୍ତ୍ର ଅନେକ ଉପଯୁକ୍ତ ନିର୍ଦ୍ଦେଶ କରିଥିଲା । ସେଗୁଡ଼ିକ ପରବର୍ତ୍ତୀକାଳରେ ଆୟୁର୍ବେଦ; ଧନୁର୍ବେଦ, ଗାନ୍ଧର୍ବବେଦ, ଜ୍ୟୋତିର୍ବେଦ ଓ ଷଟ୍‌କର୍ମ ଆଦି ମଧ୍ୟରେ ରୂପାୟିତ ହୋଇଅଛି । ତନ୍ତ୍ରର ବ୍ୟାବହାରିକ ଏବଂ ପରମାର୍ଥିକ ଏହିପରି ଦୁଇଟି ଦିଗ ପରିଦୃଷ୍ଟ ହୋଇଥାଏ । ପ୍ରଥମଟି ସଗୁଣ ସାଧନା କୈନ୍ଦ୍ରିକ ଓ ଦ୍ୱିତୀୟଟି ନିର୍ଗୁଣ ସାଧନା କୈନ୍ଦ୍ରିକ । ଆର୍ଯ୍ୟମାନଙ୍କର ଭାରତ ପ୍ରବେଶ ପରେ ଆର୍ଯ୍ୟ ଓ ଆର୍ଯ୍ୟେତର ଜାତିର ଜୀବନଯାତ୍ରା ଓ ଧର୍ମସାଧନାମାର୍ଗ ଭିନ୍ନ ଥିବାରୁ ଉଭୟଙ୍କର ସଂଘର୍ଷ ଏବଂ ସଂଘର୍ଷ ପରେ ସାଲିସ୍ ଏକ ଅପରିହାର୍ଯ୍ୟ ପରିଣତି ଥିଲା ଏବଂ ଏହି ପରିଣତିର ପ୍ରତିକ୍ରିୟା ରୂପେ ବୈଦିକ ଚିନ୍ତାଧାରାରେ କେତେକ ପରିବର୍ତ୍ତନ ଦେଖା ଦେଇଥିଲା । ବୈଦିକ ଧର୍ମର କର୍ମ-ମିଶ୍ରିତ ଭକ୍ତିମାର୍ଗର ଅସାରତା ବିରୋଧରେ ବୁଦ୍ଧ ସ୍ୱର ଉତ୍ତୋଳନ କରିଥିବାର ଆମେ ଜାଣୁ । ଏ ସ୍ୱର ବାସ୍ତବରେ ବୁଦ୍ଧଙ୍କ ପୂର୍ବରୁ ଝଙ୍କୃତ ହୋଇସାରିଥିଲା । କେବଳ ସେହି ସ୍ୱର ସହିତ ସ୍ୱର ମିଳାଇ ଗୌତମ ବୁଦ୍ଧ ଏକ ନୂତନ ଧର୍ମର ସୂତ୍ରପାତ କରିଥିଲେ ମାତ୍ର ।

ବୁଦ୍ଧଦେବଙ୍କ ପୂର୍ବରୁ ଯେଉଁ ମନୀଷି ବୈଦିକ-ଉପାସନା-ମାର୍ଗ-ଅତିରିକ୍ତ । ଏକ ନୂତନ ମାର୍ଗର ଉଦ୍ଭାବନ କରିଥିଲେ ସେ ହେଉଛନ୍ତି ମହର୍ଷି କପିଲ । ତାଙ୍କୁ ଭଗବାନ୍ ବିଷ୍ଣୁଙ୍କର ପଞ୍ଚମ ଅବତାର ବୋଲି ଶ୍ରୀମଦ୍ଭାଗବତରେ ସମ୍ମାନିତ କରାଯାଇଛି । ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ ଶ୍ରୀମଦ୍ଭଗବତଗୀତାରେ କହିଛନ୍ତି—"ସିଦ୍ଧାନାମ୍ କପିଲୋ ମୁନିଃ" । ଏହି କପିଲମୁନି କହୁଛନ୍ତି ନୂତନ ସାଧନାମାର୍ଗ ସାଂଖ୍ୟ ଯୋଗର ପ୍ରବର୍ତ୍ତକ । ସମ୍ଭବତଃ ନେପାଳରେ ତାଙ୍କର ଆବିର୍ଭାବ ଘଟିଥିଲା ଏବଂ ତାଙ୍କର ଜନ୍ମସ୍ଥାନ କପିଲବାସ୍ତୁ ନାମରେ ନାମିତ ହୋଇଥିଲା । 'ବାସ୍ତୁ'ର ଅର୍ଥ ହେଉଛି ଗୃହ । କପିଲବାସ୍ତୁର ଅର୍ଥ କପିଲଙ୍କ ଗୃହ । ତେଣୁ କପିଲବାସ୍ତୁର ଅର୍ଥ କପିଲଙ୍କ ଗୃହ ଅର୍ଥରେ ଗ୍ରହଣ କରିବା ନିଶ୍ଚୟ ଯୁକ୍ତିଯୁକ୍ତ ।

କପିଲଙ୍କ ପ୍ରବର୍ତ୍ତିତ ସାଂଖ୍ୟ ଯୋଗର ଆଧାର ଥିଲା ତନ୍ତ୍ର । ଦେବଳକୃତ ଯାଜ୍ଞବଲ୍କ୍ୟ ସ୍ମୃତି ଟୀକାରେ ଉଲ୍ଲେଖ ଅଛି—

"ଏତେ ସାଂଖ୍ୟ ଯୋଗୋ ରାଧ୍ୟକୃତ୍ୟ ଯୈୟୁକ୍ତଃ
ସମସ୍ତତନ୍ତ୍ର ପୂର୍ବପ୍ରଣୀତାନ ବଶାନାନ ଗମ୍ଭୀରାଣି ତନ୍ତ୍ରାଣୀହ ସଂକ୍ଷିପ୍ୟ
ଉଦ୍ଦେଶତୋ ବକ୍ଷ୍ୟନ୍ତ୍ର ।" (୬/୧୦୧)

ତନ୍ତ୍ରରେ ଯେମନ୍ତ କାଳ, ଶିବ ଓ ଶକ୍ତିଙ୍କୁ ସୃଷ୍ଟିର କାରଣ ରୂପେ ବର୍ଣ୍ଣନା କରାଯାଇଥାଏ, ସାଂଖ୍ୟ ଯୋଗରେ ସେହିପରି ସୃଷ୍ଟିର କାରଣ ନିମିତ୍ତ କାଳ, ପ୍ରକୃତି ଓ ପୁରୁଷଙ୍କୁ ଚିହ୍ନିତ କରାଯାଇଥାଏ । ତନ୍ତ୍ରର ଶକ୍ତି ଏବଂ ସାଂଖ୍ୟର ପ୍ରକୃତି ମଧ୍ୟରେ ସାମ୍ୟ ଅନୁଭୂତ ହୋଇଥାଏ । ବ୍ରହ୍ମସୂତ୍ରର ଶଙ୍କରଭାଷ୍ୟରେ ଆଚାର୍ଯ୍ୟ ଶଙ୍କର ସାଂଖ୍ୟକୁ ସ୍ମୃତି ଏବଂ ତନ୍ତ୍ର ନାମରେ ଅଭିଖ୍ୟାୟିତ କରିଛନ୍ତି । (୨/୧/୧)

ସାଂଖ୍ୟ ଯୋଗରେ ଆତ୍ମଜ୍ଞାନ ବା ବିବେକଜ୍ଞାନ ଉପରେ ପ୍ରାଧାନ୍ୟ ଦିଆଯାଇଛି । ଏହାକୁ ଅନ୍ୟ ପ୍ରକାରେ ମୋକ୍ଷଧର୍ମ କୁହାଯାଇଥାଏ । ମୋକ୍ଷଧର୍ମ କହିବାର ତାତ୍ପର୍ଯ୍ୟ ହେଉଛି, ଏଥିରେ ଜନ୍ମମୃତ୍ୟୁ ରହିତ କ୍ଲେଶନିବୃତ୍ତିର ଉପାୟ-ମାନ ନିର୍ଦ୍ଦିଷ୍ଟ ହୋଇଛି । ସାଂଖ୍ୟ ଯୋଗର ସେହି ତତ୍ତ୍ୱଗୁଡ଼ିକୁ ଏଠାରେ ଉଲ୍ଲେଖ କରାଯାଇଛି ।

୧ । ତ୍ରିବିଧ ଦୁଃଖ (ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ)ରୁ ନିବୃତ୍ତି ହେଉଛି ମୋକ୍ଷ ।

୨ । ମୋକ୍ଷାବସ୍ଥାରେ ନିର୍ଗୁଣ ଅବିକାରୀ ପୁରୁଷାବସ୍ଥାରେ ସ୍ଥିତି ଆସିଥାଏ । (ଏହାକୁ ଶ୍ରୀମଦ୍‌ଭଗବଦ୍‌ଗୀତା ବର୍ଣ୍ଣିତ ବ୍ରାହ୍ମୀସ୍ଥିତି ସହିତ ତୁଳନା କରାଯାଇପାରେ ।)

୩ । ମୋକ୍ଷାବସ୍ଥାରେ ଚିତ୍ତ ନିରୁଦ୍ଧ ହୋଇଥାଏ ।

୪ । ଚିତ୍ତ ନିରୋଧର ଉପାୟ ହେଉଛି ସମାଧି ଜନ୍ୟ ପ୍ରଜ୍ଞା ଓ ବୈରାଗ୍ୟ ।

୫ । ଯମାଦିଶୀଳ ଏବଂ ଧ୍ୟାନାଦିସାଧନ ସମାଧି ଲାଭ କରିବାର ଉପାୟ ଅଟେ ।

୬ । ମୋକ୍ଷ ଲାଭ ଦ୍ୱାରା ଜନ୍ମ ମୃତ୍ୟୁ ପରମ୍ପରା ନିବୃତ୍ତ ହୋଇଥାଏ ।

୭ । ଜନ୍ମ ପରମ୍ପରା ଅନାଦି ଅଟେ ଏବଂ ଏହା ଅନାଦିକର୍ମରୁ ଜାତ ହୋଇଥାଏ ।

୮। ପ୍ରକୃତି ଏବଂ ଚୈତନ୍ୟ ପୁରୁଷ ଯଥାକ୍ରମରେ ମୂଳ ଉପାଦାନ ଓ ହେତୁ ଅଟନ୍ତି ।

୯।- ପୁରୁଷ ଓ ପ୍ରକୃତି ଅସୃଷ୍ଟ ନିତ୍ୟ ପଦାର୍ଥ ଅଟନ୍ତି ।

୧୦। ଈଶ୍ୱର ହେଉଛନ୍ତି ଅନାଦି ମୁକ୍ତ-ପୁରୁଷ ବିଶେଷ ।

୧୧। ଈଶ୍ୱର ଆମର ବା ଜଗତର ସ୍ରଷ୍ଟା ନୁହନ୍ତି ।

୧୨। ପ୍ରଜାପତି ହିରଣ୍ୟଗର୍ଭ ବା 'ଜନ୍ୟ ଈଶ୍ୱର' ବ୍ରହ୍ମାଣ୍ଡର ଅଧୀଶ୍ୱର ଅଟନ୍ତି । ସେ ଅକ୍ଷର ଅଟନ୍ତି ଏବଂ ତାଙ୍କ ପ୍ରଶାସନରେ ବ୍ରହ୍ମାଣ୍ଡ ଚାଳିତ ।

(ଶ୍ରୀମତ୍ ସ୍ୱାମୀ ହରିହରା ନନ୍ଦ ଆରଣ୍ୟଙ୍କର ବଙ୍ଗଳା 'ସାଂଖ୍ୟେର ଈଶ୍ୱର' ଶୀର୍ଷକ ନିବନ୍ଧରେ ପ୍ରଦତ୍ତ) । କପିଳ ନିର୍ଗୁଣ ଆତ୍ମବିଦ୍ୟା ଏବଂ ସଗୁଣ ଆତ୍ମଜ୍ଞାନ ସମ୍ବନ୍ଧରେ ଆଭାସ ପ୍ରଦାନ କରିଛନ୍ତି । କପିଳଙ୍କ ପୂର୍ବରୁ ସଗୁଣ ଆତ୍ମବିଦ୍ୟାର ପ୍ରଚଳନ ଥିଲା । ସାଂଖ୍ୟ ଯୋଗର ଈଶ୍ୱର ହେଉଛନ୍ତି ସଗୁଣ ଆତ୍ମଜ୍ଞାନ ପ୍ରାପ୍ତ ।

ସାଂଖ୍ୟଯୋଗର ଅନ୍ୟ ବିଶିଷ୍ଟତା ହେଉଛି ସୃଷ୍ଟିତତ୍ତ୍ୱ । ଚେତନା ଶକ୍ତି ସମ୍ପନ୍ନ ନିଷ୍କ୍ରିୟ ପୁରୁଷର ସାନ୍ନିଧ୍ୟ ଲାଭରେ ପ୍ରକୃତିର ଗୁଣସାମ୍ୟ ନଷ୍ଟ ହୋଇ ମହତ୍ ଆଦି ପଚିଶ ତତ୍ତ୍ୱର ବିକାଶ ଘଟିଥାଏ ଏବଂ ଏଥିରୁ ସୃଷ୍ଟିର ବିକାଶ ହୁଏ ।

ସାଂଖ୍ୟ ଧର୍ମର ସୃଷ୍ଟିକାଳ ଅତି ପ୍ରାଚୀନ । ଏହା ବେଦ ଓ ଉପନିଷଦ୍ ରଚନାର ମଧ୍ୟବର୍ତ୍ତୀ କାଳରେ ଆତ୍ମପ୍ରକାଶ କରିଥିଲା । ଶ୍ୱେତାଶ୍ୱତର ଉପନିଷଦ୍‌ରେ ଏହାର ଉଲ୍ଲେଖ ରହିଛି । (୫/୨) ମହାଭାରତରେ ଶାନ୍ତି ପର୍ବରେ କୁହାଯାଇଛି— "ସାଂଖ୍ୟଂ ବିଶାଳଂ ପରମଂ ପୁରାଣଂ (୩୦୧/୧୧୪) ବୁଦ୍ଧ ପ୍ରବର୍ତ୍ତିତ ଧର୍ମର ମୂଳଭିତ୍ତି ହେଉଛି ସାଂଖ୍ୟ ଦର୍ଶନ । ବୌଦ୍ଧ ଧର୍ମର ଶୂନ୍ୟ ଓ ସାଂଖ୍ୟର ନିର୍ଗୁଣ ପୁରୁଷ, ବୌଦ୍ଧ ଧର୍ମର ଜନ୍ମମୃତ୍ୟୁରହିତ ନିର୍ବାଣ ଓ ସାଂଖ୍ୟର ଜନ୍ମମୃତ୍ୟୁ ରହିତ ମୋକ୍ଷ ଏକ ପର୍ଯ୍ୟାୟ ବାଚକ । ସେହିଭଳି ସାଂଖ୍ୟର ତତ୍ତ୍ୱ ନିଦିଧ୍ୟାସନ ଏବଂ ବୈରାଗ୍ୟ ବୌଦ୍ଧ ଭିକ୍ଷୁଙ୍କର ସାଧନାର ମୂଳଭିତ୍ତି ରୂପେ ଗୃହୀତ । ଅଶ୍ୱଘୋଷଙ୍କର 'ବୁଦ୍ଧ ଚରିତ'ରେ ବର୍ଣ୍ଣିତ ଅଛି—ବୁଦ୍ଧଦେବ ଅରାଢ଼ (ଅଲରକାଲମୀପାଲି)ଙ୍କ ଠାରୁ ଶିକ୍ଷା ପ୍ରାପ୍ତ ହୋଇଥିଲେ । ଅରାଢ଼ ସାଂଖ୍ୟଧର୍ମାବଲମ୍ବୀ ଥିଲେ । ବୁଦ୍ଧଦେବ ତାଙ୍କଠାରୁ ଯେଉଁ ସାଂଖ୍ୟ ଦର୍ଶନ ଶିକ୍ଷା କରିଥିଲେ । ତାହା ତାଙ୍କ ପ୍ରବର୍ତ୍ତିତ ବୌଦ୍ଧ ଧର୍ମରେ ପୂର୍ଣ୍ଣମାତ୍ରାରେ ପ୍ରତିଫଳିତ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

'ବୁଦ୍ଧ ଚରିତ'ର ଅନୁବାଦକ E. W. Cowell ମଧ୍ୟ ଏ ପ୍ରକାର ମତ ପୋଷଣ କରିଛନ୍ତି ।

କେବଳ ବୌଦ୍ଧଧର୍ମ କାହିଁକି, ଜୈନଧର୍ମର ଚାର୍ତ୍ତ୍ୱିକ ବିଗ୍ଭରଧାରକୁ ମଧ୍ୟ ସାଂଖ୍ୟଧର୍ମ ପ୍ରଭାବିତ କରିଥିଲା । ଜୈନ ଧର୍ମର ଆଦି ପ୍ରବର୍ତ୍ତକ ମହାବୀର ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅର୍ଥର୍ବବେଦ ଇତିହାସ ସାଂଖ୍ୟର ଷଷ୍ଟିତନ୍ତ୍ର ଓ ଜ୍ୟୋତିଷ ଆଦି ଷଟ୍‌ଶାସ୍ତ୍ର ଏବଂ ସାଂଖ୍ୟ ଆଦିକୁ ଶିକ୍ଷା କରିଥିଲେ । (୧) ଜୈନଧର୍ମର ଶୀଳ-ସର୍ବସ୍ୱ ସାଧନା ସହିତ ସାଂଖ୍ୟଧର୍ମର ଯମାଦିଶୀଳ ସାଧନାର ବହୁତ ସାମ୍ୟ ପରିଲକ୍ଷିତ ହୋଇଥାଏ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ବହୁ ପୁରାତନ ସାଂଖ୍ୟ ଧର୍ମର ବିଗ୍ଭର-ଧାରାରେ ପରିପୁଷ୍ଟ ହୋଇ ନିରୀଶ୍ୱରବାଦୀ ବୌଦ୍ଧଧର୍ମ ଓ ଜୈନଧର୍ମ ଆତ୍ମପ୍ରକାଶ କରିଥିଲା । ବୈପ୍ଳବିକଚିନ୍ତାଧାରା ସମ୍ପନ୍ନ ବୌଦ୍ଧଧର୍ମ ଓ ଜୈନଧର୍ମର ଲୋକ-ପ୍ରିୟତାକୁ ସଙ୍କୁଚିତ କରିବା ପାଇଁ ବୈଦିକ ଋଷିବୃନ୍ଦ ବାଧ୍ୟ ହୋଇ ସାଂଖ୍ୟ ଧର୍ମର ଚିନ୍ତାଧାରାକୁ ଗ୍ରହଣ କରିନେଇ ତାକୁ ଏକ ନୂତନ ରୂପ ଦେଉଥିଲେ । ବେଦ ବର୍ଣ୍ଣିତ ଯଜ୍ଞାନୁଷ୍ଠାନମୂଳକ କର୍ମମାର୍ଗ ସ୍ଥାନରେ ବେଦାନ୍ତ ପ୍ରତିପାଦିତ ବ୍ରହ୍ମଜ୍ଞାନ ଓ ବ୍ରହ୍ମବିଦ୍ୟାକୁ ସାଧନାର ପ୍ରକୃଷ୍ଟ ଅବଲମ୍ବନ ରୂପେ ଘୋଷଣା କରିଥିଲେ । ବେଦ ପରବର୍ତ୍ତୀ କାଳରେ ରଚିତ ବେଦାନ୍ତ ବା ଉପନିଷଦ୍‌ରେ ଏହାର ବ୍ୟାପକ ଚର୍ଚ୍ଚା କରାଯାଇଛି । ଅଧୁନା ଅନେକ ଉପନିଷଦ୍ ଦେଖିବାକୁ ମିଳୁଥିଲେ ହେଁ ୧୨ଟି ଉପନିଷଦ୍‌କୁ ସର୍ବପ୍ରାଚୀନ ଉପନିଷଦ୍ କୁହାଯାଇଥାଏ । ସେଗୁଡ଼ିକ ହେଉଛି—ଈଶ (ବାଜସନେୟୀ), କେନ, କଠ, ପ୍ରଶ୍ନ, ମୁଣ୍ଡକ, ମାଣ୍ଡୁକ୍ୟ, ତୈତ୍ତିରୀୟ, ଏତରେୟ, ଛାନ୍ଦୋଗ୍ୟ, ବୃହଦାରଣ୍ୟକ, ଶ୍ୱେତାଶ୍ୱତର, ଓ ମୈତ୍ରୀ ଉପନିଷଦ୍ । ଏହି ଗ୍ରନ୍ଥ ଗୁଡ଼ିକରେ ବ୍ରହ୍ମଙ୍କର ନିର୍ଗୁଣ ଓ ସଗୁଣ ରୂପ, ସୃଷ୍ଟିତତ୍ତ୍ୱ ଓ ବ୍ରହ୍ମଜ୍ଞାନର ମହତ୍ତ୍ୱ ଆଦିକୁ ବ୍ୟାପକ ଭାବରେ ଚର୍ଚ୍ଚା କରାଯାଇଛି । ସାଂଖ୍ୟ-ଧର୍ମର ନିର୍ଗୁଣ ପୁରୁଷ, ସଗୁଣ ପୁରୁଷ, ସୃଷ୍ଟିତତ୍ତ୍ୱ ଓ ସାଧନା ପ୍ରଣାଳୀ ଏଥିରେ ସ୍ପଷ୍ଟ ରୂପେ ପ୍ରତିଫଳିତ । ବେଦାନ୍ତ ଓ ଉପନିଷଦ୍ ସମୂହ ସାଂଖ୍ୟଧର୍ମର ବିକାଶ ପରେ ଯେ ରଚିତ ହୋଇଥିଲା, ଏହା ନିଃସନ୍ଦେହ । କାରଣ ଶ୍ୱେତାଶ୍ୱତର ଉପ-ନିଷଦ୍‌ରେ ସାଂଖ୍ୟ ଧର୍ମର ଉଲ୍ଲେଖ ଦେଖିବାକୁ ମିଳିଥାଏ । ଏକ ପ୍ରଗତିଶୀଳ ଆଭିମୁଖ୍ୟନେଇ ବୈଦିକ ଧର୍ମରେ ନୂତନତାର ସଂଯୋଗ କରାଯିବା ଫଳରେ

---

(୧) ଋଗ୍‌ବେଦସ୍ୟ, ଜଜୁର୍ବେଦସ୍ୟ, ସାମବେଦସ୍ୟ, ଅଥର୍ବଣବେଦସ୍ୟ, ଇତିହାସ, ପଞ୍ଚମାଣଂ ନିଘଣ୍ଟୁ ଛଟ୍‌ଠାଣଂ ସଠ୍‌ଠିତନ୍ତ ବିସାର ଏ ସଂଖାଣେ ସିଖା··· (ଭଗବତୀ ସୂତ୍ର, ୨/୧)

ତାହା ବୌଦ୍ଧ ଓ ଜୈନଧର୍ମ ସହିତ ପାଦ ମିଳାଇ ଅଗ୍ରଗତି କରିବାରେ ସହାୟକ ହୋଇଥିଲା ।

ଭାରତୀୟ ପରମ୍ପରାରେ ଯେତେ ମୋକ୍ଷ ତତ୍ତ୍ୱନିର୍ଣ୍ଣାୟକ ଦର୍ଶନମାନ ପରେ ସୃଷ୍ଟି ହୋଇଥିଲା, ସେସବୁ ପଛରେ ସାଂଖ୍ୟ ଦର୍ଶନର ଏକ ଅପ୍ରତିହତ ପ୍ରଭାବ ରହିଛି । ପାତଞ୍ଜଳ ଯୋଗ ଦର୍ଶନ ସାଂଖ୍ୟଦର୍ଶନର ଏକ ଆଧାରିକ ଭିନ୍ନ ରୂପ କହିଲେ ଅତ୍ୟୁକ୍ତି ହେବନାହିଁ । ସାଂଖ୍ୟ ଦର୍ଶନ ଭଳି ଏଥିରେ ଈଶ୍ୱରଙ୍କୁ ଆତ୍ମବିଦ୍ୟାସମ୍ପନ୍ନ ମୁକ୍ତପୁରୁଷ ରୂପେ ବର୍ଣ୍ଣନା କରାଯାଇଛି । ସାଂଖ୍ୟ ଦର୍ଶନର ସୃଷ୍ଟିତତ୍ତ୍ୱ ପାତଞ୍ଜଳ ଯୋଗ ଦର୍ଶନରେ ପ୍ରାୟ ଅବିକଳ ଭାବରେ ଗୃହୀତ । ସାଂଖ୍ୟ ଦର୍ଶନରେ କୁହାଯାଇଥିବା ନିଦିଧ୍ୟାସନ ତଥା ବୈରାଗ୍ୟର ଅଭ୍ୟାସ ସ୍ଥାନରେ ଯୋଗଦର୍ଶନରେ ଅଷ୍ଟାଙ୍ଗ ଯୋଗ ସାଧନା ମୂଳକ କ୍ରିୟାଯୋଗ କଥା କୁହାଯାଇଛି । ଉଭୟର ଲକ୍ଷ୍ୟ ହେଉଛି ମନକୁ ଏକାଗ୍ର କରି ଆତ୍ମାନୁଭୂତି ଲାଭ କରିବା । ବସ୍ତୁତଃ ସାଂଖ୍ୟ ଦର୍ଶନ ଓ ଯୋଗ ଦର୍ଶନ ମଧ୍ୟରେ ପାର୍ଥକ୍ୟ ବହୁତ କମ୍ । ସେଥିପାଇଁ ଭଗବଦ୍‌ଗୀତାରେ କୁହାଯାଇଛି । "ଯତ୍‌ସାଂଖ୍ୟୈଃ, ପ୍ରାପ୍ୟତେ ସ୍ଥାନଂ ତଦ୍ ଯୋଗୈ-ରପି ଗମ୍ୟତେ" । (୫/୪) ପୁନଶ୍ଚ ସେହି ଶ୍ରୀମଦ୍‌ଭଗବଦ୍‌ଗୀତାରେ କୁହାଯାଇଛି — "ସାଂଖ୍ୟ ଯୋଗୌ ପୃଥଗ୍‌ବାଳାଃ ପ୍ରବଦନ୍ତି ନ ପଣ୍ଡିତାଃ ଏକ ମପ୍ୟାସ୍ଥିତ ସମ୍ୟଗୁ-ଭୟୋର୍ବିନ୍ଦତେ ଫଳଂ ।" ଅର୍ଥାତ୍ ଯେଉଁମାନେ ମୂର୍ଖ ସେମାନେ ସାଂଖ୍ୟ ଓ ଯୋଗକୁ ଭିନ୍ନ ଭିନ୍ନ ମନେ କରନ୍ତି । ପଣ୍ଡିତମାନେ ଏହା କହନ୍ତି ନାହିଁ । ଏଥିରୁ ଗୋଟିକରେ ଉଭୟର ଫଳ ମିଳିଥାଏ । ଉପନିଷଦ୍, ସାଂଖ୍ୟ ଓ ଯୋଗ — ଏହା ମଧ୍ୟରେ ଏକ ନିଗୂଢ଼ ଯୋଗସୂତ୍ର ରହିଛି । ସାଂଖ୍ୟର ଚିନ୍ତାଧାରା ଉଭୟ ସାଂଖ୍ୟ ଓ ଯୋଗରେ ପ୍ରତିଫଳିତ । ସାଂଖ୍ୟ ଦର୍ଶନ ସର୍ବପ୍ରଥମେ ସତ୍ତ୍ୱ ରଜ ଓ ତମୋଗୁଣର ପ୍ରଭାବ ବର୍ଣ୍ଣନା କରି ଏସବୁରୁ ମୁକ୍ତ ହୋଇ ନିର୍ଗୁଣ ହେବାକୁ ନିର୍ଦ୍ଦେଶ ଦେଇଥିଲା । ବେଦବିହିତ କର୍ମାନୁଷ୍ଠାନ ବ୍ୟକ୍ତିକୁ ତ୍ରିଗୁଣରେ ଜଡ଼ିତ କରି ସୁଖଦୁଃଖର କାରଣ ସୃଷ୍ଟି କରିଥାଏ । ନିର୍ଗୁଣ ଭାବ ହିଁ ସୁଖ ଦୁଃଖରୁ ମୁକ୍ତି ପ୍ରଦାନ କରି ମୋକ୍ଷ ପ୍ରଦାନ କରିଥାଏ । ସାଂଖ୍ୟର ଏହି ଭାବଧାରା ବୈଦିକ ଧର୍ମକୁ ବିଶେଷ ପ୍ରଭାବିତ କରିଥିଲା । ଶ୍ରୀମଦ୍ ଭଗବଦ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ ଠିକ୍ ସେହି କଥା କହିଛନ୍ତି—

"ତ୍ରୈଗୁଣ୍ୟ ବିଷୟାବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ ।" (୨/୪୫)

ସାଂଖ୍ୟର ନିର୍ଗୁଣାବସ୍ଥାସ୍ଥିତିକୁ ବେଦାନ୍ତରେ ବ୍ରାହ୍ମୀସ୍ଥିତି କୁହାଯାଇଛି । ଶ୍ରୀମଦ୍ ଭଗବଦ୍ ଗୀତାରେ କୁହାଯାଇଛି—

"ବିହାୟକାମାନ୍ ଯଃ ସର୍ବାନ୍ ପୁମାଶ୍ଚରତି ନିସ୍ପୃହଃ
ନିର୍ମମୋ ନିରହଙ୍କାରଃ ସ ଶାନ୍ତିମଧି ଗଚ୍ଛତି ।

ଏଷା ବ୍ରାହ୍ମୀସ୍ଥିତିଃ ପାର୍ଥ, ନୈନାଂ ପ୍ରାପ୍ୟ ବିମୁହ୍ୟତି
ସ୍ଥିତ୍ୱାସ୍ୟାମନ୍ତକାଳେଽପି ବ୍ରହ୍ମ ନିର୍ବାଣ ମୃଚ୍ଛତି" । (ସାଂଖ୍ୟଯୋଗ୍ୟ, ୨ୟ ଅଧ୍ୟାୟ)

ମହାଭାରତକାର ବ୍ୟାସ ମଧ୍ୟ ସ୍ୱୀକାର କରି ଲେଖିଛନ୍ତି—

"ଜ୍ଞାନଂ ମହଦ୍‌ଯଦ୍‌ଭିଃ ମହତ୍ସୁ ରାଜନ୍ ବେଦେଷୁ
ସାଂଖ୍ୟେଷୁ ତଥୈବ ଯୋଗେ, ଯଚ୍ଚାପି ଦୃଷ୍ଟଂ
ବିବିଧଂ ପୁରାଣେ ସାଂଖ୍ୟାଗତଂ ତନ୍ନିଖିଳଂ ନରେନ୍ଦ୍ର ।"(ଶାନ୍ତିପର୍ବ, ୩୦୧।୧୦୮)

ଅର୍ଥାତ୍ ହେ ନରେନ୍ଦ୍ର ! ଯେଉଁ ମହାନ୍ ଜ୍ଞାନ ମହାନ୍‌ବ୍ୟକ୍ତିଙ୍କଠାରେ ବେଦ ( ଏଠାରେ ବେଦାନ୍ତ ଅର୍ଥରେ ଗୃହୀତ ) ମଧ୍ୟ ଦେଇ ଯୋଗଶାସ୍ତ୍ରରେ ଏବଂ ବିବିଧ ରୂପରେ ପୁରାଣରେ ଦେଖାଯାଏ, ତାହା ସାଂଖ୍ୟରୁ ଆଗତ ।

ତେଣୁ ଭାରତ ବର୍ଷରେ ନିର୍ଗୁଣଜ୍ଞାନ ବା ମୋକ୍ଷ ଶାସ୍ତ୍ରର ମୂଳ ଅନ୍ୱେଷଣ କରିବାକୁ ଗଲେ ଉପନିଷଦ୍, ଯୋଗଶାସ୍ତ୍ର ଓ ବୌଦ୍ଧଧର୍ମ ପାଖରେ ନ ଅଟକି ସାଂଖ୍ୟଧର୍ମ ପାଖକୁ ଯିବାକୁ ପଡ଼ିଥାଏ । ଏହାର ମୌଳିକ ଭାବଧାରା ପୁଣି ତନ୍ତ୍ରଦ୍ୱାରା ପରିପୁଷ୍ଟ । ସାଂଖ୍ୟଧର୍ମର ବ୍ୟାସ ଭାଷ୍ୟରେ ଏହାର ସୂଚନା ମିଳିଥାଏ । ଯଥା—
"ଆଦି ବିଦ୍ୱାନ୍ ନିର୍ମାଣ ଚିତ୍ତମଧିଷ୍ଠାୟ କାରୁଣ୍ୟାଦ୍ ଭଗବାନ୍ ପରମର୍ଷିରାସୁରୟେ ଜିଜ୍ଞାସମାନାୟ ତନ୍ତ୍ରଂ ପ୍ରୋବାଚ" (୧।୨୫) ସାଂଖ୍ୟଧର୍ମର ପ୍ରଥମ ପ୍ରବକ୍ତା ରୂପେ କପିଳମୁନିଙ୍କୁ ଚିହ୍ନିତ କରାଯାଇଥାଏ । କପିଳଙ୍କର ଶିଷ୍ୟ ଆସୁରି ଥିଲେ । ଆସୁରିଙ୍କ ଶିଷ୍ୟ ପଞ୍ଚଶିଖ ସାଂଖ୍ୟଧର୍ମ ପ୍ରଚାରର କାର୍ଯ୍ୟକୁ ଆଗେଇ ନେଇଥିଲେ । ପଞ୍ଚଶିଖଙ୍କର ଷଷ୍ଟିତନ୍ତ୍ରଗ୍ରନ୍ଥରେ ସାଂଖ୍ୟଧର୍ମ ବିସ୍ତୃତ ଭାବରେ ବର୍ଣ୍ଣିତ ହେଲେ ମଧ୍ୟ ତାହା ବର୍ତ୍ତମାନ ବିଲୁପ୍ତ । ପରବର୍ତ୍ତୀକାଳର ଈଶ୍ୱର କୃଷ୍ଣ ସାଂଖ୍ୟକାରିକା ଗ୍ରନ୍ଥରେ ସାଂଖ୍ୟ ଦର୍ଶନର ବିଭିନ୍ନ ଦିଗକୁ ଉତ୍‌ଥାପନ କରିଥିବାର ଦେଖାଯାଇଥାଏ । ସାଂଖ୍ୟ ଦର୍ଶନର ଅନ୍ୟ ପ୍ରବକ୍ତାଗଣ ହେଉଛନ୍ତି ବିନ୍ଧ୍ୟବାସୀ ଏବଂ ବିଜ୍ଞାନଭିକ୍ଷୁ । ବିଜ୍ଞାନଭିକ୍ଷୁ ହେଉଛନ୍ତି ଅନ୍ତିମଆଚାର୍ଯ୍ୟ । ଭାରତୀୟ ଧର୍ମ ରାଜ୍ୟରେ ନିର୍ଗୁଣ ଜ୍ଞାନ ବା ବ୍ରହ୍ମବିଦ୍ୟାରୂପକ ବୃକ୍ଷର ଚେର ଅତି ଗଭୀରରେ । ଏହା ବୌଦ୍ଧଧର୍ମ ବା ସୁଫୀଧର୍ମର ପ୍ରଭାବ ନୁହେଁ । ବରଂ ଏଗୁଡ଼ିକ ଋଣୀ, ଗ୍ରହୀତା । ପୁରାଣମାନଙ୍କର ବର୍ଣ୍ଣନାରୁ ଦେଖିବାକୁ ମିଳିଥାଏ, ଧର୍ମଯୁଗରେ (ଅର୍ଥାତ୍ ଆଦିଯୁଗରେ) ଯୋଗଧର୍ମ ଅନୁଷ୍ଠିତ ହେଉଥିଲା । ବିଷ୍ଣୁପୁରାଣରେ ଚତୁର୍ଥ ଅଧ୍ୟାୟ, ଦେବୀଭାଗବତର ଷଷ୍ଠ ଅଧ୍ୟାୟ ଓ ମହାଭାରତର ଶାନ୍ତିପର୍ବରୁ ଜଣାଯାଏ ଯେ ମିଥିଳାର ଜନକ ବଂଶୀୟ ରାଜାଗଣ ଆତ୍ମଜ୍ଞାନ ବିଶାରଦ ଥିଲେ । ଯୋଗଶାସ୍ତ୍ର ପ୍ରଣେତାସ୍ୱ ପତଞ୍ଜଳି ବିଦେହ ରାଜ୍ୟରେ ସନ୍ନ୍ୟାସ ଗ୍ରହଣକରି ସେଠାରେ ବିଚରଣ କଲାବେଳେ ଜନକ ତାଙ୍କଠାରୁ ବ୍ରହ୍ମବିଦ୍ୟା ଗ୍ରହଣ କରିଥିଲେ । ଆତ୍ମଜ୍ଞାନ ବା ବ୍ରହ୍ମବିଦ୍ୟା ବିଶାରଦ ଜନକଙ୍କର

ବିଶେଷ ଖ୍ୟାତିଥିଲା । କୌଷିତକୀ ଉପନିଷଦ୍‌ରେ ବର୍ଣ୍ଣିତ ଅଛି, "ଜନକୋ ଜନକ ଇତି ବା ଉଜନା ଧାବନ୍ତୀତି" । (୪।୦)

ସାଂଖ୍ୟଧର୍ମ ମୁଖ୍ୟତଃ ଜ୍ଞାନକୈନ୍ଦ୍ରିକ ଓ ମୋକ୍ଷଧର୍ମ ଥିଲା । ଏହାର ତତ୍ତ୍ୱାଧାରକୁ ଆଶ୍ରୟ କରି ଉପ-ନିଷଦୀୟ ଦର୍ଶନ ବା ବେଦାନ୍ତ ଦର୍ଶନ ଓ ପାତଞ୍ଜଳଙ୍କର ଯୋଗଦର୍ଶନ ଆତ୍ମପ୍ରକାଶ କଲାପରେ ସାଂଖ୍ୟଦର୍ଶନର ପ୍ରଭାବ କ୍ରମେ ହ୍ରାସ ହୋଇ ଆସିଥିଲା । କେବଳ ସେତିକି ନୁହେଁ, ପୁରାଣ ଯୁଗରେ ସାଂଖ୍ୟଧର୍ମର ଜ୍ଞାନ ମାର୍ଗ ସହିତ ଭକ୍ତିମାର୍ଗର ସମ୍ମିଶ୍ରଣ ଘଟି ସାଂଖ୍ୟଧର୍ମ ଭିନ୍ନରୂପେ ଆତ୍ମ ପ୍ରକାଶ କରିଥିଲା । ନିର୍ଗୁଣଭକ୍ତିମୂଳକ ଜ୍ଞାନମାର୍ଗ ଉତ୍ତମ ହେଲେ ହେଁ ସର୍ବସାଧାରଣଙ୍କ ପାଇଁ ଦୁର୍ବୋଧ୍ୟ ଥିଲା ଏବଂ ଏହାର ସାଧନା ମଧ୍ୟ କ୍ଲେଶକରଥିଲା । ସେଥିପାଇଁ ଶ୍ରୀମଦ୍‌ଭଗବଦ୍ ଗୀତାରେ କୁହାଯାଇଛି – "କ୍ଲେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାମ୍" । ଅର୍ଥାତ୍ ଅବ୍ୟକ୍ତ ବା ନିର୍ଗୁଣ ପ୍ରତି ଆସକ୍ତଚିତ୍ତ ହେବା ଅଧିକ କ୍ଲେଶକର । ସାର୍ବସାଧାରଣଙ୍କୁ ସାଂଖ୍ୟର ଜ୍ଞାନମାର୍ଗ ବା ବୈରାଗ୍ୟମାର୍ଗ ପ୍ରତି ଆସକ୍ତ କରିବା ପାଇଁ ଏଥିରେ ସଗୁଣ ଭକ୍ତିମାର୍ଗର ସଂଯୋଗ କରାଯାଇଥିଲା ଏବଂ ଏହି ସଂଯୋଗ ଫଳରେ ଏକ ନୂତନଧର୍ମର ଅଭ୍ୟୁଦୟ ଘଟିଥିଲା । ତାହା ହେଉଛି ପଞ୍ଚରାତ୍ର ଧର୍ମ । ପଞ୍ଚରାତ୍ର ଧର୍ମ ସମ୍ପର୍କରେ ପୂର୍ବଖଣ୍ଡରେ ବିଶଦ ଆଲୋଚନା ହୋଇଥିବାରୁ ଏଠାରେ ତାହାର ପୁନରାବୃତ୍ତି କରାଯାଉନାହିଁ । ତେବେ ପଞ୍ଚରାତ୍ର ଧର୍ମ କିପରି ସାଂଖ୍ୟଧର୍ମକୁ ଗ୍ରହଣ କରି ତାହାର ଭିତ୍ତିରେ ଭାବଧାରାର ସୌଧ ଗଢ଼ିଛି ତାହାର ଆଭାସ ଏଠାରେ ଦିଆଯାଉଛି । ମହାଭାରତର ଶାନ୍ତିପର୍ବରେ ପାଞ୍ଚରାତ୍ର ଧର୍ମର ସ୍ୱରୂପ ସମ୍ପର୍କରେ ବର୍ଣ୍ଣନା କରାଯାଇ କୁହାଯାଇଛି—

"ଇଦଂ ମହୋପନିଷଦଂ ଚତୁର୍ବେଦ ସମନ୍ୱିତଂ
ସାଂଖ୍ୟଯୋଗକୃତଂ ତେନ ପଞ୍ଚରାତ୍ରାନୁଶବ୍ଦିତଂ ।"

ପଞ୍ଚରାତ୍ର ଧର୍ମର ପଞ୍ଚଜ୍ଞାନ ଓ ପଞ୍ଚକଳ୍ପ ମଧ୍ୟରେ ସାଂଖ୍ୟଯୋଗର ସ୍ଥାନ ଗୁରୁତ୍ୱପୂର୍ଣ୍ଣ ଭାବେ ରହିଛି । ଏହାର ପଞ୍ଚଜ୍ଞାନ ହେଉଛି – ପରମତତ୍ତ୍ୱ, ଭୁକ୍ତି, ମୁକ୍ତି, ଯୋଗ, ବିଷୟ ଏବଂ ପଞ୍ଚକଳ୍ପ ହେଉଛି ଅଭିଗମନ, ଉପାଦାନ, ଇଜ୍ୟା, ଅଧ୍ୟାୟ ଏବଂ ଯୋଗ । ପାଞ୍ଚରାତ୍ର ଧର୍ମର ଶ୍ରୀମଦ୍‌ଭାଗବତ ମହାପୁରାଣରେ ସାଂଖ୍ୟ-ଯୋଗ ପ୍ରବକ୍ତା କପିଳମୁନିଙ୍କୁ ଭଗବାନ୍ ବିଷ୍ଣୁଙ୍କର ଅବତାର ରୂପେ ସମ୍ମାନିତ କରାଯାଇ ଏହାର ତୃତୀୟସ୍କନ୍ଧର ଆଠଟି ଅଧ୍ୟାୟକୁ (ପଞ୍ଚବିଂଶରୁ ଦ୍ୱାତ୍ରିଂଶ ଅଧ୍ୟାୟ) ସାଂଖ୍ୟଧର୍ମ ବ୍ୟାଖ୍ୟାପାଇଁ ଉଦ୍ଦିଷ୍ଟ କରାଯାଇଛି । ଶ୍ରୀମଦ୍‌ଭାଗବତରେ କୁହାଯାଇଛି— କାଳପ୍ରଭାବରେ ଲୁପ୍ତ ହୋଇଥିବା ସାଂଖ୍ୟଶାସ୍ତ୍ରକୁ କପିଳମୁନି ରୂପେ ଅବତୀର୍ଣ୍ଣ ହୋଇଥିବା ନାରାୟଣ ଆସୁରି ନାମକ ବ୍ରାହ୍ମଣଙ୍କୁ ଉପଦେଶ ଦେଇଥିଲେ । (ଭାଗବତ ୧।୩।୧୦) ଶ୍ରୀମଦ୍‌ଭାଗବତରେ କପିଳମୁନି ଯେଉଁ ସାଂଖ୍ୟଧର୍ମର ଅବତାରଣା କରିଛନ୍ତି, ତାହା ନିର୍ଗୁଣାବସ୍ଥାରେ ଉପନୀତ ହେବାର ଉପାୟ ନିର୍ଦ୍ଦେଶ କରିଥିଲେ

ହେଁ, ସଗୁଣ, ସରୂପ ଶ୍ରୀହରିଙ୍କ ପ୍ରତି ଐକାନ୍ତିକଭକ୍ତି ଓ ଏକନିଷ୍ଠଧ୍ୟାନକୁ ଏହାର ପଞ୍ଚମସୋପାନ ରୂପେ ବର୍ଣ୍ଣନା କରାଯାଇଛି । ଗୋଟିଏ ବାକ୍ୟରେ କହିଲେ ରୂପରୁ ଅରୂପକୁ ସଗୁଣରୁ ନିର୍ଗୁଣକୁ ଯିବାର ସାଧନାମାର୍ଗ ଏଥିରେ ସୂଚିତ । ଏହା ହେଉଛି ଜ୍ଞାନ ମିଶ୍ରା ଭକ୍ତିମାର୍ଗ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତସାହିତ୍ୟରେ ଠିକ୍ ଏହି ମାର୍ଗକୁ ହିଁ ଅବଲମ୍ବନ କରାଯାଇଛି । ଶ୍ରୀମଦ୍ଭାଗବତର ଅଷ୍ଟାବିଂଶ ଅଧ୍ୟାୟରେ କୁହାଯାଇଛି, ଅଷ୍ଟାଙ୍ଗଯୋଗ ସାଧନ ପୂର୍ବକ ମନକୁ ନିଶ୍ଚଳ କରି ଶ୍ରୀହରିଙ୍କର ବିଭିନ୍ନ ଅଙ୍ଗକୁ ଧ୍ୟାନ କରୁକରୁ ଏକାଗ୍ରତା ଆସିଗଲେ, ମନ ଏପରି ତନ୍ମୟ ହୋଇଯାଏ ଯେ ସାଧକ ଶ୍ରୀହରିଙ୍କ ବ୍ୟତୀତ ଅନ୍ୟକିଛି ଦେଖିପାରେ ନାହିଁ । ଏହା ହେଉଛି ଲୟାବସ୍ଥା । ଏହି ଲୟାବସ୍ଥାରେ ଶ୍ରୀହରିଙ୍କଠାରେ ପରମପ୍ରେମ ଜାତ ହୋଇ ହୃଦୟ ଦ୍ରବୀଭୂତ ହୁଏ, ରୋମାଞ୍ଚ, ଅଶ୍ରୁ, ପୁଲକ ଆଦି ଜାତହୁଏ । (୩।୨୮।୩୪) ଏହି ଅବସ୍ଥା ପ୍ରାପ୍ତ ହେଲେ ଜୀବ ଗୁଣପ୍ରବାହରୂପ ଦେହାଦି ଉପାଧିରୁ ନିବୃତ୍ତ ହୋଇ ଧ୍ୟାତା ଧ୍ୟେୟ ଆଦି ବିଭାଗରହିତ ଏକ ଅଖଣ୍ଡ ପରମାତ୍ମାଙ୍କୁ ହିଁ ସର୍ବତ୍ର ଅନୁଭବ କରେ । (ଶ୍ରୀମଦ୍ଭାଗବତ, ୩।୨୮।୩୫) ଯୋଗାଭ୍ୟାସ ଦ୍ୱାରା ପ୍ରାପ୍ତ ଚିତ୍ତର ଏହି ଅବସ୍ଥାରହିତ ଲୟରୂପ ନିବୃତ୍ତିରୁ ସୁଖଦୁଃଖାଦି ଦ୍ୱନ୍ଦ୍ୱଶୂନ୍ୟ ବ୍ରହ୍ମରୂପ ମହିମାରେ ଅବସ୍ଥିତ ହୋଇ ପରମାତ୍ମତତ୍ତ୍ୱ ସାକ୍ଷାତ୍କାର କରିସାରିବା ପରେ ସେହି ଯୋଗୀ ଯେଉଁ ସୁଖଦୁଃଖର ଭୋକ୍ତୃତ୍ୱକୁ ପୂର୍ବେ ଅଜ୍ଞାନବଶତଃ ନିଜ ସ୍ୱରୂପରେ ଅନୁଭବ କରୁଥିଲା, ଏବେ ତାହାକୁ ଅବିଦ୍ୟାକୃତ ଅହଙ୍କାରରେ ଦେଖେ । (ଶ୍ରୀମଦ୍ଭାଗବତ, ୩।୨୮।୩୬) ଶ୍ରୀମଦ୍ଭାଗବତର ତୃତୀୟ ସ୍କନ୍ଧରେ ପୁଣି କପିଳମୁନିଙ୍କ ମୁଖରେ କୁହାଯାଇଛି— ମୁଁ ଆତ୍ମା ରୂପେ ସଦାସର୍ବଦା ଜୀବରେ ବାସ କରିଅଛି । ତେଣୁ ଯେଉଁମାନେ ମୋ ପରି ସର୍ବଭୂତସ୍ଥିତ ପରମାତ୍ମାଙ୍କୁ ଅନାଦର କରି କେବଳ ପ୍ରତିମାରେ ହିଁ ମୋର ପୂଜା କରନ୍ତି, ସେମାନଙ୍କର ସେହି ପୂଜା ପ୍ରହସନ ମାତ୍ର । (୩।୨୯।୨୧) ମନୁଷ୍ୟ ସ୍ୱଧର୍ମ ଅନୁଷ୍ଠାନ କରି ସେ ପର୍ଯ୍ୟନ୍ତ ଈଶ୍ୱରଙ୍କ ପ୍ରତିମା ଆଦିରେ ପୂଜାକରୁ, ଯେ ପର୍ଯ୍ୟନ୍ତ ନିଜହୃଦୟ ଏବଂ ପ୍ରାଣୀଜଗତରେ ସ୍ଥିତ ପରମାତ୍ମାଙ୍କୁ ଅନୁଭବ କରି ନପାରିଛି । (୩।୨୯।୨୫) କପିଳମୁନି ପୁନଶ୍ଚ କହିଛନ୍ତି, ମନରେ ଏକାଗ୍ରତା ଦ୍ୱାରା ଲୟାବସ୍ଥା ଆସେ ଏବଂ ବ୍ରହ୍ମ ସାକ୍ଷାତ୍କାର ହୁଏ । ଏହାଦ୍ୱାରା ପରମାତ୍ମାରେ ନିମଗ୍ନ ରହେ । ଏହାର ଅନ୍ୟ ନାମ ହେଉଛି ଆତ୍ମ ଦର୍ଶନ ।

ସାଂଖ୍ୟଦର୍ଶନରେ ଆତ୍ମ ଦର୍ଶନ ପାଇଁ ମନରେ ଏହି ଭାବପୂର୍ଣ୍ଣ ଅବସ୍ଥାକୁ ମଧ୍ୟ ଏକ ଉପାୟ ରୂପେ ଗ୍ରହଣ କରାଯାଇଛି । ଭାବପୂର୍ଣ୍ଣ ଅବସ୍ଥାରେ ମନରସ୍ଥିତି ବିଷୟ ତନ୍ତ୍ରର ଏକ ପ୍ରସଙ୍ଗ । ହେବଜ୍ରତନ୍ତ୍ରରେ କୁହାଯାଇଛି— "ମନଃ ଏବ

ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ" । ପୁନଶ୍ଚ ଅନ୍ୟ ସ୍ଥଳରେ କୁହାଯାଇଛି-

'ଭାବେନ ଲଭତେ ସର୍ବଂ ଭାବେନ ଦେବଦର୍ଶନଂ

ନ ଭାବେନ ବିନାଦେବ୍ୟାଃ ମନ୍ତ୍ରଯନ୍ତ୍ରା ଫଳପ୍ରଦାଃ" ।

ତନ୍ତ୍ରର ଏହି ଭାବ ପ୍ରଧାନ ମନସଂଯୋଗମୂଳକ ସାଧନା ପଞ୍ଚରାତ୍ର ଧର୍ମରେ ଏକ ପ୍ରଧାନ ସ୍ଥାନ ଅଧିକାର କରିଛି । ପଞ୍ଚରାତ୍ରଧର୍ମର ସୃଷ୍ଟି ସାଂଖ୍ୟଦର୍ଶନ, ଯୋଗଦର୍ଶନ ଓ ତନ୍ତ୍ରର ସମନ୍ୱୟ ଭୂମି ଉପରେ ପ୍ରତିଷ୍ଠିତ । ଭକ୍ତି ସାଧନା ତନ୍ତ୍ରର ଏକ ଅଙ୍ଗ । ପଞ୍ଚରାତ୍ର ଧର୍ମର ମୁଖ୍ୟାଂଶ ହେଉଛି ତନ୍ତ୍ର । ତନ୍ତ୍ରଶାସ୍ତ୍ର ଆଗମ, ନିଗମ, ଓ ଯାମଳ ଭେଦରେ ତ୍ରିବିଧ । ପଞ୍ଚରାତ୍ରଧର୍ମର ଅନ୍ୟନାମ ହେଉଛି ପଞ୍ଚରାତ୍ରଆଗମ । ପଞ୍ଚରାତ୍ରଆଗମ ଭଳି ବୈଷ୍ଣବଧର୍ମର ଆଉ ଗୋଟିଏ ଆଗମ ହେଉଛି ବୈଖାନସ ଆଗମ । ଏହି ଉଭୟ ଆଗମ ହେଉଛି ବୈଷ୍ଣବଧର୍ମର ଭିତ୍ତିସ୍ଥାପକ । ପଞ୍ଚରାତ୍ରଆଗମର ବର୍ଣ୍ଣନୀୟ ବସ୍ତୁମାନଙ୍କ ମଧ୍ୟରେ ତନ୍ତ୍ରର ପ୍ରସଙ୍ଗ ଅତି ବ୍ୟାପକ । ସାଂଖ୍ୟର ସୃଷ୍ଟି, ପ୍ରଳୟ, ଯୋଗଦର୍ଶନର ଧ୍ୟାନ ଯୋଗ ବା କ୍ରିୟାଯୋଗ ସହିତ ତନ୍ତ୍ରର ଦେବାର୍ଚ୍ଚନ ସାଧନ, ପୁରଶ୍ଚରଣ, ଷଟ୍‌କର୍ମ ସାଧନ ଆଦି ବିଷୟ ପଞ୍ଚରାତ୍ର ଆଗମ ଓ ସଂହିତା ମାନଙ୍କରେ ଦେଖିବାକୁ ମିଳେ । ଜୟାଖ୍ୟ ସଂହିତା ସନତ୍କୁମାର ସଂହିତା, ଈଶ୍ୱର ସଂହିତା ନାରଦପଞ୍ଚରାତ୍ରଆଦି ପଞ୍ଚରାତ୍ର-ଧର୍ମର ଗ୍ରନ୍ଥମାନଙ୍କରେ ମନ୍ତ୍ର, ଯନ୍ତ୍ର ଓ ମନ୍ତ୍ର ସାଧନା ଆଦିକୁ ବ୍ୟାପକ ଭାବେ ବର୍ଣ୍ଣନା କରାଯାଇଛି । ଈଶ୍ୱର ସଂହିତାରେ କୁହାଯାଇଛି, ପଞ୍ଚରାତ୍ର ଆଗମରେ ଚାରିପ୍ରକାର ତତ୍ତ୍ୱ ବର୍ଣ୍ଣିତ ହୋଇଛି । ସେଗୁଡ଼ିକ ହେଉଛି— ୧- ଆଗମର ସିଦ୍ଧାନ୍ତ, ୨- ମନ୍ତ୍ରସଂଗୀତ, ୩- ତନ୍ତ୍ର ଓ ଯନ୍ତ୍ର, ୪- ତନ୍ତ୍ରାନ୍ତର ବିଷୟ । ପଦ୍ମ ପୁରାଣରେ ମଧ୍ୟ ଠିକ୍ ସେହି କଥା କୁହାଯାଇଛି । ପଞ୍ଚରାତ୍ର ଆଗମ ବହୁ ଆଦୃତ ହେବା ଫଳରେ ଭାରତବର୍ଷରେ ଏହାର ଦ୍ରୁତ ପ୍ରସାର ହୋଇଥିଲା । ବିଶେଷତଃ ଗୁପ୍ତ ସାମ୍ରାଜ୍ୟ କାଳରେ ପଞ୍ଚରାତ୍ରଧର୍ମ ରାଜ ସମର୍ଥନ ଲାଭ କରିଥିଲା ବୋଲି ଗବେଷକ-ମାନେ ଅନୁମାନ କରିଥାନ୍ତି । ଫଳତଃ ଏହି ଧର୍ମରୁ ସ୍ୱତନ୍ତ୍ରଭାବରେ ଅସଂଖ୍ୟ ଉପନିଷଦ୍ ଓ ସଂହିତା ଗ୍ରନ୍ଥମାନ ରଚିତ ହୋଇଥିଲା । କେବଳ ସେତିକି ନୁହେଁ, ନାରଦ ପୁରାଣ, ବ୍ରହ୍ମପୁରାଣ, ବିଷ୍ଣୁ ପୁରାଣ, ପଦ୍ମ ପୁରାଣ, ହରିବଂଶ, ବ୍ରହ୍ମବୈବର୍ତ୍ତ ପୁରାଣ, ଶ୍ରୀମଦ୍‌ଭାଗବତ ମହାପୁରାଣ ଭଳି ପଞ୍ଚରାତ୍ରଧର୍ମ ପ୍ରଖ୍ୟାପକ ପୁରାଣମାନ ରଚିତ ହୋଇଥିଲା । ପରବର୍ତ୍ତୀକାଳରେ ରାମ, ନୃସିଂହ ଗୋପାଳକୃଷ୍ଣ ଓ ଶ୍ରୀଜଗନ୍ନାଥ ଯେତେବେଳେ ପଞ୍ଚରାତ୍ର ଧର୍ମରେ ମୁଖ୍ୟସ୍ଥାନ ଅଧିକାର କରିଥିଲେ, ସେତେବେଳେ ତାଙ୍କୁ କେନ୍ଦ୍ର କରି କେତେଗୁଡ଼ିଏ ଉପନିଷଦ୍ ଓ ସଂହିତାଗ୍ରନ୍ଥମାନ ରଚିତ ହୋଇଥିଲା । ନୃସିଂହ ଉପନିଷଦ, କୃଷ୍ଣ ଉପନିଷଦ୍, ରାମତାପନୀୟ ଉପନିଷଦ୍,

ଗୋପାଳ ତାପନୀୟ ଉପନିଷଦ୍, କଳିସନ୍ତରଣୋପନିଷଦ୍, ପୁରୁଷୋତ୍ତମ ତାପନୀୟ ଉପନିଷଦ୍, ବ୍ରହ୍ମ ସଂହିତା, ରାମରହସ୍ୟ ଉପନିଷଦ୍ ଓ ରାଧାତପନୀୟ ଉପନିଷଦ୍ ପ୍ରଭୃତି ଗ୍ରନ୍ଥମାନଙ୍କରେ ରାମ, କୃଷ୍ଣ, ନୃସିଂହ, ଜଗନ୍ନାଥ ଏବଂ ଶ୍ରୀରାଧାଙ୍କର ତତ୍ତ୍ୱମାନ ବିଶେଷ ଭାବରେ ଉପସ୍ଥାପିତ ହୋଇଛି । ଏହିସବୁ ଗ୍ରନ୍ଥମାନଙ୍କରେ ମନ୍ତ୍ରଗର୍ଭିତତତ୍ତ୍ୱ ବିଶେଷଭାବରେ ଅବତାରିତ ହୋଇଛି । ଦ୍ୱାଦଶାକ୍ଷର ଗୋପାଳ-ମନ୍ତ୍ର, ହରେରାମ କୃଷ୍ଣାଦି ମହାମନ୍ତ୍ର ପ୍ରଭୃତିର ବିଶେଷ ଆଲୋଚନା କରାଯାଇଛି । ବ୍ରହ୍ମ ସଂହିତା ଗ୍ରନ୍ଥରେ କୃଷ୍ଣଙ୍କ 'କ୍ଲୀଂ' କାମବୀଜ ମନ୍ତ୍ରରୂପେ ଚିହ୍ନିତ କରାଯାଇଛି । ପଞ୍ଚରାତ୍ରଧର୍ମର ଏହି ସଂହିତାମାନଙ୍କରେ ରାମ, କୃଷ୍ଣ ଓ ଜଗନ୍ନାଥଙ୍କର ମନ୍ତ୍ରମୟୀ ବିଗ୍ରହକୁ ପ୍ରାଧାନ୍ୟ ଦିଆଯାଇ ତାଙ୍କର ମାନୁଷୀତନୁକୁ ଅଳ୍ପଗୁରୁତ୍ୱ ଦିଆଯାଇଛି । ତେଣୁ ସେହି ମନ୍ତ୍ରମୟୀ ତନୁକୁ ଅନୁଭବ କରିବା ପାଇଁ ଯନ୍ତ୍ର ନିର୍ମାଣ କରି ତାହା ଉପରେ ମନ୍ତ୍ରସ୍ଥାପନ ପୂର୍ବକ ତାନ୍ତ୍ରିକ ବିଧିରେ ପୂଜା ପଦ୍ଧତି ମନନ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ବସ୍ତୁତଃ ରାମକୃଷ୍ଣ ଅବତାର ତଥା ମନ୍ତ୍ର ବା ନାମ ବିଶେଷ ରୂପେ ପ୍ରଚଳିତ ହୋଇଛନ୍ତି । ଖ୍ରୀଷ୍ଟୀୟ ସପ୍ତମ ଅଷ୍ଟମ ଶତାବ୍ଦୀ-ବେଳକୁ ଯୌନଯୋଗ ସାଧନାତ୍ମକ ଓ ଅଭିଷ୍ଟକାରକ ବାମାଚାର ପନ୍ଥା ଏବଂ ତାନ୍ତ୍ରିକ ବୌଦ୍ଧଧର୍ମର ଏହିଭଳି ପନ୍ଥା ବିଶେଷ ପ୍ରସାରିତ ହେବାପରେ ତାହା ସମାଜରେ ଅଧୋପତନ ଆଣିଦେଇଥିଲା । ତନ୍ତ୍ରର ଯୋଗସର୍ବସ୍ୱ ଓ ଆଧ୍ୟାତ୍ମିକ ସିଦ୍ଧି ପ୍ରଦାୟକ ଦକ୍ଷିଣାଚାରଦିଗ କ୍ରମେ ହ୍ରାସ ହୋଇ ଆସିଥିଲା । ତନ୍ତ୍ର ସାଧନାର ଏହି ଅଧୋପତନ ସମୟରେ ଶଙ୍କରାଚାର୍ଯ୍ୟଙ୍କର ଆବିର୍ଭାବ ଘଟିଥିଲା । ଶଙ୍କରାଚାର୍ଯ୍ୟ ପୁନର୍ବାର ସାଂଖ୍ୟର ମୋକ୍ଷଧର୍ମ ବା ନିବୃତ୍ତିମୂଳକ ସାଧନା ପ୍ରତିଷ୍ଠା କରିଥିଲେ । ତାଙ୍କର ଅଦ୍ୱୈତବାଦ ମଧ୍ୟରେ ସାଂଖ୍ୟ ଦର୍ଶନ ଓ ଯୋଗ ଦର୍ଶନର ନିର୍ଗୁଣ ପୁରୁଷତତ୍ତ୍ୱ ପ୍ରତିଫଳିତ ହୋଇଛି । ଏଗୁଡ଼ିକ ଆଚାର୍ଯ୍ୟ ଶଙ୍କର ପ୍ରଚାରିତ ଧର୍ମର ପାରମାର୍ଥିକ ଦିଗ । ସେହିପରି ତାଙ୍କର ଧର୍ମର ବ୍ୟାବହାରିକ ଦିଗଗୁଡ଼ିକ ମଧ୍ୟରେ ତନ୍ତ୍ରର ଦକ୍ଷିଣାଚାର ଦିଗ ପ୍ରତିଫଳିତ ହୋଇଛି, ଶଙ୍କରଙ୍କ ରଚିତ ଆନନ୍ଦ ଲହରୀ ସ୍ତୋତ୍ର ଏହାର ଏକ ଦୃଷ୍ଟାନ୍ତ । ସାଂଖ୍ୟଧର୍ମର ଆଦିପ୍ରବକ୍ତା କପିଳ ଯେଉଁ ଶୀଳସର୍ବସ୍ୱ ନିର୍ଗୁଣ ସାଧନା ଓ ନିର୍ଗୁଣପୁରୁଷତତ୍ତ୍ୱ କଥା କହିଥିଲେ, ତାହା କାଳକ୍ରମେ କଳୁଷିତ ହେବା ଫଳରେ ମହର୍ଷି ପତଞ୍ଜଳି ଏହି ଦର୍ଶନକୁ ପୁନ-ରୁଦ୍ଧାର କରି ତାଙ୍କ ପ୍ରଣୀତ ଯୋଗଦର୍ଶନରେ ବ୍ୟାଖ୍ୟା କରିଥିଲେ । ଉପନିଷଦ୍ ସମୂହରେ ସେହି ନିର୍ଗୁଣ ପୁରୁଷତତ୍ତ୍ୱ ବ୍ରହ୍ମବିଦ୍ୟାନାମରେ ପରିଚିତ । ମହର୍ଷି ପତଞ୍ଜଳିଙ୍କ ପରେ ସାଂଖ୍ୟ ଦର୍ଶନର ପ୍ରଭାବ କ୍ରମେ ହ୍ରାସ ହୋଇଆସିଥିଲା । ନିର୍ଗୁଣ ପୁରୁଷ ଭଳି ଏକ କ୍ଲେଶକର କଳ୍ପନା ଲୋକମନକୁ ସହଜରେ ଛୁଇଁ ପାରିଲା ନାହିଁ । ତେଣୁ ଉପନିଷଦ୍ ସମୂହର ବ୍ରହ୍ମ ବିଦ୍ୟାରେ ବର୍ଣ୍ଣିତ ବ୍ରହ୍ମଙ୍କର ସବିଶେଷ

ରୂପକୁ ଆଧାର କରି ପଞ୍ଚରାତ୍ରଧର୍ମ ଏକ ସଗୁଣ ବ୍ରହ୍ମର କଳ୍ପନା କରିଥିଲା । ଏହି ସଗୁଣ ବ୍ରହ୍ମର ପୂର୍ବବର୍ତ୍ତୀ ଅବସ୍ଥାଥିଲା ନିର୍ଗୁଣ ବ୍ରହ୍ମ, ଯାହାର ସାମ୍ୟ ସାଂଖ୍ୟର ନିର୍ଗୁଣ ପୁରୁଷଠାରେ ଲକ୍ଷ୍ୟ କରାଯାଇଥାଏ । ନିର୍ଗୁଣ ପୁରୁଷଠାରୁ ସୃଷ୍ଟିକ୍ରମ ଯେଉଁଭାବେ ହୋଇଛି ତାହାର ଅବତାରଣା ସାଂଖ୍ୟ ଦର୍ଶନରେ ଚବିଶ ତତ୍ତ୍ୱ ମଧ୍ୟରେ କରାଯାଇଛି । ପାଞ୍ଚରାତ୍ର ଧର୍ମରେ ଅବିକଳ ଭାବରେ ସେହିତତ୍ତ୍ୱକୁ ଗ୍ରହଣ କରାଯାଇଛି । ପାଞ୍ଚରାତ୍ର ଧର୍ମର ଅଭ୍ୟୁଦୟ ବେଳକୁ ସାଂଖ୍ୟଧର୍ମ ଲୋକମାନଙ୍କ ଠାରୁ ବିଲୁପ୍ତ ହୋଇଆସିଥିଲା । ତେଣୁ ଦ୍ୱିତୀୟ କପିଳ ମୁନି ଏହାକୁ ଏକ ନୂଆ ରୂପ ଦେଇ ପ୍ରତିଷ୍ଠା କରିଥିଲେ । ଶ୍ରୀମଦ୍‌ଭାଗବତରେ ତୃତୀୟ ସ୍କନ୍ଧରେ ଅଛି, ସାଂଖ୍ୟଧର୍ମ କାଳଦ୍ୱାରା କବଳିତ ହେବା ଫଳରେ କପିଳମୁନି ନାରାୟଣଙ୍କର ପଞ୍ଚମ ଅବତାର ରୂପେ ଅବତୀର୍ଣ୍ଣ ହୋଇ ତାହାକୁ ପୁନରୁଦ୍ଧାର କରିଥିଲେ । (୩।୨୪।୪୧) ଏହି କପିଳମୁନି ଏବଂ ଆଦ୍ୟ କପିଳ ମୁନି ପୃଥକ ବ୍ୟକ୍ତି ଅଟନ୍ତି । ଦ୍ୱିତୀୟ କପିଳମୁନି ଯେଉଁ ସାଂଖ୍ୟ ଦର୍ଶନର ପୁନରୁଦ୍ଧାର କରିଥିଲେ, ସେଥିରେ ପୂର୍ବତତ୍ତ୍ୱ ସହିତ ଈଶ୍ୱର ତତ୍ତ୍ୱ ଓ ଭକ୍ତିତତ୍ତ୍ୱର ସଂଯୋଗ ଘଟିଥିଲା, ଯାହା ଶ୍ରୀମଦ୍‌ଭାଗବତରେ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଅଛି । ପଞ୍ଚରାତ୍ରଧର୍ମରେ କ୍ରମେ ବାହ୍ୟପୂଜା ପ୍ରବଳ ହୋଇ ଉଠିଥିଲା ଓ ଯୋଗମାର୍ଗ ଉପେକ୍ଷିତ ହୋଇ ଆସୁଥିଲା । କିନ୍ତୁ ପଞ୍ଚରାତ୍ର ଧର୍ମର ସମସ୍ତ ତତ୍ତ୍ୱ ଗୁଡ଼ିକ ଓଡ଼ିଶା ଭୂଇଁରେ ଠିକ୍ ଭାବେ ଅନୁସୃତ ହେଉଥିଲା । ପଞ୍ଚରାତ୍ର ଧର୍ମର ପ୍ରଧାନ ପୀଠ ଶ୍ରୀଜଗନ୍ନାଥ ପୀଠରେ ପଞ୍ଚରାତ୍ରଧର୍ମ, ଏହାର ଉପନିଷଦ୍ ଓ ସଂହିତା ତଥା ଏହାର ପ୍ରଧାନ ପୁରାଣ ଶ୍ରୀମଦ୍ଭାଗବତ ମହାପୁରାଣ ବିଶେଷ ଭାବରେ ଆଦୃତ ଥିଲା । ତେଣୁ ପଞ୍ଚରାତ୍ର ଧର୍ମର ମନ୍ତ୍ର ସାଧନା, ଯୋଗ ସାଧନା ଓଡ଼ିଶା ଭୂଇଁରେ ବିଶେଷ ଅନୁସରଣୀୟ ହୋଇଥିଲା । ତାହାର ପ୍ରତିଫଳନ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଦେଖିବାକୁ ମିଳେ । ସାଂଖ୍ୟର ନିର୍ଗୁଣ ପୁରୁଷ ବେଦାନ୍ତର ନିର୍ଗୁଣ ବ୍ରହ୍ମ ନିକଟରେ ପହଞ୍ଚିବାକୁ ହେଲେ ସଗୁଣ ଭଗବାନ୍‌ଙ୍କର ରୂପ ଧ୍ୟାନ ମଧ୍ୟଦେଇ ଗତି କରିବାକୁ ହୋଇଥାଏ । ଏହି କଥା ହିଁ ଶ୍ରୀମଦ୍ ଭାଗବତରେ କପିଳମୁନି କହିଛନ୍ତି ଏବଂ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଏହାହିଁ ପ୍ରତିପାଦିତ ହୋଇଛି । ତନ୍ତ୍ରରେ ବିଶେଷତଃ ପଞ୍ଚରାତ୍ର ଆଗମମାନଙ୍କରେ ବ୍ରହ୍ମଙ୍କର ଶବ୍ଦମୟ ରୂପ ନାମକ ଏକ ରୂପର ପରିକଳ୍ପନା କରାହୋଇଛି । ପ୍ରଣବ ହେଉଛି ସେହି ଶବ୍ଦମୟ ରୂପ । ବେଦାନ୍ତରେ ଏହାର ଘୋଷଣା କରାଯାଇଛି । ସେହି ପ୍ରଣବରୁ ବିଭିନ୍ନ ବୀଜମନ୍ତ୍ର, ମନ୍ତ୍ର ଓ ମହାମନ୍ତ୍ରାଦି ସୃଷ୍ଟି ହୋଇଛି । ତେଣୁ ଶବ୍ଦମୟ ବ୍ରହ୍ମଙ୍କର ମୂଳ ରୂପକୁ ଅନୁସନ୍ଧାନ କରିବାକୁ ହେଲେ ମନ୍ତ୍ରାଭ୍ୟାସ, ଯନ୍ତ୍ର ମଧ୍ୟରେ ମନ୍ତ୍ର ସ୍ଥାପନ ପୂର୍ବକ ତାହାର ମନନ ଓ ଧ୍ୟାନ ଜପରି କରିବାକୁ ହୁଏ, ତାହାର ବର୍ଣ୍ଣନା ପଞ୍ଚରାତ୍ର ସଂହିତାମାନଙ୍କରେ

ଦେଖିବାକୁ ମିଳେ । ପଞ୍ଚରାତ୍ର ସଂହିତାମାନଙ୍କରେ ପ୍ରଣବ, ଗାୟତ୍ରୀ, 'କ୍ଲୀଂ' ବା କାମବୀଜ 'ଶ୍ରୀଂ' ବା 'ରମାବୀଜ' ଦ୍ୱାଦଶାକ୍ଷର ଗୋପାଳ ମନ୍ତ୍ର, ରାମ ତାରକ ମନ୍ତ୍ର ଏବଂ ହରେରାମ କୃଷ୍ଣାଦି ମହାମନ୍ତ୍ରକୁ ପ୍ରାଧାନ୍ୟ ଦିଆଯାଇଛି । ଶ୍ରୀମଦ୍ଭାଗବତ ମହାପୁରାଣ ଗ୍ରନ୍ଥର ଆରମ୍ଭ ଏହି ଗାୟତ୍ରୀ ମନ୍ତ୍ରରୁ । ଏଗୁଡ଼ିକ ପରେ ବିଶଦ୍ ଭାବେ ଆଲୋଚିତ ହେବ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାଧକମାନେ ଠିକ୍ ସେହି ପଞ୍ଚରାତ୍ର ଆଗମର ପଦ୍ଧତିକୁ ଅନୁସରଣ କରି ପଞ୍ଚରାତ୍ର ଆଗମ ବର୍ଣ୍ଣିତ ମନ୍ତ୍ରଗୁଡ଼ିକୁ ହିଁ ପ୍ରାଧାନ୍ୟ ଦେଇଛନ୍ତି ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାଧକଙ୍କର ଗ୍ରନ୍ଥରେ ନାଥ ଧର୍ମର କଥା ସହ ସାହିତ୍ୟର ଉଲଟ ସାଧନା ଓ ସାଙ୍ଖ୍ୟଭାଷା ପ୍ରଭୃତି ଦେଖିବାକୁ ମିଳିଥାଏ । ଏଗୁଡ଼ିକ ସମ୍ପର୍କରେ ଯତ୍କିଞ୍ଚିତ୍ ସାମାନ୍ୟ ସୂଚନା ଦେବା ଆବଶ୍ୟକ ମନେହୁଏ । ପୂର୍ବରୁ କୁହାଯାଇଛି, ତନ୍ତ୍ରର ବାମାଚାର ଦିଗ, ବୌଦ୍ଧତନ୍ତ୍ରର ଭ୍ରଷ୍ଟାଚାର ସମାଜକୁ କଳୁଷିତ କଲାବେଳେ ଆଚାର୍ଯ୍ୟ ଶଙ୍କରଙ୍କର ଆବିର୍ଭାବ ଘଟିଥିଲା । ସେ ଦ୍ୱିତୀୟ କପିଳମୁନିଙ୍କ ଭଳି ଅବଲୁପ୍ତ ହୋଇଆସୁଥିବା ସାଂଖ୍ୟଧର୍ମର ପୁନରୁଦ୍ଧାର କରିଥିଲେ । ସାଂଖ୍ୟଦର୍ଶନ ଓ ଯୋଗ ଦର୍ଶନରେ ଯେଉଁ ନିର୍ଗୁଣ ପୁରୁଷ ଓ ଆତ୍ମତତ୍ତ୍ୱ କଥା କୁହାଯାଇଛି, ତାହାକୁ ହିଁ ସେ ତାଙ୍କର ଅଦ୍ୱୈତବାଦ ଦର୍ଶନରେ ପ୍ରତିଷ୍ଠା କରିଥିଲେ । ଶଙ୍କରଙ୍କର ଆବିର୍ଭାବ ଫଳରେ ଶୈବ ସମ୍ପ୍ରଦାୟର ଅଭ୍ୟୁଥାନ ଘଟିଥିଲା । କାଳକ୍ରମେ ଏହା କେତେକ ସମ୍ପ୍ରଦାୟରେ ବିଭକ୍ତ ହୋଇଥିଲା । ନାଥ ସମ୍ପ୍ରଦାୟ ହେଉଛି ଶୈବଧର୍ମାନ୍ତର୍ଗତ ପାଶୁପତ ସମ୍ପ୍ରଦାୟର ଏକ ଶାଖା । ଗୋରେଖନାଥଙ୍କର ଜନ୍ମସ୍ଥାନ ହେଉଛି ନେପାଳ ; ଯେଉଁଠାରେ କପିଳମୁନି ଓ ଗୌତମବୁଦ୍ଧଙ୍କର ଆବିର୍ଭାବ ଘଟିଥିଲା । ଗୋରେଖନାଥ ସାଂଖ୍ୟ ଦର୍ଶନ ଓ ପତଞ୍ଜଳିଙ୍କର ଯୋଗ ଦର୍ଶନକୁ ଅନୁସରଣ କରି କାୟା ସାଧନା ଉପରେ ଗୁରୁତ୍ୱ ଦେଇଥିଲେ । ମୂଳାଧାର ଚକ୍ରସ୍ଥିତ କୁଣ୍ଡଳିନୀ ହେଉଛନ୍ତି ଶକ୍ତି । ସହସ୍ରଦଳ ଚକ୍ରସ୍ଥିତ ଜ୍ୟୋତିର୍ମୟ ପୁରୁଷ ହେଉଛନ୍ତି ବ୍ରହ୍ମସ୍ୱରୂପ । ପୁନଶ୍ଚ କୁଣ୍ଡଳିନୀ ହେଉଛନ୍ତି ସୂର୍ଯ୍ୟ ଏବଂ ସହସ୍ର ଚକ୍ରସ୍ଥିତ ଜ୍ୟୋତିର୍ମୟ ପୁରୁଷ ହେଉଛନ୍ତି ଚନ୍ଦ୍ର । ଉଭୟଙ୍କର ସାଙ୍କେତିକ ନାମ ହେଉଛି 'ହ' ଏବଂ 'ଠ' । 'ହ' ଏବଂ 'ଠ'ର ମିଳନ ହେଉଛି 'ହଠ' ଯୋଗ ସାଧନା । ଏହାକୁ ଅନ୍ୟ ପ୍ରକାରେ ଶିବଶକ୍ତି ମିଳନ ବୋଲି କୁହାଯାଇଛି । ନାଥ ସମ୍ପ୍ରଦାୟରେ ଯୋଗ ସାଧନା ଓ ପିଣ୍ଡବ୍ରହ୍ମାଣ୍ଡ ବାଦ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଥିବାରୁ ଏମାନଙ୍କୁ ଯୋଗୀ କୁହାଯାଇଛି । ନାଥ ସମ୍ପ୍ରଦାୟର ଧର୍ମଧାରା ଓଡ଼ିଶାରେ ବିଶେଷ ଭାବରେ ପ୍ରବାହିତ ଥିଲା । ଓଡ଼ିଶାରେ ଗୋରେଖ ନାଥଙ୍କର ଅନେକ ମଠ ଏବେ ମଧ୍ୟ ଦେଖିବାକୁ ମିଳେ ।

ସାରଳା ଦାସଙ୍କ ମହାଭାରତରେ ଗୋରେକ୍ଷନାଥ ଓ ମତ୍ସ୍ୟେନ୍ଦ୍ରନାଥଙ୍କ ନାମ ଉଲ୍ଲେଖ ଅଛି । ଓଡ଼ିଆ ଭାଷାର ଅନେକ ଗୁମ୍ଫିତ ଶୈଳୀ ପଦମାନଙ୍କରେ ଗୋରେକ୍ଷନାଥଙ୍କ ନାମକୁ ମଧ୍ୟ ଲକ୍ଷ୍ୟ କରାଯାଏ । ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଗ୍ରାମରେ ନାଥ ସମ୍ପ୍ରଦାୟର ଯୋଗୀମାନଙ୍କୁ ମଧ୍ୟ ଦେଖିବାକୁ ମିଳେ । ନାଥ ସମ୍ପ୍ରଦାୟରେ ଶିଶୁ ବେଦକୁ ପଞ୍ଚମ ବେଦ ଭାବେ ଗ୍ରହଣ କରାଯାଇଛି । ଏହା ଶିବଙ୍କର ମୁଖ ନିଃସୃତ ଯୋଗଶାସ୍ତ୍ର । ଓଡ଼ିଶାରେ ଏହି ଶିଶୁବେଦ ବିଶେଷ ପରିଚିତ ଏବଂ ଏହାର ସାଧକମାନେ ଙ୍କର ନାମ ସହିତ ଶିଶୁ ଶବ୍ଦକୁ ସଂଯୁକ୍ତ କରିଥାନ୍ତି । ଅନନ୍ତ ଦାସ ସେଥିପାଇଁ ନିଜକୁ ଶିଶୁ ଅନନ୍ତ ନାମରେ ପରିଚିତ କରାଇଥିଲେ । ସାରଳା ମହାଭାରତରେ ଶିଶୁ ବେଦର ଉତ୍ପତ୍ତି ପ୍ରସଙ୍ଗ ବାରମ୍ବାର ବର୍ଣ୍ଣନା କରାଯାଇଛି, ସାରଳା ଦାସ ସମ୍ଭବତଃ ସେହି ନାଥ ସମ୍ପ୍ରଦାୟଭୁକ୍ତ ଥିଲେ । ସେ ନିଜକୁ ଶୂଦ୍ରମୁନି କହିବାର ତାତ୍ପର୍ଯ୍ୟ ଏହିଠାରେ ହିଁ ନିହିତ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଓଡ଼ିଶାରେ ନାଥ ସମ୍ପ୍ରଦାୟର କାୟାସାଧନା ଓ ଯୋଗ ସାଧନା ବିଶେଷ ଭାବରେ ଲୋକପ୍ରିୟ ଥିଲା । ଭାରତ ବର୍ଷରେ ମୋଗଲ ଶାସନର ପ୍ରଚଳନ ହେବା ଫଳରେ ହିନ୍ଦୁଧର୍ମ ପ୍ରତି ଏକ ସଙ୍କଟ ଦେଖାଦେଇଥିଲା । ଏହି ସଙ୍କଟ ସମୟରେ ଶୈବ ଓ ବୈଷ୍ଣବ ସମ୍ପ୍ରଦାୟ ପରସ୍ପର ମଧ୍ୟରେ ରହିଥିବା ପାର୍ଥକ୍ୟକୁ ଭୁଲିଯାଇ ଏକାଠି ହୋଇଯାଇଥିଲେ । ଫଳରେ ଶୈବ ଓ ବୈଷ୍ଣବ ଧର୍ମର ଏକ ଅପୂର୍ବ ସମନ୍ୱୟ ସଙ୍ଘଟିତ ହୋଇଥିଲା । ଏହାର ପ୍ରତିଫଳନ 'ସାରଳା ମହାଭାରତ', 'ରୁଦ୍ର-ସୁଧାନିଧି', 'ଗୁପ୍ତଗୀତା', ଏବଂ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ହରିହର ଉପାସନା ମଧ୍ୟରେ ଦେଖିବାକୁ ମିଳେ । ଶୈବଧର୍ମର ଅନେକ ପଦ୍ଧତିକୁ ପଞ୍ଚସଖା ବୈଷ୍ଣବମାନେ କେତେକାଂଶରେ ଗ୍ରହଣ କରିନେଇଛନ୍ତି । ତେଣୁ ଗୋରେକ୍ଷନାଥଙ୍କର କାୟାସାଧନା ବା ଓଲଟ ସାଧନା ଓ ପିଣ୍ଡବ୍ରହ୍ମାଣ୍ଡ ବାଦ ଓଡ଼ିଆ ଜନମିଶ୍ରା ଭକ୍ତସାଧକମାନଙ୍କ ଦ୍ୱାରା ଗୃହୀତ ହୋଇ ସେମାନଙ୍କର ସାହିତ୍ୟରେ ସ୍ଥାନଲାଭ କରିଥିଲା । ପିଣ୍ଡ ବ୍ରହ୍ମାଣ୍ଡବାଦର ମୂଳ ପଞ୍ଚରାତ୍ର ଧର୍ମରେ ଦେଖିବାକୁ ମିଳେ । ଶ୍ରୀମଦ୍‌ଭାଗବତରେ ଯେଉଁ ବିରାଟ ପୁରୁଷଙ୍କର ବର୍ଣ୍ଣନା କରାଯାଇଛି, ସେହି ବିରାଟ ପୁରୁଷଙ୍କର ପଦରୁ କଟୀ ପର୍ଯ୍ୟନ୍ତ ସପ୍ତଲୋକ, କଟୀର ଶିର ପର୍ଯ୍ୟନ୍ତ ସପ୍ତଲୋକ-ଏହିପରି ଚଉଦ ଶ ଭୁବନକୁ ଏବଂ ଗ୍ରହ, ନକ୍ଷତ୍ର, ନଦୀ, ପର୍ବତ, ମେରୁ ଆଦିକୁ ତାଙ୍କ ଦେହର ବିଭିନ୍ନ ସ୍ଥାନରେ ନିର୍ଦ୍ଦେଶିତ କରାଯାଇଛି । ସେହି ବିରାଟ ପୁରୁଷ ହେଉଛନ୍ତି ପରମାତ୍ମା । (ଦ୍ୱିତୀୟସ୍କନ୍ଧ, ଷଷ୍ଠ ଅଧ୍ୟାୟ) ଯୋଗ ସାଧନା ପଦ୍ଧତିରେ ଆତ୍ମା ପରମାତ୍ମା ସହିତ ଏକୀଭୂତ ହେଲେ ପରମାତ୍ମାଙ୍କର ବିରାଟ ରୂପକୁ ଅର୍ଥାତ୍ ବ୍ରହ୍ମାଣ୍ଡକୁ ନିଜ ପିଣ୍ଡ ମଧ୍ୟରେ ଅନୁଭବ କରିହୁଏ । ଏହା ହେଉଛି, ପିଣ୍ଡ ବ୍ରହ୍ମାଣ୍ଡ ବାଦର ମୂଳକଥା । ବିଭିନ୍ନ ଉପନିଷଦ୍‌ମାନଙ୍କରେ ଏହି ପିଣ୍ଡବ୍ରହ୍ମାଣ୍ଡବାଦ ବିକ୍ଷିପ୍ତ

ଭାବରେ ଓ ସଂକ୍ଷେପରେ ଦିଆଯାଇଛି । ତାହା ନାଥଧର୍ମରେ ଗୃହୀତ ହୋଇ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟକୁ ଆଗତ ହୋଇଥିବା ଅନୁମାନ କରାଯାଏ । ପରେ ଏହାର ଆଲୋଚନା କରାଯିବାର ଅଭିପ୍ରାୟ ଅଛି ।

ଓଡ଼ିଆଜ୍ଞାନମିଶ୍ରା ଭକ୍ତି ସାହିତ୍ୟ ସୃଷ୍ଟି ହେବା ସମୟରେ ଏବଂ ତାହାର କିଞ୍ଚିତ୍ ପୂର୍ବରୁ ଉତ୍ତର ଭାରତରେ ନିର୍ଗୁଣ ସାଧନା ଧାରାର ବିକାଶ, ଘଟିସାରିଥିଲା । ଉତ୍ତର ଭାରତର ସନ୍ତ ସମ୍ପ୍ରଦାୟ, ସିଦ୍ଧ ସମ୍ପ୍ରଦାୟ ଓ ନିରଞ୍ଜନୀ ସମ୍ପ୍ରଦାୟ ପ୍ରଭୃତି କେତେକ ସମ୍ପ୍ରଦାୟ ଗୁଡ଼ିକ ଏହି ନିର୍ଗୁଣସାଧନାର ବହୁଳ ପ୍ରଚାର କରିଥିଲେ । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ବୈଷ୍ଣବାଚାର୍ଯ୍ୟ ରାମାନୁଜଙ୍କ ପଞ୍ଚମ ଶିଷ୍ୟ ପରମ୍ପରାରେ ଆବିର୍ଭୂତ ରାମାନନ୍ଦସ୍ୱାମୀ ପ୍ରଥମେ ପଞ୍ଚରାତ୍ର ଧର୍ମରେ ନିର୍ଗୁଣ ଜ୍ଞାନମାର୍ଗ ମିଶ୍ରିତ ଭକ୍ତି ସାଧନାର ଉପଯୋଗିତା ଉପରେ ଗୁରୁତ୍ୱ ଦେଇଥିଲେ । କହିବାକୁଗଲେ ତାଙ୍କଠାରୁ ଜ୍ଞାନମିଶ୍ରା ଭକ୍ତିକୈନ୍ଦ୍ରିକ ବୈଷ୍ଣବ ଧର୍ମର ସୂତ୍ରପାତ ଘଟିଥିଲା । ରାମାନନ୍ଦଙ୍କ ଦ୍ୱାରା ପ୍ରଭାବିତ କବୀର ଏହି ମାର୍ଗର ହିଁ ପ୍ରଶସ୍ତି କରିଛନ୍ତି । ରାମାନନ୍ଦଙ୍କ ଭକ୍ତ କବୀର ନିର୍ଗୁଣ ରାମ ଓ ରାମନାମର ମହିମାକୁ ଗୁରୁତ୍ୱ ଦେଇଛନ୍ତି ରାମାନନ୍ଦଙ୍କର ଏହି ପ୍ରଭାବ କବୀରଙ୍କୁ ଯେଭଳି ପ୍ରଭାବିତ କରିଥିଲା, ଓଡ଼ିଆ ପଞ୍ଚସଖା ସାହିତ୍ୟରେ ମଧ୍ୟ ସେହିପରି ପ୍ରତିଫଳନ ଘଟିଥିଲା । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ କେବଳ ରାମାନନ୍ଦଙ୍କ ଦ୍ୱାରା ପ୍ରଭାବିତ— ଏହା କହିବା ସମ୍ପୂର୍ଣ୍ଣ ଠିକ୍ ନୁହେଁ । ସବୁ ସମୟର ଧର୍ମ, ସମ-ସାମୟିକ ପରିବେଶ ଓ ପୂର୍ବବର୍ତ୍ତୀ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଥାଏ । ଏହି ସମୟର ସମସାମୟିକ ପରିବେଶ ପ୍ରତି ଲକ୍ଷ୍ୟ କଲେ ଦେଖାଯାଏ, ମଧ୍ୟ ଯୁଗରେ ଅର୍ଥାତ୍ ଦ୍ୱାଦଶ/ତ୍ରୟୋଦଶ ଶତାବ୍ଦୀ ବେଳକୁ ଭାରତକୁ ମୋଗଲମାନଙ୍କର ଆଗମନ ଫଳରେ ହିନ୍ଦୁ ଧର୍ମ ପ୍ରତି ଏକ ବିଶେଷ ଧକ୍କା ଆସିଥିଲା । ଏହି ସମୟ ବେଳକୁ ବ୍ରାହ୍ମଣ୍ୟ ଧର୍ମର ବହୁ ପ୍ରସାର ଫଳରେ ବ୍ରାହ୍ମଣ ଜାତିର ପ୍ରାଧାନ୍ୟ ବିସ୍ତାରିତ ହୋଇଥିଲା । କହିବାକୁ ଗଲେ ବ୍ରାହ୍ମଣମାନେ ନିଜର ଏକଛତିଆ ପ୍ରଭାବ ବିସ୍ତାର କରିବା ପାଇଁ ବ୍ରାହ୍ମଣେତର ଜାତିକୁ ସମସ୍ତ ପ୍ରକାର ପୂଜା ଓ ସେବା ଅଧିକାରରୁ ବଞ୍ଚିତ କଲେ । ଜ୍ଞାନମାର୍ଗ ଓ ଭକ୍ତିମାର୍ଗ ଅପେକ୍ଷା କର୍ମମାର୍ଗକୁ ପ୍ରାଧାନ୍ୟଦେଇ ଏହାକୁ ମୁକ୍ତିର ଏକ ଉପାୟ ଭାବେ ନିର୍ଦ୍ଦେଶ ଦେଇଥିଲେ । ହିନ୍ଦୁ ସମାଜରେ-ଥିବା ଅସ୍ପୃଶ୍ୟଜାତି ସେମାନଙ୍କ ଦ୍ୱାରା ବହୁ ଅତ୍ୟାଚରିତ ହୋଇଥିଲେ । ନିଜର ଆୟତ୍ତକୁ ବହୁମୁଖୀ କରିବା ପାଇଁ ସେମାନେ ବହୁ ଦେବଦେବୀ ଉପାସନା, ବିଭିନ୍ନ ବ୍ରତ ଓ ପୂଜା-ପାର୍ବଣାଦିର ପ୍ରଚଳନ କରିଥିଲେ । ଏହା କୌଣସି ପ୍ରକାରରେ ବ୍ୟକ୍ତିର ଆଧ୍ୟାତ୍ମିକ ବିକାଶ ପାଇଁ ସହାୟକ ହୋଇନଥିଲା । ବରଂ ବ୍ରାହ୍ମଣମାନଙ୍କ ଦ୍ୱାରା ଆମ ହିନ୍ଦୁ ଧର୍ମରେ

କୁସଂସ୍କାର ପ୍ରବେଶ କରିଥିଲା । ବର୍ଣ୍ଣବୈଷମ୍ୟଗତ ପାରସ୍ପରିକ ବିଦ୍ୱେଷ ହିନ୍ଦୁ ଧର୍ମର ଭିତ୍ତିକୁ ଦୋହଲାଇ ଦେଇଥିଲା । ହିନ୍ଦୁଧର୍ମର ଏହିଭଳି ଏକ ପତନୋନ୍ମୁଖୀ ସମୟରେ ମୋଗଲମାନଙ୍କର ହିନ୍ଦୁଧର୍ମ ପ୍ରତି ଉତ୍ପୀଡ଼ନ ଓ ଇସଲାମ ଧର୍ମର ଏକେଶ୍ୱରବାଦ ହିନ୍ଦୁ ଧର୍ମକୁ ଧ୍ୱଂସ ଆଡ଼କୁ ଟାଣି ନେଇଥିଲା । ହିନ୍ଦୁଧର୍ମର ସୁବିଧା ସୁଯୋଗରୁ ବଞ୍ଚିତ ଅନେକ ବ୍ରାହ୍ମଣେତର ଜାତି ହିନ୍ଦୁଧର୍ମରେ ଅବହେଳିତ ହୋଇ ରହିବା ଅପେକ୍ଷା ଇସଲାମ୍ ଧର୍ମକୁ ଗ୍ରହଣ କରିବା ଶ୍ରେୟସ୍କର ମଣିଥିଲେ । ଉତ୍ତର-ଭାରତରେ ହିନ୍ଦୁ ଓ ଇସଲାମଧର୍ମର ଅର୍ଥାତ୍ ବହୁଦେବ ଉପାସନା ଓ ଏକେଶ୍ୱର ଉପାସନାର ପ୍ରବଳ ସଙ୍ଘର୍ଷ ଘଟିଥିଲା । ଏହି ସଙ୍ଘର୍ଷ ମଧ୍ୟରେ ହିନ୍ଦୁଧର୍ମ ଆତ୍ମରକ୍ଷା କରିବା କଷ୍ଟକର ହୋଇ ପଡ଼ିଥିଲା । କାରଣ ଇସଲାମଧର୍ମର ପ୍ରଚାରକ ଥିଲେ ଭାରତର ଶାସକ । ହିନ୍ଦୁଧର୍ମକୁ ବଞ୍ଚାଇବାକୁ ହେଲେ ହିନ୍ଦୁଧର୍ମର ବର୍ଣ୍ଣବୈଷମ୍ୟ, କୁସଂସ୍କାରଆଦିକୁ ବିଲୋପ କରି ଏକେଶ୍ୱରବାଦ ସମର୍ଥକ ନିର୍ଗୁଣ ଉପାସନାର ପ୍ରଚାର ଏକାନ୍ତ ଆବଶ୍ୟକ ହୋଇପଡ଼ିଥିଲା । ଏହି ନିର୍ଗୁଣ ଉପାସନାର ମୂଳସ୍ରୋତ ସାଂଖ୍ୟ ଧର୍ମରେ ଥିଲେ ସୁଦ୍ଧା, ତାହାର ମୂଳ ଆହୁରି ପୂର୍ବରେ ଅର୍ଥାତ୍ ତନ୍ତ୍ର ସାଧନାରେ ଥିଲା । ଏହା ବୌଦ୍ଧଧର୍ମର ଶୂନ୍ୟବାଦ, ଯୋଗରେ ପ୍ରଣବ, ବେଦାନ୍ତରେ ବ୍ରହ୍ମ ଓ ନାଥ-ସମ୍ପ୍ରଦାୟରେ ଶିବତତ୍ତ୍ୱ ରୂପେ ଗୃହୀତ ହୋଇଥିଲା । ପୁଣି ବୈଷ୍ଣବସମ୍ପ୍ରଦାୟରେ ଏହା ନିର୍ଗୁଣ ରାଧାକୃଷ୍ଣ ଓ ନିର୍ଗୁଣ ରାମରେ ପରିଣତ ହୋଇଥିଲା । ଦ୍ୱାଦଶ ଶତାବ୍ଦୀରୁ ଷୋଡ଼ଶଶତାବ୍ଦୀ ମଧ୍ୟରେ ଉତ୍ତର ଭାରତରେ ଆବିର୍ଭୂତ ସନ୍ଥ ସମ୍ପ୍ରଦାୟ, ଶିଖ୍ ସମ୍ପ୍ରଦାୟ, ନାଥ ସମ୍ପ୍ରଦାୟ ଓ ନିରଞ୍ଜନୀ ସମ୍ପ୍ରଦାୟ ଏହି ଯୋଗପିଣ୍ଡିତ ନିର୍ଗୁଣ ମାର୍ଗର ପ୍ରଚାର କରିଥିଲେ । ଉତ୍ତର ଭାରତରେ ଯେତେବେଳେ ନିର୍ଗୁଣଜ୍ଞାନମାର୍ଗର ପ୍ରଚାର ଚାଲିଥିଲା, ଠିକ୍ ସେତିକି ବେଳେ ଏକାଦଶରୁ ଷୋଡ଼ଶ ଶତାବ୍ଦୀ ବେଳେ ଦକ୍ଷିଣ ଭାରତରେ ସଗୁଣ ଉପାସନା-ମୂଳକ ଭକ୍ତିମାର୍ଗ ଓ ପ୍ରେମମାର୍ଗର ପ୍ରଚାର ଚାଲିଥିଲା । ଦୁଇଟିଯାକ—ମାର୍ଗର ମୂଳ ଗୋଟିଏ ସ୍ଥାନରୁ ଉଦ୍‌ଗତ ହେଲେ ହେଁ ପରବର୍ତ୍ତୀ କାଳରେ ତାହା ଦୁଇଟି ଭିନ୍ନସ୍ଥଳରୁ ଆଗତ ପରସ୍ପର ବିରୋଧୀ ଦୁଇଟି ଭିନ୍ନ ସ୍ରୋତରୂପେ ପ୍ରତୀତ ହେଉଥିଲେ ।

ଉତ୍ତର ଭାରତ ଓ ଦକ୍ଷିଣ ଭାରତର ମଧ୍ୟ ସ୍ଥଳରେ ଓଡ଼ିଶାର ସୀମାଥିବା ହେତୁ ଓଡ଼ିଶାକୁ ଦକ୍ଷିଣ ଭାରତରୁ ଯେଉଁଭଳି ସଗୁଣ ଉପାସନାମୂଳକ ଭକ୍ତି-ମାର୍ଗର ପ୍ରବାହ ଘଟିଥିଲା, ଠିକ୍ ସେହିଭଳି ଉତ୍ତର ଭାରତରୁ ନିର୍ଗୁଣ ଉପାସନା-ମୂଳକ ଜ୍ଞାନମାର୍ଗର ପ୍ରବାହ ଘଟିଥିଲା । ଓଡ଼ିଶା ସ୍ୱାଧୀନ ରାଜ୍ୟ ଥିବା ହେତୁ ଏହା ସର୍ବଭାରତୀୟସ୍ତରରେ ହିନ୍ଦୁଧର୍ମର ଏକ ସୁରକ୍ଷିତ ଦୁର୍ଗଥିଲା ଏବଂ ଏହି

ଦୁର୍ଗର ଅଧିପତି ଥିଲେ ଶ୍ରୀଜଗନ୍ନାଥ । ଶ୍ରୀଜଗନ୍ନାଥ କ୍ଷେତ୍ରକୁ ଓଡ଼ିଶାର ଉଭୟ ଦିଗରୁ ଯେଉଁ ନିର୍ଗୁଣ ଓ ସଗୁଣ ଉପାସନାର ସ୍ରୋତ ପ୍ରବାହିତ ହେଲା ତାହାର ଅପୂର୍ବ ସମନ୍ୱୟ ଘଟିଥିଲା ଶ୍ରୀଜଗନ୍ନାଥ ପୀଠରେ । ସତେଯେପରି ନୀଳାଚଳ-ମହୋଦଧିରେ ଦୁଇଟି ସ୍ରୋତ ମିଶିଯାଇ ନିଜର ମୂଳସ୍ୱରୋଧୀସ୍ୱରକୁ ପରିହାର କରିଥିଲା । ଏହାର ପରିଣାମ ହୋଇଥିଲା ଓଡ଼ିଶାରେ ଜ୍ଞାନମିଶ୍ରା ଭକ୍ତି ମାର୍ଗର ଉଦ୍ଭବ। ଶ୍ରୀଜଗନ୍ନାଥଙ୍କର ଛାତ୍ରଛାୟାତଳେ ଏହି ଧର୍ମ ବିକଶିତ ଓ ପଲ୍ଲବିତ ହୋଇଥିବାରୁ ସେ ହୋଇଥିଲେ ଏହାର ଇଷ୍ଟଦେବ । ଏକ ଦିଗରେ ସେ ନିର୍ଗୁଣ ଉପାସନାର ଧ୍ୟେୟ ବ୍ରହ୍ମ ହେଲାବେଳେ, ଅନ୍ୟ ଦିଗରେ ସେ ସଗୁଣ ଉପାସନାର ଅବଲମ୍ବନ ରାଧା ଓ କୃଷ୍ଣ ହୋଇଛନ୍ତି । ଓଡ଼ିଶାରେ ଜ୍ଞାନମିଶ୍ରା ଭକ୍ତ—ସାଧକବୃନ୍ଦ ଭକ୍ତିମାର୍ଗ ଓ ଜ୍ଞାନମାର୍ଗ ଉଭୟକୁ ଗ୍ରହଣ କରିଛନ୍ତି । ଉଭୟମାର୍ଗର ମହତ୍ତ୍ୱକୁ ମଧ୍ୟ ଉପଲବ୍ଧି କରିଛନ୍ତି । ଭକ୍ତିର ବିକାଶ ପାଇଁ ଜ୍ଞାନର ଆବଶ୍ୟକତା ଓ ଜ୍ଞାନର ପରିସରରେ ଭକ୍ତିର ବିକାଶ ସହିତ ନିର୍ମଳ ପ୍ରେମ ଭକ୍ତିର ଉଦୟ କଥା ସେମାନେ କହିଛନ୍ତି । ଏହାକୁ ଯୋଗର ଲୟ ଅବସ୍ଥା କୁହାଯାଉଥିଲେ ହେଁ ସେମାନେ ନିର୍ମଳପ୍ରେମଭକ୍ତି ଆଖ୍ୟା ଦେଇଛନ୍ତି ।

ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ତିନୋଟି ଧର୍ମଧାରାର ସ୍ୱର ଅନୁଭୂତ ହୋଇଥାଏ । ଗୋଟିଏ ହେଉଛି ପଞ୍ଚରାତ୍ର ବୈଷ୍ଣବଧର୍ମର ଧାରା, ଗୋଟିଏ ହେଉଛି ନାଥଧର୍ମର ଧାରା ଓ ଅନ୍ୟଟି ହେଉଛି ଉତ୍ତର ଭାରତୀୟ ସନ୍ଥଧର୍ମର ଧାରା । ବଳରାମାଦି ପଞ୍ଚସଖା ଏବଂ ତାଙ୍କର ଶିଷ୍ୟମାନଙ୍କ ସାହିତ୍ୟରେ ବୈଷ୍ଣବଧର୍ମ ଓ ନାଥଧର୍ମର ଲକ୍ଷଣ ଦେଖିବାକୁ ମିଳୁଥିଲେ ହେଁ ଉତ୍ତରଭାରତୀୟ ସନ୍ଥଧର୍ମର ପ୍ରଭାବ ଅଳ୍ପ ଦେଖିବାକୁ ମିଳେ । କିନ୍ତୁ ସପ୍ତଦଶ ଶତାବ୍ଦୀର ଶେଷଭାଗ ଆଡ଼କୁ ଆବିର୍ଭୂତ ଜ୍ଞାନମିଶ୍ରାଭକ୍ତ ସାଧକ ଈଶ୍ୱର ଦାସ, ଚୈତନ୍ୟ ଦାସ, ଦେବାନନ୍ଦ ଦାସ, ଅରକ୍ଷିତ ଦାସ ପ୍ରମୁଖ କେତେକ ଜ୍ଞାନମିଶ୍ରାସାଧକ ଏବଂ ମହିମା ଧର୍ମ ପ୍ରବର୍ତ୍ତକ ସ୍ୱାମୀଭୋଇ ଏବଂ ତାଙ୍କ ଶିଷ୍ୟ ପରମ୍ପରାର ସାହିତ୍ୟରେ ଉତ୍ତରଭାରତୀୟ ସନ୍ଥଧର୍ମର ପୂର୍ଣ୍ଣ ପ୍ରତିଫଳନ ଘଟିଥିଲା । ଏହାର କାରଣ ହେଉଛି ୧୫୬୮ ଖ୍ରୀ:ଅ ପର୍ଯ୍ୟନ୍ତ ଓଡ଼ିଶାକୁ ମୋଗଲ ଶାସନ ଓ ଇସ୍‌ଲାମଧର୍ମ ପ୍ରବେଶ କରି ନଥିଲା । ଏହି ସମୟ ପର୍ଯ୍ୟନ୍ତ ଓଡିଶା ସହିତ ଉତ୍ତର ଭାରତ ଅପେକ୍ଷା ଦକ୍ଷିଣ ଭାରତର ସମ୍ବନ୍ଧ ଅଧିକ ଥିଲା । ମୋଗଲ ଶାସନାଧୀନ ଉତ୍ତର ଭାରତ ସହିତ ସ୍ୱାଧୀନ ଓଡ଼ିଶାର ସମ୍ପର୍କ ସେତେ ନିବିଡ଼ ହୋଇପାରିନଥିଲା । ଫଳରେ ସୁଫୀମତବାଦ ପ୍ରଭାବିତ ସନ୍ଥଧର୍ମ ପ୍ରାୟ ଷୋଡ଼ଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ସହଜରେ ଗୃହୀତ ହେବା ସମ୍ଭବପର ହୋଇପାରି ନଥିଲା । ଷୋଡ଼ଶ ଶତାବ୍ଦୀ ଶେଷ ବେଳକୁ ଓଡ଼ିଶାରେ ମୋଗଲ ଶାସନ ପ୍ରଚଳିତ ହେବା ଫଳରେ ଉତ୍ତର ଭାରତ ସହିତ ଏହାର

ପ୍ରତ୍ୟକ୍ଷ ସଂଯୋଗ ଘଟିଥିଲା ଏବଂ ଉତ୍ତର ଭାରତୀୟ ସନ୍ଥଧର୍ମ ଓଡ଼ିଶା ମାଟିରେ ପ୍ରବାହିତ ହେବାକୁ ଲାଗିଲା ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର ପୃଷ୍ଠଭୂମି ବିଚାର କଲାବେଳେ ଆମକୁ ଏହି ସମସ୍ତ ବିଷୟ ସ୍ମରଣ ରଖିବାକୁ ହେବ । ଏହି ସାହିତ୍ୟ ଏକ ରହସ୍ୟାବୃତ ସାହିତ୍ୟ ଓ ସାଙ୍କେତିକତାର ପରିପୂର୍ଣ୍ଣ । ଏହାକୁ ବୁଝିବାକୁ ହେଲେ ଏହାର ବିଭିନ୍ନ ତତ୍ତ୍ୱଗୁଡ଼ିକୁ ଭଲଭାବରେ ହୃଦୟଙ୍ଗମ କରିବା ଦରକାର । ସେହି ତତ୍ତ୍ୱ-ଗୁଡ଼ିକୁ ପୃଥକ ଭାବରେ ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ବିଚାର କରାଯାଉଛି ।

## ଜ୍ଞାନମିଶ୍ରା ଭକ୍ତିଧର୍ମ ସଂପର୍କରେ :—

ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତିମାର୍ଗରେ ଜ୍ଞାନମାର୍ଗର ପ୍ରାଧାନ୍ୟ ପରିଲକ୍ଷିତ ହୋଇଥାଏ । ଏଥିରେ ଥିବା ଭକ୍ତିମାର୍ଗ ଜ୍ଞାନ-ମାର୍ଗର ଏକ ଚରମ ପରିଣତି ଏବଂ ଏହା ଜ୍ଞାନମାର୍ଗର ଅଙ୍ଗୀଭୂତ ଓ ଜ୍ଞାନମାର୍ଗ ଉପରେ ନିର୍ଭରଶୀଳ । ଭାରତୀୟ ଧର୍ମ ପରମ୍ପରାରେ ସାଧାରଣତଃ ତିନପ୍ରକାର ସାଧନାମାର୍ଗ ଦେଖାଯାଇଥାଏ । ସେଗୁଡ଼ିକ ହେଉଛି କର୍ମମାର୍ଗ, ଜ୍ଞାନମାର୍ଗ ଓ ଭକ୍ତିମାର୍ଗ । ବୈଦିକ କର୍ମକାଣ୍ଡର ପୂଜାପଦ୍ଧତି, ଯଜ୍ଞାନୁଷ୍ଠାନ, ବିଭିନ୍ନ ବିଧିବିଧାନ ଓ ବାହ୍ୟାଚାରଗୁଡ଼ିକ ଆଧ୍ୟାତ୍ମିକ ଉନ୍ନୟନର ପ୍ରକୃଷ୍ଟ ପନ୍ଥାରୂପେ ବିବେଚିତ ହୋଇ ନଥିବାରୁ ଜ୍ଞାନମାର୍ଗର ଉଦ୍ଭବ ହୋଇଥିଲା । ଉପନିଷଦ୍-ମାନଙ୍କରେ ଏହି ଜ୍ଞାନମାର୍ଗର ହିଁ ବିସ୍ତୃତ ଚର୍ଚ୍ଚା କରାଯାଇଛି । ଉପନିଷଦ୍ ସମୂହ-ରେ ଜ୍ଞାନକୁ ପରାବିଦ୍ୟା ଓ ଅପରାବିଦ୍ୟା ଏହିପରି ଦୁଇଭାଗରେ ବିଭକ୍ତ କରାଯାଇଛି । ଚତୁର୍ବେଦ, ଶିକ୍ଷା, କଳ୍ପ, ନିରୁକ୍ତ, ବ୍ୟାକରଣ, ଜ୍ୟୋତିଷ ଓ ଛନ୍ଦ ଆଦି ବିଦ୍ୟା-ଗୁଡ଼ିକ ହେଉଛି ଅପରାବିଦ୍ୟା । ଅପରାବିଦ୍ୟାରୁ ନିମ୍ନତର ଜ୍ଞାନଲାଭ ହୋଇଥାଏ । ପରାବିଦ୍ୟା । ହେଉଛି ବ୍ରହ୍ମବିଷୟକ ଜ୍ଞାନ ଓ ଆତ୍ମା ବିଷୟକ ଜ୍ଞାନ ବା ଆତ୍ମଜ୍ଞାନ । ଏହା ଉଚ୍ଚତମ ଜ୍ଞାନ ରୂପେ ବିବେଚିତ । ଏହି ଜ୍ଞାନ ହିଁ ଆତ୍ମାକୁ ଜନ୍ମମୃତ୍ୟୁ ବନ୍ଧନରୁ ମୁକ୍ତ ଦେଇ ସ୍ୱସ୍ୱରୂପ ଉପଲବ୍ଧି କରାଇଥାଏ ଏବଂ ତାହାର ସମସ୍ତ ଦୁଃଖ ନିବୃତ୍ତି ଘଟାଇଥାଏ ।

ଉତ୍ତର ଭାରତୀୟ ସନ୍ଥଧର୍ମ ଓ ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତି ଧର୍ମରେ ଜ୍ଞାନକୁ ଅନ୍ୟ ଦୁଇପ୍ରକାରେ ବିଭକ୍ତ କରାଯାଇଛି । ଗୋଟିଏ ହେଉଛି ତତ୍ତ୍ୱଜ୍ଞାନ ଏବଂ

ଅନ୍ୟଟି ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ । ବେଦ, ପୁରାଣ ଓ ଶାସ୍ତ୍ର ଆଦିରୁ ଯେଉଁ ବ୍ରହ୍ମ ସମ୍ପର୍କିତ ଜ୍ଞାନଲାଭ ହୋଇଥାଏ, ସେଗୁଡ଼ିକ ହେଉଛି ଶାସ୍ତ୍ରଜ୍ଞାନ ବା ତତ୍ତ୍ୱଜ୍ଞାନ । ଏହା ହେଉଛି ବ୍ରହ୍ମ ସମ୍ପର୍କିତ ପରୋକ୍ଷଜ୍ଞାନ । ନିଜର ଅନ୍ତର୍ଦୃଷ୍ଟି ଦ୍ୱାରା ଯେଉଁ ଆତ୍ମପରିଚୟ ଓ ବ୍ରହ୍ମଦର୍ଶନ ଘଟିଥାଏ, ତାହା ହେଉଛି ଆତ୍ମଜ୍ଞାନ । ଏହାର ଅନ୍ୟନାମ ପ୍ରତ୍ୟକ୍ଷଜ୍ଞାନ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାଧକମାନେ ଏହି ଆତ୍ମଜ୍ଞାନ ଉପରେ ବେଶି ପ୍ରାଧାନ୍ୟ ଦେଇଛନ୍ତି । ଉତ୍ତର ଭାରତୀୟ ସନ୍ଥବୃନ୍ଦ ମଧ୍ୟ ଏହି ଆତ୍ମଜ୍ଞାନକୁ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଆତ୍ମଜ୍ଞାନ ଲାଭ ପାଇଁ ଯେଉଁ ସାଧନା ମାର୍ଗର ଅବଲମ୍ବନ କରାଯାଏ, ତାହାର ନାମ ଜ୍ଞାନମାର୍ଗ । ଆତ୍ମିକ ଉନ୍ନୟନ ପାଇଁ ଉପନିଷଦ ସମୂହରେ କେବଳ ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ ଉପରେ ଗୁରୁତ୍ୱ ଦିଆଯାଇଛି । ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନକୁ ସତ୍ୟବୋଲି ଏଥିରେ ଘୋଷଣା କରାଯାଇଛି । ଈଶୋପନିଷଦରେ କୁହାଯାଇଛି—"ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟାପିହିତଂ ମୁଖମ୍" ଅର୍ଥାତ୍ ସତ୍ୟକୁ ହିରଣ୍ମୟ ପାତ୍ରରେ ରଖାଯାଇ ତାର ମୁଖକୁ ଘୋଡ଼ଣୀରେ ଆବୃତ୍ତ କରାଯାଇଛି । ସ୍ୱର୍ଣ୍ଣପାତ୍ରର ଲକ୍ଷିତ ଅର୍ଥ ହେଉଛି ବୈଭବ ଏବଂ ମାୟାମୋହ ହେଉଛି ସ୍ୱର୍ଣ୍ଣପାତ୍ରର ଢାଙ୍କୁଣୀ ସଦୃଶ । ମାୟାମୋହ ଏବଂ ବୈଭବ ଏସବୁକୁ ଦୂରକଲେ ସତ୍ୟ ବା ଆତ୍ମଜ୍ଞାନର ଉପଲବ୍ଧି ସମ୍ଭବ । ମାୟା ହେଉଛି ଅବିଦ୍ୟା । ଏହି ଅବିଦ୍ୟା ପ୍ରଭାବରେ ଜାତ ଅଜ୍ଞାନ ହିଁ ଜ୍ଞାନମାର୍ଗର ପ୍ରଧାନ ପ୍ରତିବନ୍ଧକ । ମାୟା ଅବିଦ୍ୟା ଓ ଅଜ୍ଞାନର କାରଣ । ଏହି ମାୟା ଅଭାବରୁ ମୁକ୍ତ ହେବାକୁ ହେଲେ ମାୟାପତି ମହେଶ୍ୱରଙ୍କର କୃପା ଆବଶ୍ୟକ ।

ଶ୍ରୀମଦ୍ଭଗବଦ୍ ଗୀତାରେ ମଧ୍ୟ କୁହାଯାଇଛି—

ଦୈବୀହ୍ୟେଷା ଗୁଣମୟୀ ମମମାୟା ଦୁରତ୍ୟୟା
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ ।

ସେଥିପାଇଁ ଜ୍ଞାନମାର୍ଗର ଉପାସକ ବ୍ରହ୍ମ ବା ମହେଶ୍ୱରଙ୍କର କୃପାଭିକ୍ଷା କରି ଥାଆନ୍ତି ଏବଂ ଏହା ହେଉଛି ଭକ୍ତିମାର୍ଗର ପରିଚାୟକ । ଏହି ଭକ୍ତି ହେଉଛି ନିଷ୍କାମ ଭକ୍ତି । ପଞ୍ଚସଖାଙ୍କ ସାହିତ୍ୟରେ ଭକ୍ତି ରସାଣିତ ଜଣାଣ ଓ ଭଜନଗୁଡ଼ିକ ଏହି ଭକ୍ତିଧର୍ମୀ ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ଆତ୍ମଜ୍ଞାନ ଲାଭର ସହାୟକ ଜ୍ଞାନ-ମାର୍ଗକୁ ଉପସ୍ଥାପନ କରାଯାଇଅଛି । ଯୋଗିର ଅନ୍ତର୍ମୁଖୀ ଦୃଷ୍ଟିରେ ଆତ୍ମଜ୍ଞାନ ଓ

ବ୍ରହ୍ମଜ୍ଞାନ ଲାଭ କେବଳ ସମ୍ଭବ । ଯୋଗ ସାଧନା ଦ୍ୱାରା ପ୍ରାଣବାୟୁର ଚଂଚଳ ପ୍ରବାହ ସ୍ଥିର ହୋଇ ତାହା ଊର୍ଦ୍ଧ୍ୱଗାମୀ ହୋଇଥାଏ ଏବଂ ଚିତ୍ତଶକ୍ତି ବା କୁଣ୍ଡଳିନୀ ଶକ୍ତିର ବିକାଶ ଘଟିଥାଏ । ଯୋଗସାଧନାର ସମାଧି ଅବସ୍ଥା ବା ଚରମାବସ୍ଥାରେ ସାଧକ ବ୍ରହ୍ମଙ୍କର ଜ୍ୟୋତିର୍ମୟ ଓ ଶବ୍ଦମୟ ରୂପକୁ ସହସ୍ରଦଳ ଚକ୍ରର ଜ୍ୟୋତିର୍ମୟ ଓ ଅନାହତପୁରରେ ପ୍ରତ୍ୟକ୍ଷ କରିଥାଏ । ସାଧକର ଆତ୍ମା ପରମାତ୍ମା ସହିତ ମିଳିତ ହେବା ଫଳରେ ତାହାର ବ୍ରାହ୍ମୀସ୍ଥିତି ଅବସ୍ଥା ଆସିଥାଏ । ଏହି ଅବସ୍ଥାରେ ସେ ତାର ଆତ୍ମାକୁ ବ୍ରହ୍ମଙ୍କଠାରୁ ଅଭିନ୍ନ ଦେଖେ ଏବଂ ପରିପାର୍ଶ୍ୱ ଜଗତ ତାହା ପାଖରେ ମୂଲ୍ୟହୀନ ଓ ଶୂନ୍ୟ ହୋଇପଡ଼େ । ଏହା ଫଳରେ ଅବିଦ୍ୟା ଓ ଅଜ୍ଞାନର ଉତ୍ପାଦକ ମାୟାର ପ୍ରଭାବ ପ୍ରତିହତ ହୋଇଥାଏ । ସାଧକଠାରେ ଯେଉଁ ନିର୍ମଳ ଜ୍ଞାନ ଏହି ଅବସ୍ଥାରେ ଜାତ ହୁଏ, ତାହା ହେଉଛି ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ । ଯୋଗସାଧନା-ରେ ସିଦ୍ଧିଲାଭ ପାଇଁ ଯୋଗସିଦ୍ଧଗୁରୁର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଆବଶ୍ୟକ । କେଣୁ ଜ୍ଞାନମାର୍ଗରେ ଗୁରୁର ଏକ ବିଶିଷ୍ଟ ଭୂମିକା ରହିଛି । ଏହି ମାର୍ଗରେ ଗୁରୁ ସାକ୍ଷାତ୍ ବ୍ରହ୍ମ ବା ଈଶ୍ୱର ରୂପେ ଗୃହୀତ । ଓଡ଼ିଶାରେ ବଳରାମ ଆଦି ପଞ୍ଚସଖାଙ୍କ ଆବିର୍ଭାବ ପୂର୍ବରୁ ଏହି ଜ୍ଞାନମାର୍ଗ ପ୍ରବହମାନ ଥିଲା । ସେମାନେ ସେମାନଙ୍କ ସାହିତ୍ୟ ମାଧ୍ୟମରେ ଏହି ମାର୍ଗର ବିଭିନ୍ନ ସାଧନା ପ୍ରଣାଳୀ ଓ ତତ୍ତ୍ୱର ବ୍ୟାଖ୍ୟାନ କରି ତାହାକୁ ଲୋକ ପ୍ରିୟ କରାଇବାକୁ ଚେଷ୍ଟା କରାଇଛନ୍ତି । ଭକ୍ତିମାର୍ଗ ଜ୍ଞାନମାର୍ଗର ଚରମ ପରିଣତି, ଅର୍ଥାତ୍ ସମାଧି ଅବସ୍ଥାରେ ବ୍ରହ୍ମଦର୍ଶନ କଲା ପରେ ଯେଉଁ ଲୟାବସ୍ଥା ଆସେ ତାହା ନିର୍ମଳ ପ୍ରେମ ବା ନିର୍ମଳ ଭକ୍ତି ସଂଜ୍ଞକ । ଆତ୍ମା ନିଜର ସତ୍ତାକୁ ବ୍ରହ୍ମଙ୍କଠାରେ ଦର୍ଶନ କରି ତାହାର ଯେଉଁ ଐକାନ୍ତିକ ତନ୍ମୟ ଭାବ ଆସେ ତାହା ହେଉଛି ତଲ୍ଲୀନ, ତଦ୍ଭାବଲୟ ଭାବ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତସାଧକ ଏହି ତନ୍ମୟଭାବ କୈବଲ୍ୟିକ ଭକ୍ତି ବା ପ୍ରେମ କଥା ସେମାନଙ୍କ ଗ୍ରନ୍ଥରେ ବାରମ୍ବାର କହିଛନ୍ତି । ଜ୍ଞାନମିଶ୍ରା ଭକ୍ତିସାଧନା ମାର୍ଗର ଉତ୍କୃଷ୍ଟତାର ପରିଚାୟକ ଦୁଇଟି ଉଦ୍ଧୃତି ଏଠାରେ ପ୍ରଦାନ କରାଯାଉଅଛି—

ବ୍ରହ୍ମ ସାଧନାର                କହିଲି କୋଇଲା ସୁତ
ସିଦ୍ଧିକୁ ଅକ୍ଳେଶ ଚହିଁ କ୍ଳେଶ ନପାଇ

ପରମ ସୁଖେ ଭ୍ରମନ୍ତି                ପ୍ରାପତ ହୁଏ ଭକତି
ମୋହଠାରେ ଲୀନ ଯେହୁ ପ୍ରାଣୀ ହୁଅଇ

ଯେହୁ ଏ ପଥେ ନଯାନ୍ତି                ମାୟା ପଥେ ସେ ଗମନ୍ତି
ବ୍ୟର୍ଥ ସେମାନଙ୍କର ଫଳ ନପାନ୍ତି

ସେ ଠୁଳ ପ୍ରାଣୀ ହୁଅନ୍ତି ଅକାର୍ଯ୍ୟରେ ନାଶ ଯାନ୍ତି
ପାପ ତମିରରେ ପଡ଼ି ବଣା ହୁଅନ୍ତି

ତାହାଙ୍କୁ ସୁଗତି ନାହିଁ ଗତି ପାଇବ ସେ କାହିଁ
ନାନା ଯୋନି ଭ୍ରମୁଥାଇ ସେ ରୂପଧରି

(ଦ୍ରଷ୍ଟବ୍ୟ ବଳରାମ ଦାସଙ୍କ 'ଛତିଶ ଗୁପ୍ତଗୀତା'—୨୮ ଅଧ୍ୟାୟ)

ନହେଲେ ତତ୍ତ୍ୱଜ୍ଞାନ ଭେଟ, ନମିଳେ କେବେ ମୁକ୍ତିବାଟ
ସେ ଆତ୍ମଶକ୍ତି ତତ୍ତ୍ୱ ପାଇଁ, ଅଚ୍ୟୁତ ଆକୁଳେ କାନ୍ଦଇ ।

( ଦ୍ରଷ୍ଟବ୍ୟ ପଟଳ ଛୟାଳିଶ ପଟଳ)

ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତି ଧର୍ମରେ ଯୋଗତତ୍ତ୍ୱ, ଯନ୍ତ୍ର, ମନ୍ତ୍ର, ତନ୍ତ୍ର ତତ୍ତ୍ୱ, ସୃଷ୍ଟି ତତ୍ତ୍ୱ, ନାମତତ୍ତ୍ୱ, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ, ବ୍ରହ୍ମତତ୍ତ୍ୱ, ଶୂନ୍ୟତତ୍ତ୍ୱ, ଜଗନ୍ନାଥ ତତ୍ତ୍ୱ, ରାଧାକୃଷ୍ଣ ତତ୍ତ୍ୱ ଓ ଭକ୍ତି ତତ୍ତ୍ୱ ଆଦି ଅନେକ ତତ୍ତ୍ୱର ବହୁଳ ଚର୍ଚ୍ଚା ହୋଇଛି । କେଣୁ ସେହି ତତ୍ତ୍ୱଗୁଡ଼ିକର ପୃଥକ୍-ପୃଥକ୍ ଆଲୋଚନା ପରବର୍ତ୍ତୀ ପରିଚ୍ଛେଦରେ କରାଯାଉଛି ।



# ଦ୍ୱିତୀୟ ପରିଚ୍ଛେଦ

# ଜ୍ଞାନ ଓ ଭକ୍ତିତତ୍ତ୍ୱ

ଖ୍ରୀଷ୍ଟୀୟ ପଞ୍ଚଦଶ, ଷୋଡ଼ଶ ଓ ସପ୍ତଦଶଶତାବ୍ଦୀର ରହସ୍ୟାତ୍ମକ ଓଡ଼ିଆ ଗୀତ ସାହିତ୍ୟକୁ ମୁଖ୍ୟତଃ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ କୁହାଯାଇଥାଏ । ଏହି ଧର୍ମ ସାହିତ୍ୟରେ ଜ୍ଞାନଯୋଗ ଓ ଭକ୍ତିଯୋଗ—ଏହି ଉଭୟ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି ଏବଂ ଆଧ୍ୟାତ୍ମିକ ଉନ୍ନୟନ ପାଇଁ ଏହି ଦୁଇ ସାଧନା ମାର୍ଗର ଆବଶ୍ୟକତା ଯେ ଅପରିହାର୍ଯ୍ୟ, ତାହା ମଧ୍ୟ କୁହାଯାଇଛି । ଓଡ଼ିଶାରେ ଏହି ସମୟରେ ବୈଷ୍ଣବ ଧର୍ମର ସାଧନାପନ୍ଥା ଜ୍ଞାନ ଓ ଭକ୍ତିସାଧନା କୈନ୍ଦ୍ରିକ ଥିଲା । ଚନ୍ଦ୍ରମଣି ଦାସ 'ସୁଧାସାର ଗୀତା'ରେ ଲେଖିଛନ୍ତି—

"ଲକ୍ଷ୍ମୀ ନାରାୟଣ ସନ୍ତୋଷ ହୋଇଣ ଏହି ଅବଧାନ କଲେ
ଭକତଙ୍କ ସଙ୍ଗେ ଗଣନା କରିଣ ବଇଷ୍ଣବ ଦୀକ୍ଷା ଦେଲେ ।
ମରିବା ଜୀଇଁବା ଇଚ୍ଛା ନ କରିବୁ ଭକତରେ ଥିବୁ ରହି
ଭକତରେ ଥିଲେ ଚଉଦ ବ୍ରହ୍ମାଣ୍ଡ ତୋ ପଛେ ଥିବ ଗୋଡ଼ାଇ ।
ବ୍ରହ୍ମ ରୂପ କୋଟି ସୃଷ୍ଟି ଭେଦରେ ଜଗିବୁ କହଇ ବସି
ଅଜପା ମନ୍ତ୍ରକୁ ଅମନେ ଘୋଷିବୁ ଅଦୋଷ ରୂପୀ ହସି ।" (ପ୍ରଥମ ବୋଲି)

ଶୁଦ୍ଧା ଭକ୍ତ ଉପାସକବୃନ୍ଦ ଜ୍ଞାନମାର୍ଗକୁ ଭକ୍ତିମାର୍ଗର ପରିପନ୍ଥୀ ବୋଲି ଘୋଷଣା କରିଆସନ୍ତି । ଶୁଦ୍ଧାଭକ୍ତିବାଦୀ ଭକ୍ତଚରଣ ଦାସଙ୍କ "ମଥୁରାମଙ୍ଗଳ" କାବ୍ୟରେ ଏହି ବାଣୀ ଗୋପୀଙ୍କ ମୁଖରେ ପ୍ରତିଧ୍ୱନିତ ହୋଇଛି—

ତଥାପି ମଧୁର ରସେ ଜ୍ଞାନ ଯେବେ ଅଳ୍ପ ମିଶେ
ତାକୁ ସେ କରଇ ବେଗେ ନାଶ
ପତିବ୍ରତା ନାରୀ ଯେହ୍ନେ ପରପୁରୁଷର ସନେ
ସଂଯୋଗ ହୋଇଲେ ହୋଏ ଭ୍ରଂଶ, ହେ ହରଦୂତ
ସେହି ମତ ଭକ୍ତି ରସେ ଜ୍ଞାନ, ଅମ୍ଭେମାନେ ନଜାଣୁ ସେପାନ ହେ ।" (୧୭/୧୨)

ଭକ୍ତି ଓ ଜ୍ଞାନମାର୍ଗ ପରସ୍ପର ବିରୋଧୀ—ଏହି କଥା ଶ୍ରୀ ଚୈତନ୍ୟଙ୍କ ପରବର୍ତ୍ତୀ ସମୟରୁ ପ୍ରଚଳିତ ହେବାକୁ ଆରମ୍ଭ କରିଥିଲା । କିନ୍ତୁ ବାସ୍ତବରେ କ'ଣ ଜ୍ଞାନ ଓ ଭକ୍ତି, ଜ୍ଞାନ ଓ ପ୍ରେମ, ଜ୍ଞାନ ଓ ପ୍ରେମଭକ୍ତି ପରସ୍ପର ବିରୋଧୀ ନା' କେବଳ ଉଗ୍ର ସାମ୍ପ୍ରଦାୟିକତାର ପରିଚୟସୂଚକ ?

ଏହାର ପ୍ରକୃତ ଉତ୍ତର ପାଇବାକୁ ହେଲେ ଆମକୁ ପଛକୁ ଫେରିଯିବାକୁ ହେବ । ଯେଉଁଠାରୁ ବୈଷ୍ଣବଧର୍ମ ଓ ଏହାର ସାଧନାମାର୍ଗର ବିକାଶ ଘଟିଛି । ବୈଷ୍ଣବ ଧର୍ମର ମୂଳ ଉତ୍ସ ହେଉଛି, ପଞ୍ଚରାତ୍ର ଆଗମ । ପଞ୍ଚରାତ୍ର ଆଗମରେ ଯେଉଁ ସାଧନା ମାର୍ଗ କଥା କୁହାଯାଇଛି, ତାହା କେବଳ ଭକ୍ତି କୈନ୍ଦ୍ରିକ ନୁହେଁ । ଏହା କର୍ମ-ଜ୍ଞାନ ଓ ଭକ୍ତିମିଶ୍ରିତ ସାଧନାମାର୍ଗ । ପଞ୍ଚରାତ୍ର ଧର୍ମର ପଞ୍ଚକାଳରେ ଏହା ସୁସ୍ପଷ୍ଟ । 'ପଞ୍ଚକାଳ'କୁ ଯେଉଁମାନେ ଜାଣନ୍ତି ସେମାନଙ୍କୁ ପଞ୍ଚକାଳଜ୍ଞ ପଞ୍ଚରାତ୍ର ଉପାସକ କୁହାଯାଇଥାଏ । ସେହି ପଞ୍ଚକାଳ ହେଉଛି—

୧ । ଅଭିଗମନ—ଅର୍ଥାତ୍ ଜପ, ଧ୍ୟାନ, ଅର୍ଚ୍ଚନ ଆଦି ଦ୍ୱାରା ଭଗବାନଙ୍କ ପ୍ରତି ଅଭିମୁଖ ହେବା ।

୨ । ଉପାଦାନ—ପୂଜା ନିମିତ୍ତ ଫଳ ପୁଷ୍ପାଦି ସଂଗ୍ରହ କରିବା ।

୩ । ଇଜ୍ୟା—ପୂଜା

୪ । ସ୍ୱାଧ୍ୟାୟ—ପଞ୍ଚରାତ୍ର ଆଗମ ଗ୍ରନ୍ଥର ଶ୍ରବଣ, ମନନ ଓ ଉପଦେଶ ପ୍ରଦାନ ।

୫ । ଯୋଗ—ଅଷ୍ଟାଙ୍ଗ ଯୋଗ ସାଧନ । ଏହାର ଶେଷ ପର୍ଯ୍ୟାୟ ହେଉଛି ଶରଣାଗତି ବା ପ୍ରପତ୍ତି ।

ପଞ୍ଚରାତ୍ରର ଅର୍ଥ ହେଉଛି ପଞ୍ଚଜ୍ଞାନ ଏବଂ ସେହି ପଞ୍ଚଜ୍ଞାନ ହେଉଛି ପରମ ତତ୍ତ୍ୱ । ପଞ୍ଚରାତ୍ର ଆଗମ ବର୍ଣ୍ଣିତ ପଂଚଜ୍ଞାନ ହେଉଛି—

୧ । ପରମତତ୍ତ୍ୱ

୨ । ଭକ୍ତି

୩ । ମୁକ୍ତି

୪ । ଯୋଗ

୫ । ବିଷୟ

ପଞ୍ଚରାତ୍ର ଧର୍ମରେ ଜ୍ଞାନ ପ୍ରଧାନ ସାଂଖ୍ୟ ଦର୍ଶନ ଓ ସାଧନା ପ୍ରଧାନ ଯୋଗ ଦର୍ଶନ କିପରି ମିଶ୍ରିତ ହୋଇଛି, ତାହା ଏହି ଗ୍ରନ୍ଥର ପ୍ରଥମରୁ ଦର୍ଶାଇ ଦିଆଯାଇଛି । ଏହାର ମହାପୁରାଣ ହେଉଛି ଶ୍ରୀମଦ୍ଭାଗବତ । ଶ୍ରୀମଦ୍ଭାଗବତରେ କ'ଣ ପ୍ରତିପାଦ୍ୟ, ତାହା ତହିଁରେ ସୂଚିତ । ଏହି ଗ୍ରନ୍ଥର ଦ୍ୱାଦଶ ସ୍କନ୍ଧରେ ଉଲ୍ଲେଖ ଅଛି—

" ଶ୍ରୀମଦ୍ ଭାଗବତଂ ପୁରାଣମମଲଂ ଯଦ୍ ବୈଷ୍ଣବାନାଂ ପ୍ରିୟଂ
ଯସ୍ମିନ୍ ପାରମହଂସ୍ୟମେକମମଲଂ ଜ୍ଞାନପରଂ ଗୀୟତେ
ତତ୍‌ଜ୍ଞାନ ବିରାଗ ଭକ୍ତି ସହିତଂ ନୈଷ୍କର୍ମ୍ୟମାବିଷ୍କୃତଂ
ତଚ୍ଛୃଣ୍ୱନ ବିପଠନ୍ ବିଚାରଣପରୋ ଭକ୍ତ୍ୟା ବିମୁଚ୍ୟେନ୍ନରଃ" । (୧୨/୧୩୧/୧୮)

ଅର୍ଥାତ୍ ଶ୍ରୀମଦ୍ଭାଗବତ ମହାପୁରାଣ, ଯାହା ବୈଷ୍ଣବମାନଙ୍କର ପ୍ରିୟ ଅଟେ, ସେଥିରେ ନିର୍ମଳ ପାରମହଂସ୍ୟ ଜ୍ଞାନର ଗାନ କରାଯାଇଛି । ସେଥିରେ ବର୍ଣ୍ଣିତ ନୈଷ୍କର୍ମ୍ୟ, ଜ୍ଞାନ-ବୈରାଗ୍ୟ ଓ ଭକ୍ତିରେ ଯୁକ୍ତ ଅଟେ । ଏହାର ଶ୍ରବଣ, ପଠନ ତଥା ମନନ ଦ୍ୱାରା ଜୀବ ଭକ୍ତି ଲାଭ କରି ମୁକ୍ତ ହୋଇଥାଏ ।

ଶ୍ରୀମଦ୍ଭାଗବତରେ ଜ୍ଞାନ ଓ ଭକ୍ତିକୁ ପରସ୍ପର ସାପେକ୍ଷ ରୂପେ ବହୁ ସ୍ଥଳରେ ବର୍ଣ୍ଣନା କରାଯାଇଛି । ଶ୍ରୀମଦ୍‌ଭଗବଦ୍ ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବିଭିନ୍ନ ତତ୍ତ୍ୱ ଓ ସାଧନାମାର୍ଗ ବିଷୟରେ ଉପଦେଶ ଦେଇ ସାରିଲା ପରେ ଅଷ୍ଟାଦଶ ଅଧ୍ୟାୟ (ଶେଷ ଅଧ୍ୟାୟ)ରେ ତାହାର ସାରାଂଶକୁ ୪୧ ଶ୍ଳୋକରୁ ୫୫ ଶ୍ଳୋକ ମଧ୍ୟରେ ପ୍ରଦାନ କରିଛନ୍ତି । ଏହି ସାରାଂଶରେ ତିନୋଟି ସାଧନାର ଉଲ୍ଲେଖ ଅଛି । ତାହା ହେଉଛି—

୧ । ନିଷ୍କାମ କର୍ମ ସାଧନା ।

୨ । ବ୍ରହ୍ମଜ୍ଞାନ ଲାଭ ।

୬ । ବ୍ରହ୍ମଜ୍ଞାନ ଲବ୍ଧ ଜନିତ ଭକ୍ତିର ପ୍ରକାଶ ଶ୍ରୀମଦ୍ଭାଗବତର ମର୍ମବାଣୀ ଠିକ୍ ଏହା ଏବଂ ଏହା ହେଉଛି ପଞ୍ଚସଖା ଧର୍ମର ସାଧନାମାର୍ଗ । ଏଥିରେ କେବଳ ନିଷ୍କାମ କର୍ମ କିମ୍ବା କେବଳ ବ୍ରହ୍ମଜ୍ଞାନ କିମ୍ବା ଭକ୍ତିକୁ ପ୍ରାଧାନ୍ୟ ଦିଆଯାଇ ନାହିଁ । ଏହି ସାଧନା ସମ୍ପୂର୍ଣ୍ଣ ସମନ୍ୱୟମୂଳକ ସାଧନା ହିଁ ସର୍ବୋତ୍କୃଷ୍ଟ ସାଧନା ଏବଂ ଏଗୁଡ଼ିକ କ୍ରମବିକାଶଶୀଳ ଓ ପରସ୍ପର ସାପେକ୍ଷ । ଶ୍ରୀମଦ୍ ଭଗବଦ୍ ଗୀତାର ଅଷ୍ଟାଦଶ ଅଧ୍ୟାୟର ଶ୍ଳୋକ (୪୯ ରୁ ୫୫)ର ସାରାଂଶକୁ ଏଠାରେ ଦିଆଯାଉଛି ।

ଶ୍ରୀକୃଷ୍ଣ କହୁଛନ୍ତି—ହେ କୌନ୍ତେୟ ! ଅସକ୍ତ ବୁଦ୍ଧି (ଆସକ୍ତି ରହିତ ବୁଦ୍ଧି ସମ୍ପନ୍ନ) ବିଗତ ସ୍ପୃହ (ନିସ୍ପୃହ), ଜିତାତ୍ମା ବ୍ୟକ୍ତି ସନ୍ୟାସ (ସାଂଖ୍ୟଯୋଗରେ ଭକ୍ତି ଜ୍ଞାନ) ଦ୍ୱାରା ନୈଷ୍କର୍ମ୍ୟ ସିଦ୍ଧିକୁ ପ୍ରାପ୍ତ ହୋଇଥାଏ । ସିଦ୍ଧିକୁ ପ୍ରାପ୍ତ ହୋଇଥିବା ପୁରୁଷ ଯେଉଁପରି ବ୍ରହ୍ମଙ୍କୁ ପ୍ରାପ୍ତ ହୁଏ ଏବଂ ଯେଉଁ ତତ୍ତ୍ୱଜ୍ଞାନକୁ ଉତ୍କୃଷ୍ଟ ନିଷ୍ଠା କୁହାଯାଇଥାଏ, ତାହା ମୋଠାରୁ ସଂକ୍ଷେପରେ ଶ୍ରବଣ କର ।

ବିଶୁଦ୍ଧ ବୁଦ୍ଧିରେ ଯୁକ୍ତ, ନିର୍ଜନବାସୀ ମିତାହାରୀ, କାୟବାକ୍ ଓ ମନର ସଂଯମୀ ପୁରୁଷ ବୈରାଗ୍ୟ ଆଶ୍ରୟ ପୂର୍ବକ ନିରନ୍ତର ଧ୍ୟାନ ଯୋଗଦ୍ୱାରା ଆତ୍ମାକୁ ( ଅନ୍ତଃକରଣକୁ ) ବଶକୁ ଆଣିଥାଏ ଏବଂ ବିଷୟକୁ ତ୍ୟାଗକରି ରାଗ ଦ୍ୱେଷ ଆଦିକୁ ନଷ୍ଟ କରିଥାଏ । ସେ ଅହଙ୍କାର, ବଳ, ଦର୍ପ, କାମ, କ୍ରୋଧ ଓ ପରିଗ୍ରହ (ସଂଗ୍ରହ)କୁ ତ୍ୟାଗକରି ଶାନ୍ତ ହୋଇଥାଏ ଏବଂ ବ୍ରହ୍ମ ସହିତ ଏକୀଭୂତ ହୋଇଥାଏ ।

ସେହି ବ୍ରହ୍ମଭୂତ (ବ୍ରହ୍ମ ସହିତ ଏକୀଭୂତ) ପ୍ରସନ୍ନାତ୍ମା ବ୍ୟକ୍ତିର କୌଣସି କାମନା ନଥାଏ କିମ୍ବା ଦୁଃଖ ନଥାଏ । ସେ ସର୍ବଭୂତରେ (ସମସ୍ତ ପ୍ରାଣୀଙ୍କଠାରେ) ସମଦର୍ଶୀ ହେବା ଫଳରେ ତାହାର ମୋ ପ୍ରତି ପରାଭକ୍ତି ଜାତ ହୋଇଥାଏ । ଉକ୍ତ ପରାଭକ୍ତି ଯୋଗେ ସେ ମୋତେ ତତ୍ତ୍ୱପୂର୍ବକ ଉତ୍ତମ ଭାବେ ଜାଣେ । ତତ୍ତ୍ୱ ଦ୍ୱାରା ମୋତେ ଜାଣି ତତ୍ପରେ ସେ ମୋଠାରେ ପ୍ରବେଶ କରିଥାଏ ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ନିର୍ମଳ ହରିଭକ୍ତି ଜାତ ପାଇଁ ପ୍ରଥମେ ମନର ସଂଯମ ଓ ଏକାଗ୍ରତା ଏବଂ ଏଥିପାଇଁ ଯୋଗସାଧନା ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ଶ୍ରୀମଦ୍ଭାଗବତର ବାଣୀ ସେମାନଙ୍କର ଅନୁସରଣୀୟ ହୋଇଛି । ଶ୍ରୀମଦ୍ଭାଗବତରେ ତୃତୀୟ ସ୍କନ୍ଦରେ କପିଳମୁନି ମାତା ଦେବହୂତିଙ୍କ ନିକଟରେ ଏହି ମନ ସଂଯମ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ତୃତୀୟ ସ୍କନ୍ଦର ପଞ୍ଚବିଂଶ ଅଧ୍ୟାୟରେ ସେ କହିଛନ୍ତି—ଏହି ଜୀବର ବନ୍ଧନ ଏବଂ ମୋକ୍ଷର କାରଣ ଏକମାତ୍ର

ମନ ଅଟେ । ବିଷୟାସକ୍ତ ହେଲେ ସେ ବନ୍ଧନର ହେତୁ ଏବଂ ପରମାତ୍ମାଙ୍କଠାରେ ଅନୁରକ୍ତ ହେଲେ ସେ ମୋକ୍ଷର କାରଣ ହୋଇଥାଏ । (୩/୧୫) ମନକୁ କିପରି ସବୀଜ ଯୋଗ ସାଧନା ଦ୍ୱାରା ଶ୍ରୀହରିଙ୍କଠାରେ ନିବଦ୍ଧ କରାଯାଇଥାଏ, ତାହାର ବିଶଦ ବର୍ଣ୍ଣନା କପିଳମୁନି ତୃତୀୟ ସ୍କନ୍ଧର ଅଷ୍ଟବିଂଶ ଅଧ୍ୟାୟରେ ପ୍ରଦାନ କରିଛନ୍ତି । ଏଥିପାଇଁ ଯୋଗୀ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା ଆଦି କଲାପରେ ଚିତ୍ତ ଯେତେବେଳେ ନିର୍ମଳ ଏବଂ ଏକାଗ୍ର ହେବ, ସେତେବେଳେ ସେ ନାସିକାଗ୍ରରେ ଦୃଷ୍ଟି ରଖି ଶ୍ରୀହରିଙ୍କୁ ଧ୍ୟାନ କରିବ । ଶ୍ରୀହରିଙ୍କ ଧ୍ୟାନ କଲାବେଳେ ସେ ତାଙ୍କ ବିଗ୍ରହର ବିଭିନ୍ନ ଅଙ୍ଗକୁ ମାନସଧ୍ୟାନକୁ ଆଣିବ । ଏହିଭଳି ଅଭ୍ୟାସ କରୁକରୁ ଧ୍ୟାନରେ ତନ୍ମୟତା ଆସିଗଲେ, ସେ ପରମାତ୍ମାଙ୍କୁ ହିଁ ସର୍ବତ୍ର ଦେଖିଥାଏ । ତାହାର ଚିତ୍ତ ଲୟାବସ୍ଥା ପ୍ରାପ୍ତ ହେବା ଫଳରେ ସେ ସୁଖ ଦୁଃଖାଦି ଦ୍ୱନ୍ଦ୍ୱଶୂନ୍ୟ ହୋଇ ବ୍ରହ୍ମରୂପ ମହିମାରେ ଅବସ୍ଥାନ କରି ପରମାତ୍ମା ତତ୍ତ୍ୱକୁ ଉପଲବ୍ଧି କରିଥାଏ । ଏହି ଅବସ୍ଥାରେ ତା'ର ନିଜ ଶରୀର ସମ୍ବନ୍ଧୀୟ ଜ୍ଞାନ କିଛି ରହେ ନାହିଁ । କାରଣ ସେ ନିଜର ପରମାନନ୍ଦମୟ ସ୍ୱରୂପରେ ନିମଗ୍ନ ଥାଏ । (୨।୧୧-୩୭) ଶ୍ରୀମଦ୍ ଭଗବଦ୍ ଗୀତାରେ ମଧ୍ୟ ଜ୍ଞାନୀର ଜ୍ଞାନଯୁକ୍ତ ଏହି ଭକ୍ତିକୁ ପ୍ରାଧାନ୍ୟ ଦିଆଯାଇଛି—

"ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ ଏକ ଭକ୍ତିର୍ବିଶିଷ୍ୟତେ
ପ୍ରିୟୋହି ଜ୍ଞାନିନୋଽତ୍ୟର୍ଥମହଂ ସ ଚ ମମପ୍ରିୟଃ ।" (୮।୧୭)

—"ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢ଼ ନିଶ୍ଚୟଃ
ମର୍ଯ୍ୟର୍ପିତ ମନୋବୁଦ୍ଧିର୍ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ" । (୧୨।୧୪)

ନାରଦ ଭକ୍ତି ସୂତ୍ରରେ ମଧ୍ୟ ଜ୍ଞାନଯୋଗ ଓ ଭକ୍ତିଯୋଗକୁ ପରସ୍ପର ନିର୍ଭରଶୀଳ ଏବଂ ଜ୍ଞାନକୁ ଭକ୍ତି ପ୍ରାପ୍ତିର ଉପାୟ ରୂପେ କୁହାଯାଇଛି । ଯଥା—

"ତସ୍ୟାଃ ଜ୍ଞାନମେବ ସାଧନମିତ୍ୟେକେ" । ୨୮ ।

"ଅନ୍ୟୋନ୍ୟାଶ୍ରୟତ୍ୱମିତ୍ୟନ୍ୟେ" । ୨୯ ।

କର୍ମ, ଜ୍ଞାନ, ଭକ୍ତି—ଏମାନେ କେହି ପରସ୍ପର ବିରୋଧୀ ନୁହନ୍ତି । ବରଂ ପରସ୍ପରର ପରିପୂରକ ଏବଂ ସାଧକ ପାଇଁ ଏସବୁର ପ୍ରୟୋଜନୀୟତା ମଧ୍ୟ ରହିଛି । ଶ୍ରୀମଦ୍ ଭଗବଦ୍ ଗୀତାରେ ଶ୍ରୀକୃଷ୍ଣ ତାହା ହିଁ କହିଛନ୍ତି । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ସେଥିପାଇଁ ଜ୍ଞାନ ଓ ଭକ୍ତି ଉଭୟକୁ ସାଧନାର ଅବଲମ୍ବନ ତଥା ପରସ୍ପର ସାପେକ୍ଷ ରୂପେ ଘୋଷଣା କରାଯାଇଛି । ଅଦ୍ୱୈତବାଦୀ

ଶ୍ରୀଧର ସ୍ୱାମୀଙ୍କର ଶ୍ରୀମଦ୍‌ଭାଗବତ ଟୀକାରେ ଏହି ଜ୍ଞାନ ଓ ଭକ୍ତିର ସମନ୍ୱୟ ପନ୍ଥା ପ୍ରତିପାଦିତ ହୋଇଛି । ଶ୍ରୀଧର ସ୍ୱାମୀ ଓଡ଼ିଶାର ବ୍ୟକ୍ତି ଥିବା ହେତୁ ତାଙ୍କର ସଟୀକ ଭାଗବତ ଓଡ଼ିଶାରେ ବିଶେଷ ପ୍ରସାରିତ ହୋଇଥିଲା ଏବଂ ତାହାର ପ୍ରଭାବରୁ ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତ ସାଧକ ମୁକ୍ତ ହୋଇପାରି ନଥିଲେ । ଭକ୍ତି ସହିତ କର୍ମ ଓ ଜ୍ଞାନର କିପରି ସମ୍ପର୍କ ରହିଛି, ତାହା ରାୟ ରାମାନନ୍ଦ ପଟ୍ଟନାୟକଙ୍କର ଭକ୍ତିତତ୍ତ୍ୱ ଅବତାରଣାରୁ ଉପଲବ୍‌ଧ ହୋଇଥାଏ । (ଚୈତନ୍ୟ ଚରିତାମୃତ, ମଧ୍ୟଲୀଳା ଅଷ୍ଟମ ପରିଚ୍ଛେଦ ଦ୍ରଷ୍ଟବ୍ୟ) ସେ ଶ୍ରୀ ଚୈତନ୍ୟଙ୍କୁ ଭକ୍ତିର ଛଅଟି ସ୍ତରଥିବା କଥା କହିଛନ୍ତି । ପ୍ରଥମ ସ୍ତରର ଭକ୍ତି ହେଉଛି ସ୍ୱଧର୍ମାଚରଣ ବା ବର୍ଣ୍ଣାଶ୍ରମ ବିହିତ କର୍ମାନୁଷ୍ଠାନ ଏବଂ ଦ୍ୱିତୀୟ ସ୍ତରର ଭକ୍ତି ହେଉଛି ନିଷ୍କାମ କର୍ମ ସାଧନ ପୂର୍ବକ ଭଗ-ବାନ୍‌ଙ୍କଠାରେ ସମସ୍ତ କର୍ମ ସମର୍ପଣ । ଭକ୍ତିର ତୃତୀୟ ସ୍ତର ହେଉଛି ସମସ୍ତ ଧର୍ମ ପରିତ୍ୟାଗ ପୂର୍ବକ ଈଶ୍ୱରଙ୍କର ଶରଣାଗତ ହେବା । ଭକ୍ତିର ଚତୁର୍ଥ ସ୍ତରରେ ଜ୍ଞାନମିଶ୍ରା ଭକ୍ତି ଓ ପଞ୍ଚମ ସ୍ତରରେ ଜ୍ଞାନଶୂନ୍ୟା ଭକ୍ତିର ଉଦୟ ହୁଏ । ଷଷ୍ଠ ସ୍ତରର ଭକ୍ତି ହେଉଛି ପ୍ରେମ ଭକ୍ତି । ଭକ୍ତିର ଶ୍ରେଣୀ ବିଭାଗରେ ଥିବା ଏହି କ୍ରମିକତା ହିଁ ସ୍ପଷ୍ଟ ସୂଚାଇ ଦିଏ ଜ୍ଞାନର ପରିପକ୍ୱ ଅବସ୍ଥାରୁ ଜ୍ଞାନଶୂନ୍ୟା ଭକ୍ତି ବା ଲୟାବସ୍ଥା ଏବଂ ଜ୍ଞାନଶୂନ୍ୟାବସ୍ଥା ବା ଲୟାବସ୍ଥାରୁ ପ୍ରେମଭକ୍ତି ବା ଆନନ୍ଦାତିଶଯ୍ୟ ବିହ୍ୱଳତା ଜାତ ହୋଇଥାଏ । ଶ୍ରୀଚୈତନ୍ୟପନ୍ଥୀ ବୈଷ୍ଣବଧର୍ମରେ ଯେଉଁ ଶୃଙ୍ଗାରମୂର୍ତ୍ତିକା ପ୍ରେମକଥା କୁହାଯାଇଛି, ଜ୍ଞାନମିଶ୍ରା ଭକ୍ତି ଧର୍ମରେ ତାହା ହେଉଛି ଯୋଗର ଲୟାବସ୍ଥା ବା ବ୍ରହ୍ମାସ୍ୱାଦନ ଅବସ୍ଥା । ରାଧାଙ୍କର କୃଷ୍ଣପ୍ରେମ ଏଠାରେ ଆତ୍ମାର ପରମାତ୍ମା ପ୍ରେମ ରୂପେ କଳ୍ପିତ । ବଳରାମ ଦାସ 'ବେଦାନ୍ତସାର ଗୁପ୍ତଗୀତା'ରେ ଏହାକୁ ସ୍ପଷ୍ଟ କରି ଲେଖିଛନ୍ତି—

"ଆତ୍ମାକୁ ପ୍ରତିଷ୍ଠା କରି । ଶ୍ରୀରାଧା ଅଙ୍ଗରେ ବିହରି ।
କୃଷ୍ଣେ ଆସ୍ୱାଦରସ ଦେଇ । ଏହାକୁ ପ୍ରେମ ଭକ୍ତି କହି ॥
ତେବେ ପାଇବୁ ଭାବଗ୍ରାହୀ । ନୋହିଲେ ପରି ନପାରଇ । (ଷଷ୍ଠ ଅଧ୍ୟାୟ)

ଦଶମ ଅଧ୍ୟାୟରେ ଏ କଥାକୁ ଆହୁରି ସ୍ପଷ୍ଟ କରି ସେ ଲେଖିଛନ୍ତି—

"ସ୍ନେହକାନ୍ତେ ବଳାଅ ରୁ ମନ । ଯେମନ୍ତେ ଜଳ ଯେ ଅଭିନ୍ନ ।
ଜଳରେ ଜଳ ମିଶାଇଲେ । ବାରି ନୋହିଲ ଦୁଇ ମେଳେ ।
ତେମନ୍ତ ପ୍ରାୟେ କୃଷ୍ଣ ଦେହେ । ଅଙ୍ଗକୁ ଅଙ୍ଗ କରି ସ୍ନେହେ ।
ତେବେ ପାଇବୁ ଗୋପୀ ଭକ୍ତି । ଶ୍ରୀକୃଷ୍ଣ ଦେହେ ହେବୁ ସ୍ଥିତି ।"

ଯଶୋବନ୍ତ ଦାସ 'ପ୍ରେମ ଭକ୍ତି ବ୍ରହ୍ମଗୀତା'ରେ ମଧ୍ୟ ଶ୍ରୀକୃଷ୍ଣଙ୍କ ମୁଖରେ କୁହାଇଛନ୍ତି—

"ତୁ ରାଧା ଜୀବ ମୋର ଦେଖି
ମୁଁ ତୋର ପରମ ଅଟଇ
ସକଳ ଜୀବେ ଏହି ଭାବ
କହିଲୁ ପ୍ରେମ ଭକ୍ତି ଢବ ।" (ଦ୍ୱିତୀୟ ଅଧ୍ୟାୟ)

ତୃତୀୟ ଅଧ୍ୟାୟରେ ସେ କହନ୍ତି—

"ପ୍ରେମ ଭଗତି ଯେ କରଇ
ସେ ପ୍ରାଣୀ ନିତ୍ୟରେ ବସଇ
ଅନ୍ତେ ପଶଇ ରାସ ଗତେ
ଶୁଣ ରାଧିକା ସ୍ନେହ ଚିତ୍ତେ ।" । ୧୦୭ ।

ଜ୍ଞାନମିଶ୍ରା ଭକ୍ତି ପରମ୍ପରାରେ ରାଧା ହେଉଛନ୍ତି ଜୀବାତ୍ମା ଓ କୃଷ୍ଣ ପରମାତ୍ମା । ପରମାତ୍ମା ସହିତ ଜୀବାତ୍ମାର ମିଳନ ହେବାର ବ୍ୟାକୁଳତା ହେଉଛି ପ୍ରେମ । ଏହାର ଚରମ ପରିଣତି ହୁଏ ମିଳନରେ । ଚୈତନ୍ୟପନ୍ଥୀ ବୈଷ୍ଣବ ପରମ୍ପରାରେ ଯେଉଁଠି ରାଧାକୃଷ୍ଣ ପ୍ରେମ ମିଳନକୁ ଦୈହିକ ସମ୍ଭୋଗର ରୂପ ଦିଆଯାଇଛି, ଜ୍ଞାନମିଶ୍ରା ଭକ୍ତି ପରମ୍ପରାରେ ତାହାକୁ ଯୋଗର ଲୟାବସ୍ଥାରେ ଆତ୍ମା ପରମାତ୍ମାର ଏକୀଭୂତ ଭାବ ଓ ପ୍ରେମ ଭକ୍ତିର ଚରମାବସ୍ଥା କୁହାଯାଇଛି । ଜୟଦେବକୃତ 'ଗୀତଗୋବିନ୍ଦ'ର ଆଧ୍ୟାତ୍ମିକ ଅର୍ଥ ବ୍ୟାଖ୍ୟାକାର ନାପିତ ବିଲୋଚନ 'ଗୋବିନ୍ଦଗୀତା'ରେ ଠିକ୍ ଏହି କଥା କହନ୍ତି—

"ଶୁଣ ସୁଜନେ ହୋଇ ସାବଧାନ । ରତି ସୁଖ ଯେ ଲୟେ ଯୋଗଧ୍ୟାନ ।
ଅଳସ ଯେ ଭକତି ଭାବେ ବୁଡ଼ିବ । ବୁଡ଼ି ଭକ୍ତିରେ ନିପ୍ରାଣ ହୋଇବ ।
ନିଃସନ୍ଧି ଯେ ହୋଇ ରାଧା ଶରୀର । ପ୍ରାଣ ନିମଜ୍ଜି ହୋଇଥିବ ସ୍ଥିର ।
ପଡ଼ିଥିବ ଶୋଇଲା ପ୍ରାୟେ ହୋଇ । ଚିତ୍ତେ ଚିନ୍ତୁ ନିପ୍ରାଣ ଭାବ ବହି ।
( ଷଷ୍ଠଗାଥା )

ଏଥିରେ ଶୃଙ୍ଗାର କ୍ରୀଡ଼ା ଗର୍ଭିତ ପ୍ରେମ କଳ୍ପନା ନାହିଁ । ଚୈତନ୍ୟ ପନ୍ଥୀ ବୈଷ୍ଣବଧର୍ମରେ ଯାହାକୁ ଶ୍ରୀରାଧାଙ୍କର ମହାଭାବ ବା ପ୍ରେମ ଭକ୍ତିର ଚରମ ପର୍ଯ୍ୟାୟ କୁହାଯାଇଛି, ଏବଂ ଯାହାଦ୍ୱାରା ଶ୍ରୀକୃଷ୍ଣ ଆକର୍ଷିତ ହୁଅନ୍ତି, ଜ୍ଞାନମିଶ୍ରା ଭକ୍ତି-

ଧର୍ମରେ ତାହାକୁ ମନର ଅମନ ଅବସ୍ଥା ବା ତୁରୀୟାତୀତ ଅବସ୍ଥା (ବ୍ରହ୍ମରେ ସମ୍ପୂର୍ଣ୍ଣ ଲୟାବସ୍ଥା କୁହାଯାଇଥାଏ) ଏବଂ ଗୁଣାତୀତ ନିର୍ଗୁଣାବସ୍ଥା କୁହାଯାଇଥାଏ । ନାପିତ ବିଲ୍ଲୋଚନ 'ଗୋବନ୍ଦ ଗୀତାରେ'ରେ ଏହା ସ୍ପଷ୍ଟ କରି ଦେଇଛନ୍ତି—

ଯେହୁ ମନ ଯେବେ ହୋଏ ଅମନ
ତେବେ ଭେଟଇ ଶ୍ରୀକୃଷ୍ଣ ଚରଣ
ରାଧିକାର ପ୍ରକୃତ ବସ୍ତୁ ଜାଣ
ବସ୍ତୁ ଫେଡ଼ିଲେ ଲଭି ସେ ଚରଣ ।" (ଷଷ୍ଠ ଗାଥା)

ଏଠାରେ ପ୍ରକୃତ ଅର୍ଥ ପ୍ରକୃତିର ତ୍ରିଗୁଣକୁ ବୁଝିବାକୁ ହେବ)

ଦ୍ୱାରକା ଦାସ ମଧ୍ୟ 'ପ୍ରେମରସ ଚନ୍ଦ୍ରିକା'ରେ ଯୋଗର ଲୟାବସ୍ଥାରୁ ପ୍ରେମ ଭକ୍ତି ଜାତହୁଏ ବୋଲି ଲେଖିଛନ୍ତି—

"ଲୟଗତରେ କୁମ୍ଭ ସିଦ୍ଧ । ଜପ ବିଲ୍ଲୋଚନ ଭେଟ ହେବ ।
ସେବା ଭକ୍ତିରେ ମନ ଥୋଇ । କୃଷ୍ଣଙ୍କୁ ଭକ୍ତି ସେ ଲଗାଇ
ଭାବ ଭୁଜରେ ଆଲିଙ୍ଗନ । କରିବ ପ୍ରଭୁଙ୍କୁ ବନ୍ଦନ
ରତି ପୀରତି ଶୃଙ୍ଗାର ଚହିଁ । ରାଧାଙ୍କ ଅଙ୍ଗେ ଆତ୍ମା ଥୋଇ
କୃଷ୍ଣଙ୍କୁ ଆସ୍ୱାଦନ କରି । ହୋଇବୁ ତାହାଙ୍କର ନାରୀ ।"

'ଛତିଶ ଗୁପ୍ତଗୀତା'ରେ ବ୍ରାହ୍ମୀସ୍ଥିତ ଅବସ୍ଥା ବା ବ୍ରହ୍ମ ସାକ୍ଷାତ୍କାର ହେତୁକ ବ୍ରହ୍ମ ନିରୂପଣରେ ତନ୍ମୟାବସ୍ଥାକୁ ନିଷ୍ଠଳା ଭକ୍ତି କୁହାଯାଇ ଏହାର ଲକ୍ଷଣ ମଧ୍ୟ ବର୍ଣ୍ଣନା କରାଯାଇଛି—

"ଏକାକାର ଭାବ ଯେଜନରୁ ଯେବେ
ଇନ୍ଦ୍ରିୟ ଭୋଗ ନକରିବୁ ତେବେ ।
ତେବେ ସେ ବିଶୁଦ୍ଧ ହୋଇବ ମତି
ପ୍ରାପତ ହୋଇବୁ ନିଷ୍ଠଳ ଭକ୍ତି ।

× × × ×

କର ପାଦ କଟି ଚଳିବ ନାହିଁ
ଇନ୍ଦ୍ରି ଜିହ୍ୱା ମୁଖ ନିବୃତ୍ତି ଥାଇ ।

ନଚଳ ପିଙ୍ଗଳା ସ୍ଥିର ଯେ ଶିର
ନୟନ ଯେ ସ୍ଥିର ହୋଇବ ତୋର ।
ନାସା ଅଗ୍ରେ ହଂସ ଦେଖିବୁ ଯେବେ
ବିଶ୍ୱ ସଂସାର ଲୁଚିଛି ସେ ଠାବେ ।
ତେବେ ସେ ନିଶ୍ଚଳ ଭକତି ପାଇ
ଅର୍ଜୁନ ଆଗେ କହନ୍ତି ଗୋସାଇଁ ।" (୧୯।୪୩)

ଏହି ଭକ୍ତିମାର୍ଗ ହେଉଛି ଶ୍ରେଷ୍ଠ ଭକ୍ତିମାର୍ଗ । ସେଥିପାଇଁ ସେ ଲେଖିଛନ୍ତି—

ଆପଣା ସାଧ୍ୟ ଜ୍ଞାନ ଏହି ବାଟ । ଏହି ବାଟ-କୃତି ମୁହିଁ ନିକଟ ।
ଏ ବାଟେ ଅଳ୍ପକେ ମୋତେ ଯେ ପାଇ । ଆନ ଭକତିରେ ଶତେ ଜନ୍ମ ଯାଇ ॥

(୧୯ । ୩୦-୩୧)

ଜ୍ଞାନର ବିକାଶ ବ୍ୟତିରେକେ ଭକ୍ତିର ବିକାଶ ଅସମ୍ଭବ । ଜ୍ଞାନ କହିଲେ ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନକୁ ହିଁ ପ୍ରାଧାନ୍ୟ ଦିଆଯାଇଥାଏ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଏହି ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନର ମହତ୍ତ୍ୱକୁ ଶତମୁଖରେ ଘୋଷଣା କରାଯାଇଛି । ଏଠାରେ ଦୃଷ୍ଟାନ୍ତ ସ୍ୱରୂପ ଅଳ୍ପ କେତେ ଗୋଟିର ଉଦ୍ଧୃତି ପ୍ରଦାନ କରାଯାଉଅଛି । କବି ଚୈତନ୍ୟ ଦାସ ତାଙ୍କର "ନିର୍ଗୁଣ ମାହାତ୍ମ୍ୟ"ରେ ଲେଖିଛନ୍ତି—

"ମୋତେ ତୁ ଚିହ୍ନି କଲେ ଠାବ । ସେଠାରୁ ଜନ୍ମମୃତ୍ୟୁ ଯିବ ।
ଏକାଳେ ଭୂତ ମଧ୍ୟେ ଥିବୁ । ମୋତେ ତୁ ନୟନେ ଦେଖିବୁ ।
ଦେଖିଲେ ମୋ ସ୍ୱରୂପ ତୁହି । ଅନ୍ତେ ମୋ ଅଙ୍ଗେ ଥିବୁ ରହି ।"

(ସପ୍ତମ ଅଧ୍ୟାୟ)

ପୁନଶ୍ଚ ସେ ଅନ୍ୟତ୍ର କହିଛନ୍ତି—

"ସେହି ପ୍ରକାରେ ଜ୍ଞାନୀନର । ନିର୍ଗୁଣ ବନ୍ଧୁ ହୁଏ ପାର
ବ୍ରହ୍ମସ୍ୱରୂପ ଯେ ଚିହ୍ନଇ । ତାହାକୁ ବ୍ରହ୍ମଜ୍ଞାନୀ କହି ।" (ଷଷ୍ଠ ଅଧ୍ୟାୟ)

'ମଣ୍ଡଳ ଗୀତା'ରେ କବି ଅରକ୍ଷିତ ଦାସ ବ୍ରହ୍ମଜ୍ଞାନର ମହିମା ବର୍ଣ୍ଣନା କରି ଲେଖିଛନ୍ତି—

ଅଦେଖା ଦେଖିବ, ଅତୋଳା ତୋଳିବ, ଅମପା ମାପିବ, ଅସାଧ୍ୟ ସାଧିବ, ଅଭକ୍ଷ୍ୟ ଭକ୍ଷିବ, ଅଜପା ଜପିବ, ଅକର୍ମ କରିବ, ଶୁଣ ହୋ ମନ ଏତେ କର୍ମ ଯେ କରିପାରଇ, ସେହିଟି ବ୍ରହ୍ମଙ୍କୁ ଚହ୍ନାଇ ।

× × ×

ଜଗତ ଯାକ ବ୍ରହ୍ମ ମଣଇ, ଏକାନ୍ତେ ଭ୍ରମୁଥାଇ, ଏକା ବ୍ରହ୍ମାଙ୍କୁ ଖୋଜଇ, କାହାରି ସଙ୍ଗତେ ନରହଇ, ବ୍ରହ୍ମଙ୍କୁ ସଙ୍ଗ କରିଥାଇ, କୌଣସି କଥାକୁ ଭୟ ନ କରଇ, ବ୍ରହ୍ମ ବ୍ୟତିରେକେ କିଛି ନ ଜାଣଇ, କାହାକୁ ମନେ ନ ଜାଣେ, କେବଳ ବ୍ରହ୍ମଙ୍କୁ ଜାଣେ" । ( ୭୭ ଅଧ୍ୟାୟ

ଅଚ୍ୟୁତାନନ୍ଦ 'ଶୂନ୍ୟ ସଂହିତା'ରେ ଲେଖିଛନ୍ତି—

"ନାମ ତତ୍ତ୍ୱ ଚହ୍ନି ଆତ୍ମତତ୍ତ୍ୱଜ୍ଞାନୀ ନାମ ବ୍ରହ୍ମେଷା'ର ଆଶ
ବ୍ରହ୍ମଦର୍ଶୀ ସେହି ଅବଶ୍ୟ ଅଟଇ ପ୍ରଭୁଙ୍କର ସେହି ଦାସ ।
ନାମ ଅନାମ ଅନାହତ ଧ୍ୱନିକୁ ଧାରଣ କରଇ ଲକ୍ଷ୍ୟେ
ସ୍ୱୟଂ ବ୍ରହ୍ମତାକୁ ସୁଦୃଢ଼ କରନ୍ତି, ନାହିଁ ତାକୁ କାଳ ଭୟେ ।"

(ଷୋଡ଼ଶ ଅଧ୍ୟାୟ)

'ଛତିଶ ଗୁପ୍ତଗୀତା'ରେ ବ୍ରହ୍ମଜ୍ଞାନ ବା ବ୍ରହ୍ମବିଦ୍ୟାର ସର୍ବୋତ୍କୃଷ୍ଟତାକୁ ବର୍ଣ୍ଣନା କରି ଲେଖାଯାଇଛି—

"ସର୍ବଜ୍ଞାନଙ୍କର ଉପରେ ଏସାର ବ୍ରହ୍ମଜ୍ଞାନ ବୋଲି ଯେହୁ
ବିଦ୍ୟାମାନଙ୍କର ଉପରେ ଏ ସାର ବ୍ରହ୍ମବିଦ୍ୟା ଅଟେ ସେହୁ ।
ରସ ମାନଙ୍କର ମଧ୍ୟରେ ଏସାର ଅଟଇ ଯେ ବ୍ରହ୍ମରସ
ବୁଦ୍ଧିରେ ବୁଦ୍ଧିମେ ସୁବୁଦ୍ଧି ଅଟଇ ବ୍ରହ୍ମବିଦ୍ୟା ଉପଦେଶ ।"

(ତ୍ରୟୋଦଶ ଅଧ୍ୟାୟ)

ପୁନଶ୍ଚ ଏଥିରେ ଉଲ୍ଲେଖ ଅଛି—

"ଆତ୍ମାକୁ ଚହ୍ନିଲେ ଲୋକେ ପରତେ ବୋଲଇ
ବ୍ରହ୍ମକୁ ଚହ୍ନିଲେ ବ୍ରହ୍ମଦରଶୀଟି ସେହି ।"

( ଅଷ୍ଟମ ଅଧ୍ୟାୟ )

ଚନ୍ଦ୍ରମଣି ଦାସ 'ସୁଧାସାର ଗୀତା'ରେ ମଧ୍ୟ ଏ ସମ୍ପର୍କରେ ଲେଖିଛନ୍ତି—

"ଲୌହ ପାଷାଣ ଭିତରେ ବ୍ରହ୍ମଥାଇ କେହି ନ ଦେଖନ୍ତି ତାହା
ସେ ବ୍ରହ୍ମ ଜ୍ୟୋତିକି ଜ୍ଞାନନେତ୍ରେ ଦେଖି ଶୁଦ୍ଧ ହେବୁ ତୋହ ସାହା

× × ×

ସେ ଜ୍ୟୋତି ଭିତରୁ ଜାତ ହୁଁ ବ୍ରହ୍ମଯାଏ ସମାନ ଦେଖିବୁ ମନେ
ସେ ଜ୍ୟୋତିଟି ସେହି, ସେହି ରୂହିଁ ମୁହିଁ ଅଭ୍ୟନ୍ତର ନାହିଁ ଏଣେ ।
ସେ ଜ୍ୟୋତି ଦେଖିବୁ ଅଲେଖ ଭୁବନେ ଜ୍ଞାନନେତ୍ର ପରକାଶି
ସଦଗୁରୁ ଆଜ୍ଞା ନିର୍ଣ୍ଣୟ ବଚନ ନାହିଁ ତହିଁ ଦବା ନାଶି ।

× × ×

ଅଭ୍ୟାସ ବଳରେ ଅନ୍ତର୍ଗତେ ମନ ରୁନ୍ଧିଥିଲେ ଦୃଢ଼ ଚତ୍ତେ
ସେ ଜ୍ୟୋତି ରୂପକୁ ପ୍ରକାଶ କରଣ ଜ୍ଞାନନେତ୍ରେ ଦେଖି ନିତେ" ।

(ସପ୍ତଦଶ ବୋଲି)

ସାଧକଠାରେ ବ୍ରହ୍ମଜ୍ଞାନ ବା ଆତ୍ମଜ୍ଞାନର ପ୍ରକାଶ ହେଲେ ମହାଭାବ କୈନ୍ଦ୍ରିକ ଭକ୍ତିର ସ୍ୱତଃ ପ୍ରକାଶ ଘଟିଥାଏ । 'ଛତିଶଗୁପ୍ତ ଗୀତା'ର ନିମ୍ନୋକ୍ତ ଉକ୍ତିରୁ ଏକଥା ଲକ୍ଷ୍ୟ କରାଯାଇପାରେ । ଯଥା—

ବ୍ରହ୍ମ ଆଶ୍ରେ କରଥାଇଁ    ଜଗତ ବ୍ରହ୍ମ ଦେଖଇ
ସ୍ନାନ ପାନ ଶୟନରେ ସ୍ମରଣ କରେ
ବ୍ରହ୍ମ ଭାଷା ଯେବେ ସ୍ମରେ    ହରଷେ ଅବା ଉଚ୍ଚରେ
ସବୁଠାରେ ବ୍ରହ୍ମ ଭାଷା ମୁଖେ ଉଚାରେ ।

× × ×

ଗଡାଗଡ଼ି ପାଦେ ପଡ଼ି    ହୃଦେ ବେନି କର ଯୋଡ଼ି
ଫୁଟିଲା କଦମ୍ବ ପ୍ରାୟେ ହୃଦରେ ଧରେ
ନୟନୁ ଲୋତକ ଧାର    ନିରନ୍ତରେ ବହେ ଝର
ସବୁରି ଚରଣରେଣୁ ଧରଇ ଶିରେ ।
ଏମନ୍ତ ବ୍ରତଟି ଯେହୁ    ବ୍ରହ୍ମଜ୍ଞାନେ ଭରେ ସେହୁ
ତାହାକୁ ବିଷୟ ଥିଲେ ଲାଗଇ ନାହିଁ

ଏହିଟି ଅଟଇ ସତ   ତାହାକୁ ବୋଲି ମହତ୍ତ୍ୱ
ଯୋଗୀ ସିଦ୍ଧ ଯେ ଅଟଇ ସେହି ।"
(ଏକବିଂଶ ଅଧ୍ୟାୟ)

ଜ୍ଞାନ ଓ ଭକ୍ତି ପରସ୍ପର ସମ୍ବନ୍ଧଶୀଳ । ଗୋଟିକର ଅଭାବରେ ଅନ୍ୟଟିର ସ୍ଥିତି ଅସମ୍ଭବ । 'ଗୁରୁଭକ୍ତି ଗୀତା'ରେ ଏହାକୁ ସୁନ୍ଦର ଭାବେ ବୁଝାଇ ଦିଆଯାଇଛି—

"ଜ୍ଞାନ ଭେଦିଲେ ଭକ୍ତି ପାଇ ।   ଭକ୍ତି ଭେଦିଲେ ଜ୍ଞାନ ପାଇ
ପକ୍ଷୀ ଯେମନେ ଦୁଇମତ ।   ଦୁଇ ଡେଣାରେ ଉଡ଼େ ସତ
ଜ୍ଞାନ ଭଗତି ଏକ ଡେଣା ।   ନିର୍ଗୁଣ ଭକ୍ତି ଏକ ଜଣା ।"
(ତୃତୀୟ ଖଣ୍ଡ, ପୃ ୧୩୮)

ଚନ୍ଦ୍ରମଣି ଦାସଙ୍କ 'ସୁଧାସାର ଗୀତା'ରେ ମଧ୍ୟ ଉଲ୍ଲେଖ ଅଛି—

"ଭକତି ଉଦୟ ହୋଇଲେ ଭକତ ଜାଣିବ ଜ୍ଞାନ ନିର୍ଣ୍ଣୟ
ଜ୍ଞାନ ନିର୍ଣ୍ଣୟକୁ ଜାଣିବ ଯେମନ୍ତେ ଅଜ୍ଞାନେ ନୋହିବ ଭ୍ରମ ।
ଅଜ୍ଞାନେ ଯେମନ୍ତେ ଭ୍ରମ ନୋହିବଟି ପାଇବ ବେଦର ମାର୍ଗ
ବେଦର ମର୍ମକୁ ଯେବେ ପାଇବଟି ନୋହିବ ଜନ୍ମ ମରଣ
ଜନ୍ମ ନାହିଁ ଯା'ର ମରଣ ହିଁ ନାହିଁ ସେହି ଅଟେ ନାରାୟଣ"
(ବୋଲି—୧୮)

ବଳରାମ ଆଦି ପଞ୍ଚସଖା ଏବଂ ତାଙ୍କର ଅନୁଗାମୀ ଏହି ଜ୍ଞାନ ମିଶ୍ରିତ ଭକ୍ତିର ଅଧିକାରୀ ଥିଲେ । ଜ୍ଞାନନେତ୍ରରେ ସେ ସର୍ବତ୍ର କାଷ୍ଠ, ପାଷାଣ, ମୂର୍ତ୍ତି, ମନ୍ତ୍ର, ନାମ ମଧ୍ୟରେ ବ୍ରହ୍ମଙ୍କର ସ୍ଥିତିକୁ ଅନୁଭବକରି ଭକ୍ତିବହ୍ୱଳ ହୋଇ ଅସଂଖ୍ୟ ଭକ୍ତି ଗୀତିକା ରଚନା କରିଯାଇଛନ୍ତି—

ଚୈତନ୍ୟ ଦାସ 'ନିର୍ଗୁଣ ମାହାତ୍ମ୍ୟ' ଗ୍ରନ୍ଥରେ ଲେଖିଛନ୍ତି—

"ଶୁଖିଲା କାଠ ଦାରୁବ୍ରହ୍ମ ।   ତହିଁ ବିଜୟେ ପରଂବ୍ରହ୍ମ
ପଥର ଶାଳଗ୍ରାମ ମୂର୍ତ୍ତି ।   ତହିଁ ବିଜୟେ ଶିରୀପତି ।"
( ଚତୁର୍ଥ ଅଧ୍ୟାୟ )

ବଳରାମ ଦାସଙ୍କର 'ଭାବସମୁଦ୍ର' ଅଚ୍ୟୁତାନନ୍ଦଙ୍କର ଅଷ୍ଟଗୁଜ୍ଜରୀ, ମଧ୍ୟରେ ଏହି ଭକ୍ତି ଭାବନା ଅନୁରଣିତ । ବ୍ରହ୍ମଜ୍ଞାନ ମଧ୍ୟ ଦେଇ ଭକ୍ତିର ଚରମସୀମାରେ ଉପନୀତ ହେଲା ପରେ ଭାବପ୍ରଧାନ ଭକ୍ତି ହିଁ ତାଙ୍କର ପ୍ରଧାନ ଅବଲମ୍ବନ ହୋଇ ଉଠିଛି । ଅଚ୍ୟୁତାନନ୍ଦ ସେଥିପାଇଁ ଭକ୍ତି ଛଡ଼ା ଅନ୍ୟ ସମସ୍ତ ସାଧନାର ଅସାରତାକୁ ଶେଷ ଜୀବନରେ ଘୋଷଣା କରିଛନ୍ତି ।

"ଭକ୍ତି ବନୋଦଆ ଠାକୁର ଭକ୍ତବତ୍ସଳ ହରି
ଭକ୍ତଙ୍କ ପାଇଁ କଳେବର ଦଶ ମୂରତି ଧରି ।
ଭକ୍ତି ତୁମ୍ଭର କ କରିବ ଭକ୍ତ ବୋଲରେ ଥାଅ
ଭକ୍ତ ପେଷିଲେ ହସ୍ତିନାକୁ ଦୂତ ପଣରେ ଯାଅ ।
ଭକ୍ତ ଦେଖାଇଲା ସ୍ତମ୍ଭକୁ ସ୍ତମ୍ଭୁ ହେଲ ଉଦିତ
ଭୃତ୍ୟର ଭୃତ୍ୟ ପରଭୃତ୍ୟ ଭଣେ ଦୀନ ଅଚ୍ୟୁତ ।"

(ଅଷ୍ଟଗୁଜ୍ଜରୀ, ୯)

'ନବଗୁଜ୍ଜରୀ'ରେ ସେ ଭକ୍ତି ସୁଲଭ ଦୈନ୍ୟଭାବ ପ୍ରକାଶ କରି ଲେଖିଛନ୍ତି—

"କିସ ଜପତପ କରିବି କିସ କରିବି ଧ୍ୟାନ
କେଉଁ ଯୋଗ ମୁଁ ଯେ ସାଧିବି ମୁଁ ଯେ ଅଜ୍ଞାନୀ ଜନ ।୧।

ଅ'କାର ଉ'କାର ମକାର ପ୍ରଭୁ ନ ଜାଣେ କିଛୁ
ଏକା ତୁମ୍ଭ ନାମ ଗୋଟିକୁ ମୁଁ ଯେ ସତ୍ୟ ମଣୁଛୁ ।୨।

ଏକା ତୁମ୍ଭ ନାମ ଗୋଟାକୁ ତେବେ ସତ୍ୟ ନ ମଣେ
ଏକାକ୍ଷର ତତ୍ତ୍ୱ ନ ପାଇ ବୁଲେ ମୁଁ ମାୟାବଣେ ।୩।

ଅଣାକ୍ଷର ଆଦି ଓଁ ମନ୍ତ୍ର ପ୍ରଭୁ ନ ଜାଣେ କିଛୁ
ଏକା ତୁମ୍ଭ ନାମ ଗୋଟିକୁ ମୁଁ ଯେ ସତ୍ୟ ମଣୁଛୁ ।୪।

ମନ୍ତ୍ର ଯନ୍ତ୍ର ତନ୍ତ୍ର ସାଧନା ନାମ ତତ୍ତ୍ୱରେ ମତି
ନଜାଣି ଜଣାଇଁ କହୁଛୁ ମୁଁ ଯେ ଦୀନ ଅଚ୍ୟୁତି ।"

ଚନ୍ଦ୍ରମଣୀ ଦାସ 'ସୁଧାସାର ଗୀତା'ରେ ଭକ୍ତି ଯୋଗର ପ୍ରଶସ୍ତି କରିଛନ୍ତି ।

"କାଳ ପୁରୁଷର ଶିରରେ ବସିଣ ଗୁହ୍ୟଦ୍ୱାରେ ମାରେ ମେଖ
ଅରୂପ ଦର୍ଶନେ ଅଲେଖ ଭଜନ ଅମନରେ କରେ ଭେଖ ।

ପ୍ରକୃତ ଉପରେ ନିର୍ଭର ଦେହରେ ଭକ୍ତି ଯୋଗେ ଆଶ୍ରାକର
ଭକତ ଯୋଗକୁ ଆଶ୍ରଯ୍ଯ କରନ୍ତେ ସଂସାରୁ ହୁଅଇ ପାର ।

× × ×

ଏ ଭକ୍ତି ଯୋଗରେ ଭଗବାନବଶ ଏ ଭକ୍ତି ଯୋଗେ ତା'ଘର
ଏ ଭକ୍ତି ଯୋଗରେ ସର୍ବଦା ରହିଲେ ଭକ୍ତ ପଣେ ଅଧିକାର,
ଭଗବାନ୍ ତା'ର ଅଧୀନ ହୁଅନ୍ତି ଆଉ ମୁଁ କହିବ କସ
ସ୍ୱର୍ଗେବସୁ ଅବା ପାଦେ ଲୀନ ହେଉ ନାହିଁ ନା ସଂଶୟ ଲେଶ ।
ସ୍ୱର୍ଗେ ବସୁ ଅବା ପାଦେ ଲୀନ ହେଉ ଏଥିରେ ପାଇକ ଲାଭ
ପାରୁଣରେ ଥିବ ଭକତ ଲଭିବ ଦୁର୍ଲ୍ଲଭ ପରେ ଦୁର୍ଲ୍ଲଭ"

( ଚତୁର୍ଦ୍ଦଶ ବୋଲ )

ସର୍ବଶେଷରେ ଏତକ କୁହାଯାଇ ପାରେ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି-ସାହିତ୍ୟରେ ଜ୍ଞାନଯୋଗ ଓ ଭକ୍ତିଯୋଗ ମଧ୍ୟରୁ କାହାରକୁ ନ୍ୟୁନ ଦୃଷ୍ଟିରେ ଦେଖାଯାଇନାହିଁ । ଆଧ୍ୟାତ୍ମିକ ଉନ୍ନୟନ ବା ମୋକ୍ଷ ପାଇଁ ଏ ଉଭୟ ଯୋଗର ସମାନ ଗୁରୁତ୍ୱ ରହିଛି । ଓଡ଼ିଶାର ବୈଷ୍ଣବବୃନ୍ଦ ସେମାନଙ୍କ ସାଧନାରେ ଜ୍ଞାନ ଓ ଭକ୍ତି ଯୋଗର ଅପୂର୍ବ ସମନ୍ୱୟ କରିଛନ୍ତି । ତେଣୁ ସେମାନଙ୍କର ସାଧନାକୁ ଆମେ ଜ୍ଞାନମିଶ୍ରା ଭକ୍ତି ସାଧନା ନାମରେ ଆଖ୍ୟାୟିତ କରିଥାଉ ।

---

৭

# ଯୋଗ ତତ୍ତ୍ୱ

ବ୍ରହ୍ମଜ୍ଞାନ ଏବଂ ଆତ୍ମଜ୍ଞାନଲାଭ ହେଉଛି ଜ୍ଞାନମାର୍ଗର ଚରମ ଲକ୍ଷ୍ୟ ଏବଂ ଏହା କେବଳ ସମ୍ଭବ ଚିତ୍ତନିରୋଧ ଏବଂ ଅନ୍ତର୍ଦୃଷ୍ଟି ଦ୍ୱାରା । ମନ ଏବଂ ଇନ୍ଦ୍ରିୟ ସ୍ୱଭାବତଃ ଚଞ୍ଚଳ । ମନ ଚଞ୍ଚଳ ଥିବା ପର୍ଯ୍ୟନ୍ତ ତାହା ବାହ୍ୟ ଜଗତ ପଛରେ ଇତସ୍ତତଃ ଧାବମାନ ହୋଇଥାଏ । ପ୍ରାଣପବନର ବହିର୍ଗମନ ଯେ ପର୍ଯ୍ୟନ୍ତ ନିରୁଦ୍ଧ ନହୋଇଛି ମନ ସେ ପର୍ଯ୍ୟନ୍ତ ଚଞ୍ଚଳ ରହିବ । ମନ ଚଞ୍ଚଳ ହେଲେ ମନର ଅନୁଗାମୀ ଇନ୍ଦ୍ରିୟମାନେ ମଧ୍ୟ ଚଞ୍ଚଳ ହୋଇ ବିଷୟବାସନା ଭୋଗ-ତତ୍ପର ହେବେ, ତେଣୁ ମନର ବହିର୍ଗମନକୁ ବଳପୂର୍ବକ ଫେରାଇଆଣି ପ୍ରଥମେ ସ୍ଥିର କରି ତତ୍ପରେ ତାହାକୁ ଆତ୍ମଚିନ୍ତନରେ ସଂଯୁକ୍ତ କରାଇଲେ ଆତ୍ମତତ୍ତ୍ୱ ଓ ବ୍ରହ୍ମତତ୍ତ୍ୱର ଉପଲବ୍ଧି କରିଥାଏ । ଏହାହିଁ ଯୋଗସାଧନା । ମହାଭାରତର ଶାନ୍ତିପର୍ବରେ କୁହାଯାଇଛି "ନାସ୍ତି ସାଂଖ୍ୟସମଂଜ୍ଞାନଂ ନାସ୍ତି ଯୋଗସମଂବଳମ୍ ।"

ଯୋଗଶବ୍ଦ ସମାଧିଅର୍ଥକ 'ଯୁଜ୍' ଶବ୍ଦରୁ ନିଷ୍ପନ୍ନ ହୋଇଛି । ପତଞ୍ଜଳିଙ୍କ ବ୍ୟାଖ୍ୟାନୁଯାୟୀ "ଯୋଗଶ୍ଚିତ୍ତବୃତ୍ତିନିରୋଧଃ" ଅର୍ଥାତ୍ ଚିତ୍ତବୃତ୍ତିର ନିରୋଧ-ହେଉଛି ଯୋଗ । ତାଙ୍କ ବର୍ଣ୍ଣନାନୁଯାୟୀ ଚିତ୍ତ ପାଞ୍ଚ ପ୍ରକାର ଭୂମି ବା ଅବସ୍ଥାରେ ଅବସ୍ଥାନ କରିଥାଏ । ସେଗୁଡ଼ିକ ହେଉଛି ୧-କ୍ଷିପ୍ତ, ୨-ମୂଢ଼, ୩-ବିକ୍ଷିପ୍ତ, ୪-ଏକାଗ୍ର, ୫-ନିରୁଦ୍ଧ ।

ରଜୋଗୁଣର ପ୍ରାବଲ୍ୟ ହେତୁ ଚିତ୍ତକ୍ଷିପ୍ତ ବା ଅସ୍ଥିର ହୋଇ ସଂସାରର ସୁଖ ଦୁଃଖରେ ପ୍ରବୃତ୍ତ ହୋଇଥାଏ । ତମୋଗୁଣର ପ୍ରାବଲ୍ୟରେ ଚିତ୍ତ କାର୍ଯ୍ୟାକାର୍ଯ୍ୟ ବିବେଚନା କରିନପାରି କ୍ରୋଧାଦିରେ ଯୁକ୍ତ ହୋଇଥାଏ । ଏହାକୁ ଚିତ୍ତର ମୂଢ଼ାବସ୍ଥା କୁହାଯାଇଥାଏ । ଏହା ହେଉଛି ଏକ ବିବେକଶୂନ୍ୟ ଅବସ୍ଥା । ବିକ୍ଷିପ୍ତ ଅବସ୍ଥାରେ ଚିତ୍ତ ଦୁଃଖକୁ ଛାଡ଼ି ସୁଖ ବିଷୟରେ ପ୍ରବୃତ୍ତ ହୋଇଥାଏ । କ୍ଷିପ୍ତ ଚିତ୍ତ ଓ ବିକ୍ଷିପ୍ତ ଚିତ୍ତ ମଧ୍ୟରେ ପାର୍ଥକ୍ୟ ହେଉଛି—କ୍ଷିପ୍ତ ଚିତ୍ତ ସର୍ବଦା ଚଞ୍ଚଳ

ଓ ଅସ୍ଥିର କିନ୍ତୁ ବିକ୍ଷିପ୍ତ ଚିତ୍ତ କେବେ କେବେ ସ୍ଥିର ବା ଏକାଗ୍ର ହୋଇଥାଏ । ଏହା ସତ୍ତ୍ୱଗୁଣ ପ୍ରଭାବରୁ ହୋଇଥାଏ ।

ଚିତ୍ତର ଏକାଗ୍ର ଅବସ୍ଥାରେ ଚିତ୍ତ ସମସ୍ତ ବହିର୍ଚିନ୍ତା ବା ବହିର୍ବୃତ୍ତିରୁ ବିଯୁକ୍ତ ହୋଇ ଗୋଟିଏ ବିଷୟ ଚିନ୍ତନରେ ଯୁକ୍ତ ହୁଏ ।

ନିରୁଦ୍ଧ ଅବସ୍ଥା ହେଉଛି ଚିତ୍ତର ଏକ ଲୟାବସ୍ଥା ଅର୍ଥାତ୍ ଏହି ଅବସ୍ଥାରେ ଚିତ୍ତର ସମସ୍ତବୃତ୍ତି ଲୟ ହୋଇଥାଏ । ଏହା ହେଉଛି ଯୋଗର ସମାଧିଅବସ୍ଥା ।

ଶ୍ରୀମଦ୍‌ଭଗବଦଗୀତା,ରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି -

ସର୍ବଦ୍ୱାରାଣି ସଂଯମ୍ୟ ମନୋ ହୃଦି ନିରୁଧ୍ୟ ଚ
ମୂର୍ଦ୍ଧ୍ନ୍ୟାଧାୟାତ୍ମନଃ ପ୍ରାଣମାସ୍ଥିତୋ ଯୋଗଧାରଣାମ୍ । (୮।୧୨)

ଅର୍ଥାତ୍ ଇନ୍ଦ୍ରିୟମାନଙ୍କର ବହିର୍ଗମନ ଦ୍ୱାରକୁ ସଂଯମ କରି, ମନକୁ ହୃଦୟରେ ସ୍ଥିର କରି, ନିଜର ପ୍ରାଣକୁ ମସ୍ତକ ମଧ୍ୟରେ ( ସହସ୍ରଦଳ ଚକ୍ରରେ ) ସ୍ଥାପନ କରି ଯୋଗଧାରଣାରେ ସ୍ଥିତ ହୁଅନ୍ତି ।

ଯୋଗାବସ୍ଥାରେ କଣ ହୁଏ ତାହାର ବର୍ଣ୍ଣନା ମଧ୍ୟ ଏଥିରେ ଦେଖିବାକୁ ମିଳିଥାଏ । ଯଥା— "ଯତ୍ରୋ ପରମତେ ଚିତ୍ତଂ ନିରୁଦ୍ଧଂ ଯୋଗସେବୟା
ଯତ୍ର ଚୈବାତ୍ମନାତ୍ମନଂ ପଶ୍ୟନ୍ନାତ୍ମନି ତୁଷ୍ୟତି ।"
( ଶ୍ରୀମଦ୍‌ଭଗବଦ୍‌ଗୀତା-୬।୨୦ )

ଅର୍ଥାତ୍ ଯେଉଁ ଅବସ୍ଥାରେ ଯୋଗାଭ୍ୟାସ ଦ୍ୱାରା ନିରୁଦ୍ଧ ଚିତ୍ତ ଉପଶାନ୍ତ ହୋଇଥାଏ ଏବଂ ଯେଉଁ ଅବସ୍ଥାରେ ଆତ୍ମା ଆତ୍ମାକୁ ( ପରମାତ୍ମାଙ୍କୁ ) ସାକ୍ଷାତ୍କାର କରି ସନ୍ତୁଷ୍ଟ ହୋଇଥାଏ ।

ଚିତ୍ତକୁ ନିରୁଦ୍ଧକରି ମନର ଏକାଗ୍ରତା ପୂର୍ବକ ଆତ୍ମାରେ ପରମାତ୍ମା ଦର୍ଶନ କରିବା ହେଉଛି ଯୋଗସାଧନାର ଲକ୍ଷ୍ୟ । ଏହା ହେଉଛି ବ୍ରହ୍ମଜ୍ଞାନ ଲାଭମାର୍ଗ ।

**ପ୍ରାଣ କ'ଣ ? —**

ପ୍ରାଣ ବା ଆତ୍ମା ସମ୍ବନ୍ଧୀୟ ଚିନ୍ତନ ବୈଦିକ ଯୁଗରୁ ଆରମ୍ଭ ହୋଇଛି । ଋଗ୍‌ବେଦର ପ୍ରାଣ ସ୍ୱରୂପ ବର୍ଣ୍ଣନା କରି କୁହାଯାଇଛି—

ଅପଶ୍ୟ ଗୋପାଲ ପଦ୍ୟମାନ
ମା ଚ ପରାଚ ପଥିଭିଶ୍ଚରନ୍ତମ୍

ସ ସଧୀଚଃ ସ ବିଷୂଚଙ୍ଖ ସାନ
ଅବଶବର୍ତ୍ତି ଭୁବନେଶ୍ୱନ୍ତଃ ।' ( ୧।୧୬୪।୩୧ )

ଦୀର୍ଘତମା ଋଷି କହୁଛନ୍ତି— ମୁଁ ପ୍ରାଣକୁ ଦେଖିଛୁ । ଏହି ପ୍ରାଣ ସମସ୍ତ ଇନ୍ଦ୍ରିୟମାନଙ୍କର ଗୋପା ( ଅର୍ଥାତ୍ ରକ୍ଷକ ) । ଏହା କେବେ ନଷ୍ଟ ହୁଏ ନାହିଁ । ଏହା ଭିନ୍ନ ଭିନ୍ନ ମାର୍ଗରେ ( ଅର୍ଥାତ୍ ଦେହର ଅସଂଖ୍ୟ ନାଡ଼ୀରେ ) ଯାତାୟାତ କରୁଥାଏ । । ମୁଖ୍ୟ ତଥା ନାସିକା ଦ୍ୱାରା ଏହା ପ୍ରତିକ୍ଷଣରେ ଶରୀରକୁ ଆସିଥାଏ, ପୁଣି ବାହାରକୁ ଚାଲିଯାଇଥାଏ । ଏହି ପ୍ରାଣ ଶରୀର ମଧ୍ୟରେ ଅଧ୍ୟାତ୍ମରୂପରେ ବାୟୁ ଅଟେ ଏବଂ ଅଧିଦୈବତ ରୂପରେ ସୂର୍ଯ୍ୟ ଅଟେ । ଏହାର ତାତ୍ପର୍ଯ୍ୟ ହେଉଛି— ପ୍ରାଣର ଦୁଇଟି ରୂପ ଅଛି, ଏହାର ଅଧ୍ୟାତ୍ମରୂପ ହେଉଛି ବାୟୁ ( ଯାହାକୁ ଜୀବ ବା ଆତ୍ମା କୁହାଯାଇଥାଏ ) ଏବଂ ଅଧିଦୈବତ ରୂପ ହେଉଛି ସୂର୍ଯ୍ୟ ( ଯାହାକୁ ଶରୀର ମଧ୍ୟସ୍ଥ ଜ୍ୟୋତିର୍ମୟବ୍ରହ୍ମ ବା ପରମାତ୍ମା କୁହାଯାଇଥାଏ ) ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ମଧ୍ୟ ଠିକ୍ ଏହି ବର୍ଣ୍ଣନା ପରିଦୃଷ୍ଟ ହୋଇଥାଏ । ସପ୍ତାଙ୍ଗ ଯୋଗରେ କୁହାଯାଇଛି—

ପବନ ଯନ୍ତ୍ରକୁ ପୁଣି ଅଟେ କଳେବର
ଏ ପିଣ୍ଡ ଅଟଇ ପୂର୍ବାରେ ପବନର ଘର
ଷାଠିଏ ସହସ୍ର ନାଡ଼ୀ ପବନର ବିକାର
ତହିଁରୁ ବଳଗ ପୂର୍ବରେ ଦଶନାଡ଼ୀସାର
ସେ ଦଶ ପୁଣି ନିବିଧ ପ୍ରକାରେ ହୋଇଲା
ନତ୍ୟୋଆଶ୍ରେ ଶୂନ୍ୟଭବନୁ ଟେସିଲା ।

ଅଚ୍ୟୁତାନନ୍ଦ ଶୂନ୍ୟସଂହିତା'ରେ ଲେଖିଛନ୍ତି :—

ଦେଖ ବାବୁ ରାମ ତୋ ଦେହେ ପୁଣ
ନାସିକାର ଦ୍ୱାରେ ହଂସଗମନ
ବାର ଆଙ୍ଗୁଳ ପ୍ରମାଣେ ଚଳଇ
ଅଣଚାଶ ଖଣ୍ଡ ତନୁ ଧରଇ
ଚଉଦୁଆରେ ଗ୍ରସ୍ତାତାର ବଣେ
ଆଲେଖ ରୂପ ଜଗତେ ପ୍ରକାଶେ
ଦେଖୁ ଅଛୁ ସେହି ଜଗତଜନ
ତାକୁ ନଦେଖନ୍ତି ମୂଢ ଅଜ୍ଞାନ । ( ସପ୍ତମ ଅଧ୍ୟାୟ )

ଯୋଗ ବିଷୟକ ଚର୍ଚ୍ଚା ଅର୍ବାଚୀନ ନୁହେଁ, ଏହା ବହୁ ପ୍ରାଚୀନ । ଏହାର ଏକ କ୍ରମବିକଶିତଧାରା ପରିଦୃଷ୍ଟ ହୋଇଥାଏ । ବୈଦିକଯୁଗରୁ ପୁରାଣଯୁଗ ପର୍ଯ୍ୟନ୍ତ ଏହାର ବିକାଶଧାରା ସମ୍ବନ୍ଧରେ ଏଠାରେ ସଂକ୍ଷିପ୍ତ ସୂଚନା ଦିଆଯାଉଛି ।

## ଉପନିଷଦ୍‌ମାନଙ୍କରେ ଯୋଗବିଷୟକ ଚର୍ଚ୍ଚା ।—

ଅମୃତନାଦୋପନିଷଦ :— ଏଥିରେ ଯୋଗର ଛଅଟି ଅଙ୍ଗ, ଯଥା— ପ୍ରତ୍ୟାହାର ଧ୍ୟାନ ପ୍ରାଣାୟାମ ଧାରଣା ତର୍କ ଏବଂ ସମାଧି ବିଷୟରେ ଆଲୋଚନା କରାଯାଇଛି ।

ଅମୃତ ବିନ୍ଦୁପନିଷଦ୍ :— ସମସ୍ତ ବନ୍ଧନର କାରଣ ମନକୁ ବିଷୟାସକ୍ତିରୁ ମୁକ୍ତ କରି ହୃଦୟରେ ନିରୁଦ୍ଧ କରିବା ଉପାୟ ଏଥିରେ ବର୍ଣ୍ଣିତ । ଏହାଦ୍ୱାରା ପରମପଦ ପ୍ରାପ୍ତ ହୁଏ ।

କ୍ଷୁରିକୋପନିଷଦ :— ଏଥିରେ ଯୋଗର ଛଅଟି ଅଙ୍ଗ ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣ, ଧ୍ୟାନ ଓ ସମାଧି ବିଷୟରେ ଆଲୋଚନା କରାଯାଇଛି ।

ତେଜୋବିନ୍ଦୁ ଉପନିଷଦ୍ :— ଏଥିରେ ଯୋଗର ୧୫ଟି ଅଙ୍ଗ ଯଥା— ଯମ, ନିୟମ, ତ୍ୟାଗ, ମୌନ, ଦେଶ, କାଳ, ଆସନ, ମୂଳବନ୍ଧ, ଦେହସାମ୍ୟ, ଦୃକ୍‌ସ୍ଥିତି, ପ୍ରାଣସଂଯମ, ପ୍ରତ୍ୟାହାର, ଧାରଣା, ଆତ୍ମଜ୍ଞାନ ଓ ସମାଧି ବିଷୟ ଆଲୋଚିତ ହୋଇଛି ।

ତ୍ରିଶିଖୋପନିଷଦ୍ :— ଏଥିରେ କର୍ମଯୋଗ ଓ ଜ୍ଞାନଯୋଗ ବିଷୟ ଆଲୋଚିତ ହୋଇଛି ଏବଂ ଅଷ୍ଟାଙ୍ଗଯୋଗକୁ ଜ୍ଞାନଯୋଗରେ ଅନ୍ତର୍ଭୁକ୍ତ କରା-ଯାଇଛି । ଯମ ନିୟମ ଆସନ ପ୍ରାଣାୟାମ ପ୍ରତ୍ୟାହାର ଧାରଣା ଧ୍ୟାନ ସମାଧିକୁ ଯୋଗର ଅଷ୍ଟ ଅଙ୍ଗରୂପେ ଦର୍ଶାଯାଇଅଛି ।

ଦର୍ଶନୋପନିଷଦ :— ଏଥିରେ ଯମ ନିୟମାଦି ଅଷ୍ଟାଙ୍ଗ ଯୋଗର ଚର୍ଚ୍ଚା କରାଯିବା ସହିତ, ବାୟୁନାଡ଼ୀ ଓ ନାଡ଼ୀର ବିଭିନ୍ନ ଦେବତାମାନଙ୍କ ବିଷୟରେ ଆଲୋଚନା କରାଯାଇଛି ।

ଧ୍ୟାନବିନ୍ଦୁ ଉପନିଷଦ :— ଏଥିରେ ବ୍ରହ୍ମଧ୍ୟାନ ଯୋଗ ବିଷୟ ବର୍ଣ୍ଣିତ ।

ପାଶୁପତ ବ୍ରହ୍ମୋପନିଷଦ :— ଏଥିରେ ପରମାତ୍ମାଙ୍କୁ ହଂସରୂପେ ବର୍ଣ୍ଣନା କରାଯାଇ ଯୋଗକୁ ଅନୁଯାଗ କୁହାଯାଇଛି ଏବଂ ଜ୍ଞାନଯୋଗ ଦ୍ୱାରା ହଂସ-ରୂପକ ପରମାତ୍ମାଙ୍କୁ ପାଇବାର ଉପାୟ ଦର୍ଶାଯାଇଛି ।

ବ୍ରହ୍ମବିଦ୍ୟା ଉପନିଷଦ :— ଏଥିରେ ପ୍ରଣବ ବା ଓଁକାର ସ୍ୱରମାତ୍ରା ଓ ସୁଷୁମ୍ନା ବିଷୟରେ ବର୍ଣ୍ଣନା ଦିଆଯାଉଛି ।

ମଣ୍ଡଳବ୍ରାହ୍ମଣୋପନିଷଦ :— ଏଥିରେ ଅଷ୍ଟାଙ୍ଗଯୋଗର ବର୍ଣ୍ଣନା ସହିତ ତାଳୁମୂଳ-ସ୍ଥିତ ଜ୍ୟୋତିର୍ମୟବ୍ରହ୍ମଙ୍କର ଧ୍ୟାନ ବିଷୟର ବର୍ଣ୍ଣନା ରହିଛି ।

ମହାବାକ୍ୟୋପନିଷଦ — ଏଥିରେ 'ସୋଽହଂ ହଂସଃ' ଅଜପାମନ୍ତ୍ର ଜପର ଚର୍ଚ୍ଚା କରାଯାଇଛି ।

ଯୋଗକୁଣ୍ଡଳିନୀ ଉପନିଷଦ — ଏଥିରେ କୁଣ୍ଡଳିନୀ ଜାଗରଣ ଉପାୟ, ଖେଚରୀ ମୁଦ୍ରାସାଧନ, ମନ୍ତ୍ରଜପ ଆଦିର ବର୍ଣ୍ଣନା ସହିତ, ବ୍ରହ୍ମସ୍ୱରୂପ, ଜୀବସ୍ୱରୂପ, ଜୀବବ୍ରହ୍ମ ସମ୍ପର୍କ ଓ ମୁକ୍ତିପ୍ରସଙ୍ଗ ଉପସ୍ଥାପନା କରାଯାଇଛି ।

ଯୋଗଚୂଡ଼ାମଣି ଉପନିଷଦ — ଏଥିରେ ନାଡ଼ୀ ଓ ବାୟୁତତ୍ତ୍ୱର ଆଲୋଚନା ସହିତ ପ୍ରାଣାୟାମ ଦ୍ୱାରା ନାଡ଼ୀଶୋଧନର ଉପାୟ ଓ ପ୍ରଣବ ଜପ ବିଷୟର ବିଚାର କରାଯାଇଛି ।

ଯୋଗତତ୍ତ୍ୱୋପନିଷଦ — ଏଥିରେ ଯୋଗର ଚାରିଟି ବିଭାଗ- ମନ୍ତ୍ରଯୋଗ, ଲୟ-ଯୋଗ, ହଠଯୋଗ ଓ ରାଜଯୋଗ ବିଷୟରେ ଆଲୋଚନା କରାଯାଇଛି ।

ଯୋଗଶିଖୋପନିଷଦ — ଏଥିରେ ମଧ୍ୟ ମନ୍ତ୍ରଯୋଗ, ଲୟଯୋଗ, ହଠଯୋଗ ଓ ରାଜଯୋଗ ବିଷୟ ଆଲୋଚିତ ହୋଇଛି ।

ବରାହୋପନିଷଦ — ଏଥିରେ ଲୟଯୋଗ, ମନ୍ତ୍ରଯୋଗ ଓ ହଠଯୋଗ ତଥା ହଠଯୋଗର ଅଷ୍ଟାଙ୍ଗ ବିଷୟରେ ଆଲୋଚନା କରାଯାଇଛି ।

ଶାଣ୍ଡିଲ୍ୟୋପନିଷଦ — ଏଥିରେ ଦତ୍ତାତ୍ରେୟମାହାତ୍ମ୍ୟ, ବ୍ରହ୍ମସ୍ୱରୂପ ଓ ଅଷ୍ଟାଙ୍ଗ ଯୋଗ ବିଷୟ ବର୍ଣ୍ଣିତ ।

ଯୋଗରାଜୋପନିଷଦ — ଏଥିରେ ମନ୍ତ୍ରଯୋଗ, ଲୟଯୋଗ ଓ ହଠଯୋଗ ବିଷୟ ଆଲୋଚିତ ହୋଇଛି ।

ପଞ୍ଚରାତ୍ର ଧର୍ମ ବା ଭାଗବତ ଧର୍ମରେ ଯୋଗର ଏକ ବିଶିଷ୍ଟ ଭୂମିକା ରହିଛି । ଏହି ଧର୍ମରେ ଭକ୍ତିର ପ୍ରାଧାନ୍ୟ ଘୋଷିତ ହୋଇଥିଲେହେଁ, ତାହା ଯୋଗ ସାପେକ୍ଷ । ଯୋଗରେ ମନର ଏକାଗ୍ରତା ବା ସମାଧିଅବସ୍ଥା ଆସିଗଲେ ପ୍ରେମଭକ୍ତିର ସ୍ୱତଃଉଦ୍ରେକ ହୋଇଥାଏ । ଶ୍ରୀମଦ୍ଭାଗବତର ତୃତୀୟ ସ୍କନ୍ଧରେ କପିଳମୁନି କହିଛନ୍ତି :— ଯୋଗାଭ୍ୟାସ ଦ୍ୱାରା ନିବୃତ୍ତମନ ବା ଚିତ୍ତ ଅବିଦ୍ୟା ରହିତ ଓ ସୁଖଦୁଃଖାଦି ଦ୍ୱନ୍ଦ୍ୱଶୂନ୍ୟ ହୋଇ ବ୍ରହ୍ମରୂପ ମହିମାରେ ସ୍ଥିତହୋଇଥାଏ । ସେ ଅଜ୍ଞାନବଶତଃ ନିଜକୁ ପୂର୍ବରୁ ସୁଖଦୁଃଖର ଭୋକ୍ତାରୂପେ ଅନୁଭବ କରୁଥିଲା, କିନ୍ତୁ ପରମାତ୍ମତତ୍ତ୍ୱ ଉପଲବ୍ଧି କଲାପରେ ସେ ଏହାକୁ ଅବିଦ୍ୟାକୃତ ଅହଙ୍କାର ବୋଲିଭାବେ । ଯୋଗର ଚରମାବସ୍ଥାରେ ଉପନୀତ ସିଦ୍ଧପୁରୁଷ ନିଜ ଦେହ ସମ୍ପର୍କରେ ଜ୍ଞାନନଥାଏ, କାରଣ ସେ ପରମାନନ୍ଦମୟ ସ୍ୱରୂପରେ ନିମଗ୍ନ ରହିଥାଏ । (ଶ୍ରୀମଦ୍ଭାଗବତ-୩।୨୮।୩୭) ଶ୍ରୀମଦ୍ଭାଗବତର ଏକାଦଶସ୍କନ୍ଧରେ ଯୋଗତତ୍ତ୍ୱର ବିଶେଷ ବର୍ଣ୍ଣନା କରାଯାଇଅଛି ।

ବିଷ୍ଣୁପୁରାଣରେ ଓଁ ମନ୍ତ୍ର ଜପସହିତ ପ୍ରାଣାୟାମକୁ ସବୀଜ ପ୍ରାଣାୟାମ ଏବଂ ମନ୍ତ୍ରଜପବିହୀନ ପ୍ରାଣାୟାମକୁ ଅବୀଜପ୍ରାଣାୟାମ କୁହାଯାଇଛି । ( ଷଷ୍ଠଅଂଶ- ୭/୪୦ ) ଓଡ଼ିଆ ଜ୍ଞାନମିଶ୍ରା ଭକ୍ତିସାହିତ୍ୟରେ ପ୍ରାୟ ଏହି ସବୀଜ ପ୍ରାଣାୟାମ ଉପରେ ଗୁରୁତ୍ୱପ୍ରଦାନ କରାଯାଇଅଛି ।

ଯୋଗସାଧନା ବିଷୟ ତନ୍ତ୍ରଗ୍ରନ୍ଥମାନଙ୍କରେ ବିଶେଷ ଆଲୋଚିତ ହୋଇ- ଅଛି । ଶୈବତନ୍ତ୍ରରେ ଯୋଗମାର୍ଗକୁ ପ୍ରଧାନ ଅବଲମ୍ବନ ରୂପେ ଗ୍ରହଣ କରାଯାଇଛି । ସେଥିପାଇଁ ନାଥ ସଂପ୍ରଦାୟର ପ୍ରଧାନ ସାଧନାରୂପେ ଯୋଗସାଧନାକୁହିଁ ଗ୍ରହଣ କରାଯାଇଛି ।

ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତସାଧକବୃନ୍ଦ ଯୋଗସାଧନା ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଛନ୍ତି । ସେମାନେ ପଞ୍ଚରାତ୍ର ଆଗମ ଅନ୍ତର୍ଭୁକ୍ତ ଭାଗବତଧର୍ମକୁ ବିଶେଷ ଅନୁସରଣ କରୁଥିଲେ । ତେଣୁ ସେମାନଙ୍କର ଧ୍ୟେୟଥିଲେ ଶ୍ରୀଜଗନ୍ନାଥ, କୃଷ୍ଣ, ରାଧାକୃଷ୍ଣ ଓ ନୈ୍ୟାଙ୍ଗମୟବ୍ରହ୍ମ ।

ଯୋଗସାଧନା ସାଧାରଣତଃ ଚାରିପ୍ରକାରରେ ବିଭକ୍ତ । ତାହାହେଉଛି- ମନ୍ତ୍ରଯୋଗ, ଲୟଯୋଗ, ହଠଯୋଗ ଓ ରାଜଯୋଗ ।

ମନ୍ତ୍ରଯୋଗ— ମାତୃକାଦିଯୁକ୍ତ ମନ୍ତ୍ରର ଜପକୁ ମନ୍ତ୍ରଯୋଗ କୁହାଯାଇଥାଏ ।

ଲୟଯୋଗ— ଚିତ୍ତର ବିଲୟ ଅବସ୍ଥା ଲୟଯୋଗରେ ଆସିଥାଏ । ଅନାହତ ନାଦ ଅନୁସନ୍ଧାନ ପୂର୍ବକ ବିନ୍ଦୁରେ ନାଦ ବା ପ୍ରାଣ ବାୟୁର ଚିଲୀନ ଅବସ୍ଥାକୁ ଲୟାବସ୍ଥା କୁହାଯାଇଥାଏ ।

ହଠଯୋଗ— 'ହ' ହେଉଛି ସୂର୍ଯ୍ୟ ବା ଜୀବାତ୍ମା । ସେ ମୂଳାଧାରରେ ଅବସ୍ଥିତ। 'ଠ' ହେଉଛନ୍ତି ଚନ୍ଦ୍ର ବା ପରମାତ୍ମା ବା ପରଂବ୍ରହ୍ମ ଏବଂ ସେ ସହସ୍ରଦଳଚକ୍ରରେ ଅବସ୍ଥିତ । ଅଷ୍ଟାଙ୍ଗ ଯୋଗସାଧନା ଦ୍ୱାରା ହ ଏବଂ ଠ ର ମିଳନକୁ ହଠଯୋଗ କୁହାଯାଇଥାଏ ।

ରାଜଯୋଗ— ବିକ୍ଷିପ୍ତ ଓ ଚଞ୍ଚଳ ମନକୁ ପ୍ରାଣାୟାମ ଏବଂ ଓଁକାର ଜପଦ୍ୱାରା ସ୍ଥିର କରିବାର ଉପାୟକୁ ରାଜଯୋଗ କୁହାଯାଏ ।

ଓଡ଼ିଆ ଜ୍ଞାନମିଶ୍ରାଭକ୍ତି ସାହିତ୍ୟରେ ଏହି ଚାରିପ୍ରକାର ଯୋଗର ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଉକ୍ତ ଅଧ୍ୟାୟରେ ହଠଯୋଗ, ଲୟଯୋଗ ଓ ରାଜଯୋଗର ବିଚାର କରାଯାଇଛି । ଏ ତିନୋଟି ଯୋଗ ସାଧନା ପରସ୍ପର ସହିତ ସଂପୃକ୍ତ ହେତୁ ଏହାର ପୃଥକ୍ ବିଚାର କରାନଯାଇ ଏକତ୍ର ବିଚାର କରାଯାଇଛି । ମନ୍ତ୍ର, ଯନ୍ତ୍ର, ତନ୍ତ୍ରତତ୍ତ୍ୱ ବିଚାର ପ୍ରସଙ୍ଗରେ ମନ୍ତ୍ର ଯୋଗର ପୃଥକ୍ ବିଚାର କରାଯିବାର ଲକ୍ଷ୍ୟଥିବାରୁ ଏଠାରେ ମନ୍ତ୍ରର ବିଚାର କରାଯାଉନାହିଁ ।

ଯୋଗସାଧନାର ଚାରୋଟି ସ୍ତରଥିବା ବିଷୟ ଯୋଗତତ୍ତ୍ୱୋପନିଷଦରେ ବର୍ଣ୍ଣିତ ହୋଇଛି । ସେଗୁଡ଼ିକ ହେଉଛି ଆରମ୍ଭ, ଘଟ, ପରିଚୟ ଏବଂ ନିଷ୍ପତ୍ତି (ଆରମ୍ଭଶ୍ଚଘଟଶ୍ଚୈବ ତଥା ପରିଚୟଃ ସ୍ମୃତଃ, ନିଷ୍ପତ୍ତିଶ୍ଚେତ୍ୟବସ୍ଥା ଚ ସର୍ବତ୍ର ପରିକୀର୍ତ୍ତିତା'— ଯୋଗତତ୍ତ୍ୱୋପନିଷଦ୍-୨୦) । ଉକ୍ତ ଉପନିଷଦରେ ଯୋଗସାଧନା କାର୍ଯ୍ୟର ପ୍ରଥମାବସ୍ଥାକୁ ( ଯମ, ନିୟମ, ଆସନଆଦି) ଆରମ୍ଭାବସ୍ଥା, ପ୍ରାଣାୟାମଦ୍ୱାରା ଦେହ ମଧ୍ୟରେ ପ୍ରାଣବାୟୁ ଧାରଣରେ ଅଭ୍ୟାସକୁ ଘଟ ଅବସ୍ଥା କୁହାଯାଏ । ଯତ୍ନର ସହିତ ଯୋଗସାଧନା କରିବାଦ୍ୱାରା ଯୋଗର ପରିଚୟାବସ୍ଥା ଆସିଥାଏ । ଯୋଗ ସାଧନାର ଶେଷାବସ୍ଥା ହେଉଛି ନିଷ୍ପତ୍ତି ଅବସ୍ଥା, ଏହା ସମାଧି ଅବସ୍ଥା ଅଟେ । ଏହା ଆତ୍ମାର ବ୍ରାହ୍ମୀ ସ୍ଥିତି ଅଟେ । (ଯୋଗତତ୍ତ୍ୱୋପନିଷଦ ୨୪-୧୪୨ )

ମଣ୍ଡଳ ବ୍ରାହ୍ମଣୋପନିଷଦରେ ଯେ ସବୁ ପାଞ୍ଚଟିସ୍ତର ବର୍ଣ୍ଣିତ ହୋଇଛି । ସେଗୁଡ଼ିକ ହେଉଛି ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି, ତୁରୀୟ ଓ ତୁରୀୟାତୀତ ।

ଜାଗ୍ରତାବସ୍ଥା — ଏହି ଅବସ୍ଥାରେ ସ୍ଥିତ ଜୀବ ନାଚପ୍ରବୃତ୍ତି ମାର୍ଗରେ ଆସକ୍ତ ହୁଅନ୍ତି ଏବଂ ସ୍ୱର୍ଗପ୍ରାପ୍ତି କାମନା କରନ୍ତି ।

ସ୍ୱପ୍ନାବସ୍ଥା— ଏହି ଅବସ୍ଥାରେ ଜୀବ ଗୁରୁଙ୍କ ଆଶ୍ରୟନେଇ କାମାଦିର ତ୍ୟାଗକରନ୍ତି ଏବଂ ବ୍ରହ୍ମାନନ୍ଦଙ୍କର ସ୍ମରଣକୁ ପ୍ରାପ୍ତ ହୁଅନ୍ତି । ଏହି ସ୍ମରଣ ସାମୟିକ ସ୍ମରଣ ହୋଇଥାଏ ।

ସୁଷୁପ୍ତି ଅବସ୍ଥା—ଜୀବ ଏହି ଅବସ୍ଥାରେ ନିଜକୁ ପ୍ରାଜ୍ଞ ମନେକରେ ।

ତୁରୀୟାବସ୍ଥା— ଏହି ଅବସ୍ଥାରେ ଜୀବ ବ୍ରହ୍ମସହିତ ଏକତ୍ୱ ଭାବ ଅନୁଭବକରେ ।

ତୁରୀୟାତୀତାବସ୍ଥା— ଜୀବ ବ୍ରହ୍ମସ୍ୱରୂପ ହୋଇଯାଏ ।

ତ୍ରିଶିଖ ବ୍ରାହ୍ମଣୋପନିଷଦର ବର୍ଣ୍ଣନାନୁଯାୟୀ ନାଭିମୂଳରୁ ଆରମ୍ଭକରି ହୃଦୟଦେଶ ପର୍ଯ୍ୟନ୍ତ ଜାଗ୍ରତସ୍ଥାନ, କଣ୍ଠ ସ୍ୱପ୍ନବୃତ୍ତିର ସ୍ଥାନ, ତାଳୁ ସୁଷୁପ୍ତିର ସ୍ଥାନ, କଣ୍ଠ ସ୍ୱପ୍ନବୃତ୍ତିର ସ୍ଥାନ, ତାଳୁ ସୁଷୁପ୍ତିର ସ୍ଥାନ, ଭ୍ରୂଦ୍ୱୟ ତୁରୀୟାବସ୍ଥାର ସ୍ଥାନ ଏବଂ ବ୍ରହ୍ମରନ୍ଧ୍ର ତୁରୀୟାତୀତ ଅବସ୍ଥାର ସ୍ଥାନ (୧୫୦-୧୫୨) ଏହାର ତାତ୍ପର୍ଯ୍ୟ ହେଉଛି ଯୋଗସାଧନା ବେଳେ ମନ ଓ ଦୃଷ୍ଟି ଏହି ଏହି ସ୍ଥାନରେ ନିବଦ୍ଧ ହେଲାବେଳେ ଏହି ଏହି ଅବସ୍ଥା ଅନୁଭୂତ ହୋଇଥାଏ ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଯୋଗର ଏହି ବିଭିନ୍ନସ୍ତର ବିଷୟର ବର୍ଣ୍ଣନା ବହୁସ୍ଥଳରେ ଦେଖିବାକୁ ମିଳିଥାଏ । କେବଳ ଯୋଗର ଶେଷସ୍ତର ନିଷ୍ପତ୍ତି ଅବସ୍ଥାକୁ ସେମାନେ ନିସ୍ପୃହବୋଲି ବର୍ଣ୍ଣନା କରିଛନ୍ତି । ଚନ୍ଦ୍ରମଣି ଦାସ ସୁଧାସାର ଗୀତାରେ ଲେଖିଛନ୍ତି—

ନିସ୍ପୃହ ଯୋଗରେ ବଙ୍କନାଳେ ବସି ପଦ୍ମପାଦେ କରଠଣା
ଆରମ୍ଭ ଘଟ ପରଚେ ଏହି ଯୋଗ ଜାଣିଲି ଯୋଗୀଙ୍କି ବଣା ।

(ସପ୍ତମ ବୋଲି)

ଦେବାନନ୍ଦ ଦାସ ବୈରନ୍ଧ୍ର ଗୀତାରେ ମଧ୍ୟ ଲେଖିଛନ୍ତି—

ତାଣ୍ଡବାହନ ଏବେ କହି, ଆରମ୍ଭ ଘଟ ସୁପ୍ତ ହୋଇ
ପରଚେ ନିସ୍ପୃହ ଉଦୟେ, ଜଳତତ୍ତ୍ୱର ମଧ୍ୟେ ରହେ ।

ଦ୍ୱାରକା ଦାସ ମଧ୍ୟ ଶିବପୁରାଣରେ ଲେଖିଛନ୍ତି—

ଘଟଯୋଗ ଭେଦ ତୋତେ କହୁଛି ଈଶ୍ୱର
ଯେମନ୍ତ ଆରମ୍ଭ ପରଚେ ସେ ହୋଇଲା ନିସ୍ତାର ।

ଏଥିରେ ଯୋଗର ସ୍ତରଗୁଡ଼ିକୁ ଜୀବନକାଳର ଚାରି ଅବସ୍ଥା (ବାଲ୍ୟ, ଯୌବନ, ବାର୍ଦ୍ଧକ୍ୟ ଓ ମୃତ୍ୟୁ) ସଙ୍ଗରେ ତୁଳନା କରାଯାଇଛି । ବଳରାମ ଦାସ ବ୍ରହ୍ମଗୀତାରେ ନିସ୍ପତର ବର୍ଣ୍ଣନା କରି ଲେଖିଛନ୍ତି—

ବିଷମ ଗଣ୍ଠି ହେତୁ କରି ବନ୍ଧରୁ ମନକୁ ଉଠାଇ ଟାଣି
ନିସ୍ପତ ଦ୍ୱାରକୁ ଗ୍ୟାନ ଲଗାଇଲେ ନୟନ ଭିତରେ ପୁଣି ।

ଅଚ୍ୟୁତାନନ୍ଦ 'ବ୍ରହ୍ମଶାଙ୍କୋଳି' ଗ୍ରନ୍ଥରେ ନିସ୍ପତ୍ତିକୁ ନିଶ୍ରୁତ ବୋଲି ଲେଖିଛନ୍ତି । ଯଥା—

ନିଶ୍ରୁତ ଯୋଗର ଲକ୍ଷଣ, ତାହା କହିବା ମୁନିଗଣ
ଏ ଘଟଯୋଗ ଯେବା ଜାଣେ, ସେ ବେଦଶାସ୍ତ୍ର ହିଁ ନଗଣେ ।

ଯୋଗର ସୁଷୁପ୍ତି ଅବସ୍ଥାକୁ ଚନ୍ଦ୍ରମଣି ଦାସ 'ନିସ୍ପତ' ସହିତ ସମାନ ବୋଲି ବର୍ଣ୍ଣନା କରିଛନ୍ତି ଏବଂ ଖେଚରୀ ମୁଦ୍ରାରେ ରହିବାକୁ ତୁରୀୟାବସ୍ଥା ବୋଲି ଲେଖିଛନ୍ତି । ସୁଧାସାରଗୀତାରେ ସେ ଲେଖିଛନ୍ତି—

ସୁଷୁପ୍ତି ଭେଦରେ ନିସ୍ପତ ଯୋଗରେ ବସି ଯେ ପାରିବ ସାଧି
ତଳର ପାଣି ଉପରକୁ ଟେକିଲେ ତେବେ ସେ ବୋଲି ସମାଧି । (ଅଷ୍ଟମ ବୋଲି)

ସୁଷୁପ୍ତି ନିସ୍ପତ ସପ୍ତାଙ୍ଗ ଅଷ୍ଟାଙ୍ଗ ଅମନେ ରହିଲେ ଏହି
ଖେଚରୀ ମୁଦ୍ରାରେ ତୁରୀୟ ରହିଲେ ଅଜପା ଚଳନ୍ତି କହି । (ଦ୍ୱିତୀୟ ବୋଲି)

ଅନ୍ୟତ୍ର ସେ ସୁଷୁପ୍ତି ଅବସ୍ଥା ପରେ ସମାଧି ଅବସ୍ଥା ବୋଲି ଲେଖିଛନ୍ତି ।

ସୁଷୁପ୍ତି ଭେଦରେ ସମାଧି ଯୋଗରେ ଜୀବ ପରମ ଭେଟଇ । (ନବମ ବୋଲି)

ସୁଷୁପ୍ତି ଭେଦରେ ବ୍ରହ୍ମରନ୍ଧ୍ର ପଥେ ଜ୍ୟୋତି ପ୍ରକାଶଇ ସିନା ।

(ତ୍ରୟୋଦଶ ବୋଲି)

## ଷଡ଼ଚକ୍ର ସାଧନା—

ନାଡୀ :—ହଠଯୋଗ ସାଧନା ମୁଖ୍ୟତଃ ଷଡଚକ୍ର ସାଧନା । ପ୍ରତ୍ୟେକଙ୍କ ଦେହ ମଧ୍ୟରେ ପ୍ରାଣବାୟୁ ସମଗ୍ର ଶରୀରରେ ପୂର୍ଣ୍ଣ ହୋଇ ଦେହ ମଧ୍ୟରେ ଥିବା ବାସ୍ତରୀ ହଜାର ନାଡ଼ୀରେ ପରିବ୍ୟାପ୍ତ ହୋଇଛି ବୋଲି ଯୋଗଶାସ୍ତ୍ର ମାନଙ୍କରେ ବର୍ଣ୍ଣିତ ହୋଇଅଛି ।

ଯୋଗଚୂଡ଼ାମଣି ଉପନିଷଦରେ କୁହାଯାଇଛି—

ଚକ୍ରନାଡ୍ୟଃ ସମୁତ୍ପନ୍ନ ସହସ୍ରାଣିଃ ଦ୍ୱିସପ୍ତତିଃ
ତେଷୁ ନାଡ଼ୀ ସହସ୍ରେଷୁ ଦ୍ୱିସପ୍ତତି ରୁଦାହୃତା । (୧୫ ସାଧନାଖଣ୍ଡ)

ଏହି ନାଡ଼ୀଗୁଡ଼ିକ ହେଉଛନ୍ତି ଶରୀରରେ ପ୍ରବାହିତ ଭିନ୍ନ ସ୍ନାୟୁସ୍ରୋତ । ଆଧୁନିକ ଚିକିତ୍ସାବିଜ୍ଞାନ ମଧ୍ୟ କହେ ଆମର ସମସ୍ତ କାର୍ଯ୍ୟ ଏହି ସ୍ନାୟୁମାନଙ୍କ ଦ୍ୱାରା ସମ୍ପନ୍ନ ହୋଇଥାଏ । ଯେଉଁ ସ୍ଥାନରେ ସ୍ନାୟୁଗୁଡ଼ିକ ନଷ୍ଟ ହୋଇଯାଏ ସେହି ସ୍ଥାନଟି ଜୀବନୀଶକ୍ତି ବିହୀନ ହୋଇଥାଏ । ତେଣୁ ଯୋଗଶାସ୍ତ୍ରରେ ସ୍ନାୟୁସ୍ରୋତକୁ ଜୀବନ ବା ପ୍ରାଣର ଆଧାର କୁହାଯିବାରେ ଆଦୌ ଅସମୀଚୀନତା ନାହିଁ । ଯୋଗ-ଶାସ୍ତ୍ରର ବର୍ଣ୍ଣନାନୁଯାୟୀ ସ୍ନାୟୁସ୍ରୋତଗୁଡ଼ିକ କନ୍ଦମୂଳରୁ ଉତ୍ପିତ । 'କନ୍ଦ'ର ସ୍ଥାନ ହେଉଛି ଗୁହ୍ୟଦେଶ ଓ ଲିଙ୍ଗମୂଳର ମଧ୍ୟବର୍ତ୍ତୀ ସ୍ଥାନ ।

ଊର୍ଦ୍ଧ୍ୱଂ ମେଢ଼ ଦଧୋନାଭେଃ କନ୍ଦ ଯୋନିଃ ଖଗାଣ୍ଡବତ୍ ।
(୧୪— ଯୋଗ ଚୂଡ଼ାମଣିଉପନିଷଦ୍ ସାଧନାଖଣ୍ଡ)

ଆଧୁନିକ ଚିକିତ୍ସା ବିଜ୍ଞାନରେ ମସ୍ତିଷ୍କକୁ ସ୍ନାୟୁ ନିୟନ୍ତ୍ରଣ କେନ୍ଦ୍ର କୁହା-ଯାଇଛି ଏବଂ ବିଭିନ୍ନ ଆଡ଼ରୁ ପ୍ରବାହିତ ସ୍ନାୟୁ ଏହିଠାରେ ମିଳିତ ହୋଇଛନ୍ତି । ଯୋଗଶାସ୍ତ୍ର ବର୍ଣ୍ଣିତ 'କନ୍ଦ' ସ୍ଥାନରେ କେନ୍ଦ୍ରିତ ସ୍ନାୟୁ ରହିଥିବାରୁ ଏହାକୁ ନାଡ଼ୀ ବା ସ୍ନାୟୁମାନଙ୍କର ଉତ୍ପତ୍ତିସ୍ଥଳ କୁହାଯାଇଥାଏ । ଏହି ବାସ୍ତରୀ ହଜାର ନାଡ଼ୀ ମଧ୍ୟରୁ ତିନୋଟି ନାଡ଼ୀ ହେଉଛି ପ୍ରଧାନ । ସେଗୁଡ଼ିକ ହେଉଛି ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା । ଏହି ତିନିନାଡ଼ୀରୁ ମେରୁଦଣ୍ଡର ବାମ ଭାଗରେ ଇଡ଼ା ନାଡ଼ୀ ମେରୁଦଣ୍ଡର ଦକ୍ଷିଣ ଭାଗରେ ପିଙ୍ଗଳ ନାଡ଼ୀ ଏବଂ ମେରୁଦଣ୍ଡର ମଧ୍ୟ ଭାଗରେ ସୁଷୁମ୍ନା ନାଡ଼ୀ ପ୍ରବାହିତ । ଏହି ତିନିନାଡ଼ୀ ଏବଂ ଗାନ୍ଧାରୀ ହସ୍ତିଜିହ୍ୱା, ପୂଷା, ଯଶସ୍ୱିନୀ, ଅଲମ୍ବୁଷା କୁହୁ ଓ ଶଙ୍ଖିନୀ ନାମକ ସାତ ନାଡ଼ୀ ଅର୍ଥାତ୍ ପ୍ରଧାନ ଦଶନାଡ଼ୀ ପ୍ରାଣବାହିନୀ ନାଡ଼ୀ ଅଟନ୍ତି ବୋଲି ଯୋଗ ଚୂଡ଼ାମଣି ଉପନିଷଦ (ସାଧନା ଖଣ୍ଡ)ରେ ବର୍ଣ୍ଣିତ ହୋଇଅଛି । ଏମାନଙ୍କ ମଧ୍ୟରୁ ଗାନ୍ଧାରୀ ବାମ ନେତ୍ରରେ, ହସ୍ତି ଜିହ୍ୱା ଡାହାଣ ନେତ୍ରରେ, ପୂଷା ଡାହାଣକାନରେ, ଯଶସ୍ୱିନୀ ବାମକାନରେ, ଅଲମ୍ବୁଷା ମୁଖରେ ଓ କୁହୁ ଲିଙ୍ଗ ଦେଶରେ ପ୍ରବାହିତ ।

## ଦଶପ୍ରାଣବାୟୁ—

ପ୍ରତ୍ୟେକଙ୍କ ଦେହ ମଧ୍ୟରେ ପ୍ରାଣବାୟୁ ସର୍ବତ୍ର ପରିବ୍ୟାପ୍ତ ହୋଇରହିଛି । ଏହି ପ୍ରାଣବାୟୁ ମୁଖ୍ୟତଃ ୧୦ ଭାଗରେ ବିଭକ୍ତ । ଯଥା—ପ୍ରାଣ, ଅପାନ, ସମାନ,

ବ୍ୟାନ, ଉଦାନ, ନାଗ, କୂର୍ମ, କୃକ୍‌କଳ, ଦେବଦତ୍ତ ଓ ଧନଞ୍ଜୟ । ଏମାନଙ୍କ ମଧ୍ୟରୁ ପଞ୍ଚପ୍ରାଣବାୟୁ ପ୍ରଧାନ । ସେମାନଙ୍କର ଅବାସସ୍ଥଳ ନିମ୍ନରେ ଦର୍ଶାଇ ଦିଆଯାଉଛି ।

୧ । ପ୍ରାଣବାୟୁ—ହୃଦୟରେ

୨ । ଅପାନବାୟୁ—ଗୁହ୍ୟଦ୍ୱାରରେ

୩ । ସମାନବାୟୁ—ନାଭିଦେଶରେ

୪ । ଉଦାନବାୟୁ—କଣ୍ଠ ଦେଶରେ

୫ । ବ୍ୟାନବାୟୁ—ସମସ୍ତ ଶରୀରରେ ବ୍ୟାପ୍ତ

ଅନ୍ୟ ପଞ୍ଚପ୍ରାଣବାୟୁ ମନୁଷ୍ୟର ବିଭିନ୍ନ କାର୍ଯ୍ୟସାଧନରେ ସହାୟତା କରିଥାଆନ୍ତି । ଯଥା—

ନାଗବାୟୁ - ଉଦ୍‌ଗାରରେ (ବାନ୍ତି କଲାବେଳେ)

କୂର୍ମବାୟୁ - ଚକ୍ଷୁ ଉନ୍ମୀଳନରେ

କୃକରବାୟୁ - ଛିଙ୍କିବାରେ

ଦେବଦତ୍ତ ବାୟୁ - କ୍ଷୁତ୍‌କରଣରେ (କାଶିବାରେ)

ଧନଞ୍ଜୟ ବାୟୁ - ଦେହରେ ସର୍ବତ୍ର ବ୍ୟାପ୍ତ ହୋଇ ବିଭିନ୍ନ କାର୍ଯ୍ୟ କରାଇଥାଏ ।

ଉପରେ ଯେଉଁ ଦଶ ପ୍ରାଣବାୟୁ କଥା କୁହାଗଲା, ଏମାନଙ୍କ ମଧ୍ୟରୁ ପ୍ରାଣ ଓ ଅପାନବାୟୁ ଜୀବର ଗତିକୁ ନିୟନ୍ତ୍ରଣ କରିଥାଏ । ହୃଦୟସ୍ଥିତ ପ୍ରାଣବାୟୁ ଜୀବକୁ ଆକର୍ଷଣ କରି ଉପରକୁ ଟାଣି ନେଲାବେଳେ ଗୁହ୍ୟଦ୍ୱାରସ୍ଥିତ ଅପାନବାୟୁ ତାହାକୁ ତଳ ଆଡ଼କୁ ଆକର୍ଷଣ କରିଥାଏ । ଜୀବ ପ୍ରାଣବାୟୁ ଦ୍ୱାରା ଆକର୍ଷିତ ହୋଇ ନାସା ବିବରରେ ବହିର୍ଗତ ହେଲାବେଳେ 'ହଂ' ଧ୍ୱନି କରେ ଏବଂ ଅପାନ ବାୟୁଦ୍ୱାରା ଆକର୍ଷିତ ହୋଇ ଶରୀର ମଧ୍ୟକୁ ପ୍ରବେଶ କଲାବେଳେ 'ସଃ' ଧ୍ୱନି କରେ । ଏହା ଜୀବର ସ୍ୱାଭାବିକ ଧ୍ୱନି । "ହଂସଃସୋହଂ ଇତିମନ୍ତ୍ରଂ ଜୀବୋ ଜପତି ସର୍ବଦା" । ଏହା ହେଉଛି ଜୀବର ଅଜପାମନ୍ତ୍ର ଜପ । ଯୋଗଶାସ୍ତ୍ରରେ କୁହାଯାଇଛି ଜୀବ ଗୋଟିଏ ଦିବସରେ (ଦିନ ଓ ରାତି) ଏକୋଇଶ ହଜାର ଛଅ ଶହ ଥର ଏହି ଅଜପାମନ୍ତ୍ର ଉଚ୍ଚାରଣ କରିଥାଏ ।

# ତ୍ରିଲକ୍ଷ୍ୟ, ଷୋଡ଼ଶାଧାର ବ୍ୟୋମପଞ୍ଚକ ଓ ଷଡ଼ଚକ୍ର

ଯୋଗ ଚୂଡ଼ାମଣି ଉପନିଷଦରେ କୁହାଯାଇଅଛି ଯେଉଁବ୍ୟକ୍ତି ନିଜ ଦେହ ମଧ୍ୟରେ ଷଡ଼ଚକ୍ର, ଷୋଡ଼ଶ ଆଧାର ତ୍ରିଲକ୍ଷ୍ୟ ଓ ପଞ୍ଚାକାଶକୁ ଜାଣି ନାହାନ୍ତି ତାଙ୍କର ସିଦ୍ଧି କପରି ହେବ ।

ଷଡ଼ଚକ୍ରଂ ଷୋଡ଼ଶାଧାରଂ ତ୍ରିଲକ୍ଷ୍ୟଂ ବ୍ୟୋମ ପଞ୍ଚକଂ
ସ୍ୱଦେହେ ଯୋ ନ ଜାନାତି ତସ୍ୟ ସିଦ୍ଧିଃ କଥଂ ଭବେତ୍

(ସାଧନା ଖଣ୍ଡ)

ଯୋଗସାଧନା ପାଇଁ ଏଗୁଡ଼ିକ ସମ୍ବନ୍ଧରେ ଜ୍ଞାନ ଆବଶ୍ୟକ । ଏଠାରେ ପ୍ରଥମେ ଷୋଡ଼ଶାଧାର କଥା କୁହାଯାଉଛି ।

**ଷୋଡ଼ଶାଧାର ବା ଷୋଳ ଡ଼ମ୍ବରୁ—**

ତ୍ରିଶିଖ ବ୍ରାହ୍ମଣୋପନିଷଦରେ ଦେହ ମଧ୍ୟରେ ଅଠରଟି ମର୍ମସ୍ଥାନ ବା ଆଧାର ଥିବା କୁହାଯାଇଥିଲା ବେଳେ, ଶାଣ୍ଡିଲ୍ୟୋପନିଷଦରେ ଷୋଳଟି ଆଧାର କଥା କୁହାଯାଇଛି ।

ତ୍ରିଶିଖ ବ୍ରାହ୍ମଣୋପନିଷଦରେ ଜାନୁମୂଳସ୍ଥାନ ଏବଂ ହସ୍ତମୂଳସ୍ଥାନ ଏହିପରି ଦୁଇଟି ସ୍ଥାନରେ ଥିବା ଅଧିକ ଦୁଇଟି ଆଧାରର ବର୍ଣ୍ଣନା ଦିଆଯାଇଛି । ଅନ୍ୟ ଷୋଳଟି ଆଧାର ସ୍ଥାନର ବର୍ଣ୍ଣନା ସହିତ ଶାଣ୍ଡିଲ୍ୟୋପନିଷଦର ଷୋଳଟି ଆଧାର ସ୍ଥାନ ମଧ୍ୟରେ ପାର୍ଥକ୍ୟ କିଛି ନାହିଁ । ସେହି ଷୋଳଟି ଆଧାର ହେଉଛି—

୧ । ପାଦାଙ୍ଗୁଷ୍ଠ, ୨ । ଗୁଲ୍‌ଫ (ଗୋଇଠି), ୩ । ଜଙ୍ଘ, ୪ । ଜାନୁ, ୫ । ଗୁଦା (ମଳଦ୍ୱାର), ୬ । ଲିଙ୍ଗ, ୭ । ନାଭି, ୮ । ହୃଦୟ, ୯ । କଣ୍ଠ, ୧୦ । ତାଳୁ, ୧୧ । ନାସିକା, ୧୩ । ଆଖି, ୧୪ । ଭ୍ରୂଲତା ମଧ୍ୟ, ୧୫ । ଲଲାଟ, ୧୬ । ମସ୍ତକ ।

ଗୋରେଖନାଥଙ୍କ ମତରେ (ସିଦ୍ଧ ସିଦ୍ଧାନ୍ତ ପଦ୍ଧତି ଗ୍ରନ୍ଥରେ ବର୍ଣ୍ଣିତ) ପାଦାଙ୍ଗୁଷ୍ଠାଧାର, ମୂଳାଧାର, ଗୁଦାଧାର, ମେଢ୍ରାଧାର, ଉଡ୍‌ଡ଼ୀୟାନ, ନାଭ୍ୟାଧାର ହୃଦୟାଧାର, କଣ୍ଠାଧାର, ଘଣ୍ଟିକାଧାର, ତାଳୁ ଆଧାର, ଜିହ୍ୱାଧାର, ଭ୍ରୂମଧ୍ୟାଧାର, ନାସାଧାର, କପାଟାଧାର, ଲଲାଟାଧାର ଓ ବ୍ରହ୍ମରନ୍ଧ୍ରାଧାର ଏହି ୧୬ଟି ଆଧାର ଦେହ ମଧ୍ୟରେ ରହିଛି ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ଏହି ଷୋଡ଼ଶାଧାରକୁ ଷୋଳ ଡମ୍ବରୁ କୁହାଯାଇଥାଏ । ଯଥା—

ଷୋଡ଼ଶ ଡମ୍ବରୁ କଲ, କଣ୍ଠରୁ କଟିଯାଏ ଗର୍ଜିଲ
(ତୁଳାଭିଣା ୩ୟ ଅଧ୍ୟାୟ ଜଗନ୍ନାଥ ଦାସ)

"ଏ ଷୋଡ଼ଶ ଡମ୍ବରୁକୁ ଆଶ୍ରେ କରି ଏ ଶରୀରରେ ଧାରଣା ରହିଛି"
(ରୁଦ୍ରସୁଧାନିଧି)

ଦେହର ଏହି ଷୋଳଟି ସ୍ଥାନରେ ପ୍ରାଣବାୟୁ ଅବସ୍ଥାନ କରୁଥିବାରୁ ଏହାକୁ ଷୋଡ଼ଶାଧାର କୁହାଯାଇଥାଏ ।

## ତ୍ରିଲକ୍ଷ୍ୟ –

ମଣ୍ଡଳ ବ୍ରାହ୍ମଣୋପନିଷଦ୍‌ରେ କୁହାଯାଇଛି ଭ୍ରୂଦ୍ୱୟ ମଧ୍ୟରେ ତାରକବ୍ରହ୍ମ ଅବସ୍ଥାନ କରୁଛନ୍ତି । ଅଭ୍ୟାସ ଦ୍ୱାରା ତାଙ୍କୁ ଦେଖିବା ଉଚିତ । ତାଙ୍କ ଦର୍ଶନରୁ ସର୍ବପାପ ଚାଲିଯାଏ । କିପରି ତାଙ୍କୁ ଦେଖିବାକୁ ହେବ ସେ ବିଷୟରେ ଯେଉଁ ବର୍ଣ୍ଣନା ଏଥିରେ ଦିଆଯାଇଛି ତାହାର ସାରାଂଶ ଏଠାରେ ଦିଆଯାଉଛି । ପ୍ରଥମ ବ୍ରାହ୍ମଣ, ଦ୍ୱିତୀୟ ବ୍ରାହ୍ମଣ ଓ ଚତୁର୍ଥ ବ୍ରାହ୍ମଣ ଦ୍ରଷ୍ଟବ୍ୟ ।)

ତର୍ଜନୀ ଅଙ୍ଗୁଳିର ଅଗ୍ରଭାଗ ଦ୍ୱାରା କାନକୁ ବନ୍ଦ କଲେ ଦୁଇ କର୍ଣ୍ଣ ରନ୍ଧ୍ରରେ ଫୁତ୍କାର ଶବ୍ଦ ଶୁଭେ । ସେଥିରେ ଯେତେବେଳେ ମନ ସ୍ଥିର ହୁଏ । ସେତେବେଳେ ନେତ୍ର ମଧ୍ୟରେ ନୀଳ ଜ୍ୟୋତି ଦେଖାଦିଏ ଓ ତାହା ମଧ୍ୟ ହୃଦୟରେ ଦେଖାଦିଏ । ଏହି ଜ୍ୟୋତି କ୍ରମରେ ତିନି ପ୍ରକାର ରୂପ ନେଇଥାଏ । ତାହା ହେଉଛି ତ୍ରିଲକ୍ଷ୍ୟ । ତ୍ରିଲକ୍ଷ୍ୟ—ବହିର୍ଲକ୍ଷ୍ୟ, ମଧ୍ୟଲକ୍ଷ୍ୟ ଓ ଅନ୍ତର୍ଲକ୍ଷ୍ୟ ଭେଦରେ ତିନି ଭାଗରେ ବିଭକ୍ତ ।

୧ । ବହିର୍ଲକ୍ଷ୍ୟ—

ବହିର୍ଲକ୍ଷ୍ୟରେ ଦୃଷ୍ଟିର ଅସ୍ଥିରତା ହେତୁ ନାସାଠାରୁ, ଚାରି, ଛଅ, ଆଠ, ଦଶ ଏବଂ ବାର ଆଙ୍ଗୁଳି ଦୂରରେ ଯଥାକ୍ରମେ ନୀଳ, କଳା, ଲାଲ, ପୀତ ଏବଂ ଦୁଇ ରଙ୍ଗର ମିଶ୍ରଣ ଏହିପରି ଜ୍ୟୋତି ବା ପ୍ରକାଶଯୁକ୍ତ ଆକାଶ ଦେଖାଦିଏ ।

୨ । ମଧ୍ୟଲକ୍ଷ୍ୟ—

ମଧ୍ୟ ଲକ୍ଷ୍ୟରେ ବ୍ରହ୍ମଙ୍କର ଆକାଶତୁଲ୍ୟ ରୂପ ୫ ପ୍ରକାରରେ ଦେଖାଯାଇଥାଏ । ଏହାକୁ ପଞ୍ଚାକାଶ କୁହାଯାଇଥାଏ ।

ବ୍ରହ୍ମଙ୍କର ପଞ୍ଚାକାଶ ରୂପ ପ୍ରକାଶିତ ହେବା ପୂର୍ବରୁ ପ୍ରଥମେ ମଧ୍ୟ ଲକ୍ଷ୍ୟରେ ତାଙ୍କର ରୂପ ପ୍ରାତଃ କାଳର ସୂର୍ଯ୍ୟ, ଚନ୍ଦ୍ର ଓ ବହ୍ନି ଜ୍ୱାଳା ପରି ଝଲ ଝଲ ( ବିଜୁଳିର ଝଲକପରି ) ଦେଖାଯାଏ । ତତ୍ପରେ କ୍ରମରେ ୧ । ଆକାଶ ରୂପ— ସୂର୍ଯ୍ୟ ଚନ୍ଦ୍ର ବହ୍ନି, ଗୁଣ ରହିତ ଓ ବାହାର ଭିତର ଅନ୍ଧକାରମୟ ଆକାଶ ରୂପ ପରି ଦୃଷ୍ଟ ହୁଏ ।

୨ । ପରାକାଶରୂପ—ପ୍ରକାଶଯୁକ୍ତ ତାରା ମଣ୍ଡିତ ଗାଢ଼ ଅନ୍ଧକାରମୟ ଆକାଶ ପରିଦୃଷ୍ଟ ହୁଏ ।

୩ । ମହାକାଶରୂପ—ପ୍ରଳୟ କାଳର ଅଗ୍ନିଙ୍କ ସମ-ପ୍ରକାଶମାନ୍ ଆକାଶରୂପ ପରିଦୃଷ୍ଟ ହୁଏ ।

୪ । ତତ୍ତ୍ୱାକାଶ ରୂପ— ସର୍ବୋତ୍କୃଷ୍ଟ ଅଦ୍ୱିତୀୟ ସ୍ୱରୂପରେ ଅପରିମିତ କାନ୍ତିଯୁକ୍ତ ହୋଇ ଆକାଶରୂପ ଦେଖାଯାଏ ।

୫ । ସୂର୍ଯ୍ୟାକାଶ ରୂପ— କୋଟିସୂର୍ଯ୍ୟସମ ପ୍ରକାଶମାନ ଉଜ୍ଜ୍ୱଳ ଆକାଶରୂପ ଦୃଷ୍ଟିଗୋଚର ହୁଏ । ଏହି ଆକାଶରୂପ ଗୁଡ଼ିକ ହେଉଛି ବ୍ରହ୍ମଙ୍କର ଶୂନ୍ୟରୂପର ବିଭିନ୍ନ ରୂପ ।

୩ । ଅନ୍ତର୍ଲକ୍ଷ୍ୟ—

ଅନ୍ତର୍ଲକ୍ଷ୍ୟରେ (ଅର୍ଥାତ୍ ଦୃଷ୍ଟି ସମ୍ପୂର୍ଣ୍ଣ ସ୍ଥିରହୋଇ ସ୍ଥିର ମନରେ ଯୁକ୍ତ ପୂର୍ବକ ଲୟଭାବ ଆସିଲେ ) ବ୍ରହ୍ମ ଜଳସମ ଜ୍ୟୋତିରୂପ ଦେଖାଯାଆନ୍ତି । ସହସ୍ରଦଳ ପଦ୍ମର ଜଳସଦୃଶ ଏହି ଜ୍ୟୋତି ଅନ୍ତର୍ଲକ୍ଷ୍ୟ ହୁଅନ୍ତି । ବୁଦ୍ଧିରୂପୀ ଗୁମ୍ଫାରେ ସେହି ସର୍ବାଙ୍ଗ ସୁନ୍ଦର ପୁରୁଷଙ୍କର ସ୍ୱରୂପ ପ୍ରକଟିତ ହୁଏ ।

## ଷଡ଼ଚକ୍ର—

ଦେହ ମଧ୍ୟରେ ଯେପରି ବାସ୍ତରି ହଜାର ନାଡ଼ୀ ଓ ପ୍ରାଣବାୟୁ ରହିଛି, ସେହିପରି ଛଅଟି ଚକ୍ର ରହିଛି ପ୍ରତ୍ୟେକ ଯୋଗସାଧକ ଏହି ସମସ୍ତ ଚକ୍ରକୁ

ଜାଣିବା ଏକାନ୍ତ ଆବଶ୍ୟକ । ଶ୍ରୀତତ୍ତ୍ୱଚିନ୍ତାମଣି, ନିଗମତନ୍ତ୍ରସାର ଷଡ଼ଚକ୍ରନିରୂପଣ ଓ ପୂର୍ବୋକ୍ତ ବିଭିନ୍ନ ଉପନିଷଦମାନଙ୍କରେ ଏହି ଷଡ଼ଚକ୍ରର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳିଥାଏ, ଚନ୍ଦ୍ରମଣି ଦାସ ସୁଧାସାର ଗୀତାରେ ଲେଖିଛନ୍ତି—

ଗୁହ୍ୟଚକ୍ରେ ନେଇ ଛିଦ୍ରଚକ୍ରେ ଯୋଗ ନାଭିଚକ୍ରେ କରି ସ୍ଥିତ
ହୃଦଚକ୍ରେ ଜିଣି କଣ୍ଠଚକ୍ରେ ପୁଣି ଲଲାଟଚକ୍ରରେ ଯୁକ୍ତ

(ନବମ ବୋଲି)

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତିସାଧକବୃନ୍ଦ ଉପନିଷଦ ଓ ତନ୍ତ୍ରର ପରମ୍ପରାକୁ ଅନୁସରଣ କରି ଷଡ଼ଚକ୍ରର ବର୍ଣ୍ଣନା କରିଛନ୍ତି । ପାଠକମାନଙ୍କର ଅବଗତି ପାଇଁ ଏଠାରେ ସେହି ଷଡ଼ଚକ୍ରର ବିବରଣୀ ପ୍ରଦାନ କରାଯାଉଅଛି—

## ପ୍ରଥମଚକ୍ର - ମୂଳାଧାର ଚକ୍ର—

ଗୁହ୍ୟଦ୍ୱାର ଉପରକୁ ଓ ଲିଙ୍ଗମୂଳର ତଳକୁ ଯେଉଁସ୍ଥାନ ଅଛି, ତାହା ମୂଳାଧାର ଚକ୍ର ଅଟେ । ଏହା ଚତୁର୍ଦ୍ଦଳଯୁକ୍ତ ଏବଂ ପୀତବର୍ଣ୍ଣ ଅଟେ । ଏହାର ଚାରିଦଳରେ ଯଥାକ୍ରମେ ବ, ଶ, ଷ, ସ ଏହି ଚାରିଟି ବର୍ଣ୍ଣ ରହିଛି, ଏଗୁଡ଼ିକ ସ୍ୱର୍ଣ୍ଣ ବର୍ଣ୍ଣ ସଦୃଶ । ଏହି ଚକ୍ର ମଧ୍ୟରେ ଏକ ଚତୁଷ୍କୋଣଚକ୍ର ରହିଛି । ତାହା ମଧ୍ୟରେ ଥିବା ପଦ୍ମକର୍ଣ୍ଣିକାରରେ ପୃଥ୍ୱୀମଣ୍ଡଳ ବା ପୃଥ୍ୱୀତତ୍ତ୍ୱ ରହିଛି । ଏହା ଲଂ ବୀଜମନ୍ତ୍ରର ସ୍ଥାନ । ଏଠାରେ ଏକ ତ୍ରିକୋଣାକୃତି ସ୍ଥାନରେ ସ୍ୱୟମ୍ଭୂଲିଙ୍ଗ ( ବାଣଲିଙ୍ଗ ) କୁ ସାଢ଼େ ତିନିଥର ବେଷ୍ଟନକରି କୁଣ୍ଡଳିନୀ ଶକ୍ତି ନିଜ ମୁଖଦ୍ୱାରା ବ୍ରହ୍ମଦ୍ୱାରକୁ ( ସୁଷୁମ୍ନା ମାର୍ଗ ମଧ୍ୟସ୍ଥ ବ୍ରହ୍ମପଥ ) ଆବୃତ୍ତକରି ସୁପ୍ତାବସ୍ଥାରେ ଅବସ୍ଥାନ କରନ୍ତି । ଏହି ଚକ୍ରର ଅଧିଷ୍ଠାତା ଦେବତା ଗଣେଶ ଏବଂ ତାଙ୍କର ଶକ୍ତି ବଜ୍ରଗୁଣ୍ଡୀ ( ଭିନ୍ନଭିନ୍ନ ଗ୍ରନ୍ଥରେ ବିଭିନ୍ନ ଚକ୍ରର ଅଧିଷ୍ଠାତା ଅଧିଷ୍ଠାତ୍ରୀଙ୍କୁ ଭିନ୍ନଭିନ୍ନ ପ୍ରକାରରେ ବର୍ଣ୍ଣନା କରାଯାଇଅଛି । ) ଏହି ଚକ୍ରରେ କନ୍ଦର୍ପବାୟୁ ଅବସ୍ଥିତ ଏବଂ ଏହା ପ୍ରାଣ ଓ ଅପାନବାୟୁର ମିଳନସ୍ଥଳ । ଏଠାରୁ ଦୁଇଟି ନାଡ଼ୀ ବା ସ୍ନାୟୁସ୍ରୋତ ଦୁଇପାଦକୁ ଏବଂ ଗୋଟିଏ ନାଡ଼ୀ ମଳଦ୍ୱାରକୁ ଓ ଗୋଟିଏ ନାଡ଼ୀ ଊର୍ଦ୍ଧ୍ୱକୁ ପ୍ରବାହିତ । ଏହା ସୁଷୁମ୍ନା ନାଡ଼ୀର ଉଦ୍‌ଗମସ୍ଥଳ ।

ଏହି ଚକ୍ରକୁ ଧ୍ୟାନ କରିବା ଫଳରେ କୁଳକୁଣ୍ଡଳିନୀ ଶକ୍ତିର ଜାଗରଣ ଘଟେ ଏବଂ ଏହା ଫଳରେ ସମସ୍ତ ଭାଷା ଆୟତ୍ତ କରିବାର ଶକ୍ତି ଆସେ । ଏହା

ପୃଥ୍ୱୀତତ୍ତ୍ୱର ସ୍ଥାନ ହୋଇଥିବାରୁ ସାଧକର ଘ୍ରାଣଶକ୍ତି ବଢିଥାଏ । କେତେକ ଗ୍ରନ୍ଥରେ ଏହାକୁ କାମବୀଜ ବା କ୍ଲୀଂ ବୀଜ ମନ୍ତ୍ରର ସ୍ଥାନବୋଲି କୁହାଯାଇଛି ।

## ସ୍ୱାଧିଷ୍ଠାନ ଚକ୍ର—

ମୂଳାଧାରଚକ୍ର ଉପରକୁ ସ୍ୱାଧିଷ୍ଠାନଚକ୍ରର ସ୍ଥାନ । ପ୍ରାଣ ବା ଜୀବକୁ 'ସ୍ୱ' କୁହାଯାଏ । ଏହା ଜୀବ ବା 'ସ୍ୱ'ର ଅଧିଷ୍ଠାନ କ୍ଷେତ୍ର ହୋଇଥିବାରୁ ଏହା ସ୍ୱାଧିଷ୍ଠାନ ଚକ୍ର ନାମରେ ବିଦିତ ଏଠାରେ ଅପାନବାୟୁ ଅବସ୍ଥାନ କରେ । ଏହି ଚକ୍ର ଷଡ଼ଦଳ ବିଶିଷ୍ଟ । ଦଳମାନଙ୍କରେ ବ, ଭ, ମ, ଯ, ର, ଲ, ଏହି ବର୍ଣ୍ଣଗୁଡ଼ିକ ଅବସ୍ଥିତ । ଏହା ଜଳତତ୍ତ୍ୱର ସ୍ଥାନ ଏବଂ ଚକ୍ରର ରଙ୍ଗ ରକ୍ତବର୍ଣ୍ଣ । ଏହି ଚକ୍ର ମଧ୍ୟରେ ଅର୍ଦ୍ଧଚନ୍ଦ୍ରାକୃତି ମଣ୍ଡଳରେ ଜଳମଣ୍ଡଳ ଅବସ୍ଥିତ । ଏହା 'ବଂ' ବୀଜମନ୍ତ୍ରର ସ୍ଥାନ । ଏହି ଚକ୍ରର ଅଧିଷ୍ଠାତା ଦେବତା ହେଉଛନ୍ତି କାମଦେବ ଏବଂ ତାଙ୍କର ଶକ୍ତି ରତି । ଏଠାରୁ 'ଛ'ଟି ସ୍ନାୟୁସ୍ରୋତ ଦୁଇ ଅଣ୍ଡକୋଷ, ଲିଙ୍ଗ ଓ ଦୁଇ ବୃକ୍କକୁ ପ୍ରବାହିତ । ଏହି ଚକ୍ରରୁ ଦେହକୁ ରସପ୍ରବାହ ଘଟେ । ଏହିଚକ୍ରରେ ମନ ସ୍ଥିର ହେଲେ କାମକ୍ରୋଧାଦି ନଷ୍ଟହୁଏ । ମାୟା, ମୋହ ଆଦି ନାଶହୋଇ ଜ୍ଞାନରୂପକ ସୂର୍ଯ୍ୟର ଉଦୟ ହୁଏ ଏବଂ ସାଧକର ଗଦ୍ୟ ପଦ୍ୟ ରଚନା କରିବା ଶକ୍ତି ଆସିଥାଏ ।

## ମଣିପୁର ଚକ୍ର

ଏହି ଚକ୍ର ନାଭି ଦେଶରେ ଅବସ୍ଥିତ । ଏହା ଦଶଦଳ ବିଶିଷ୍ଟ ଏବଂ ଦଳମାନଙ୍କରେ ଡ଼, ଢ, ଣ, ତ, ଥ, ଦ, ଧ, ନ, ପ, ଫ ଏହି ବର୍ଣ୍ଣ ଗୁଡ଼ିକ ଅବସ୍ଥିତ । ଏହି ଚକ୍ରର ରଙ୍ଗ ଘନମେଘତୁଲ୍ୟ କୃଷ୍ଣବର୍ଣ୍ଣ । ଉକ୍ତ ଚକ୍ର ମଧ୍ୟସ୍ଥ କର୍ଣ୍ଣିକାରେ ତ୍ରିକୋଣ ଏବଂ ତ୍ରିକୋଣ ମଧ୍ୟରେ ଲାଲରଙ୍ଗର ଅଗ୍ନିମଣ୍ଡଳ ଅବସ୍ଥିତ । ଏହା 'ରଂ' ବହ୍ନିବୀଜର ସ୍ଥାନ ହୋଇଥିବାରୁ ଏହି ଚକ୍ର ଦେହର ଉତ୍ତାପ ରକ୍ଷାକରିବା ସହିତ ସମସ୍ତ ଖାଦ୍ୟ ପରିପାକରେ ସାହାଯ୍ୟ କରିଥାଏ । ଏଠାରୁ ଦଶଟି ନାଡ଼ୀ ପାକସ୍ଥଳୀ, ଯକୃତ, ବୃହଦନ୍ତ୍ର ଓ କ୍ଷୁଦ୍ରଦନ୍ତ୍ରକୁ ପ୍ରବାହିତ ହୋଇଥାଏ । ଏହି ଚକ୍ରର ଅଧିଷ୍ଠାତା ଦେବତା ବ୍ରହ୍ମା ଏବଂ ଶକ୍ତି ହେଉଛନ୍ତି ସାବିତ୍ରୀ । ଏହି ଚକ୍ରରେ ମନ ସ୍ଥିର ହେଲେ ଉତ୍ତାପ କଷ୍ଟ, ଓ କ୍ଷୁଧାତୃଷାକୁ ଜୟ କରିହୁଏ । ସାଧକର ସୃଷ୍ଟି ଓ ସଂହାର କରିବାର ଶକ୍ତିଆସେ ଏବଂ ତାଠାରେ ଜ୍ଞାନର ବିକାଶ ଘଟେ । ଏଠାରେ ସମାନବାୟୁ ଅବସ୍ଥାନ କରେ ।

## ଅନାହତ ଚକ୍ର –

ଅନାହତ ଚକ୍ର ହୃଦଦେଶରେ ଅବସ୍ଥିତ ଏବଂ ଏହା ବନ୍ଧୁକପୁଷ୍ପ ବା ବଧୂଲି ଫୁଲର ରଙ୍ଗ ବିଶିଷ୍ଟ । ଏଥିରେ ଦ୍ୱାଦଶ ଦଳ ରହିଛି । ପ୍ରତ୍ୟେକ ଦଳରେ ଯଥାକ୍ରମେ କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ, ଟ, ଠ, ବର୍ଣ୍ଣ ଅବସ୍ଥିତ । ଏହା ବାୟୁ ମଣ୍ଡଳର ସ୍ଥାନଅଟେ । ଏହି ବାୟୁମଣ୍ଡଳ ମଧ୍ୟସ୍ଥିତ ତ୍ରିକୋଣ ସ୍ଥାନ ମଧ୍ୟରେ 'ଯଂ' ବାୟୁବୀଜ ଅବସ୍ଥିତ । ଏଠାରୁ ବାରଟି ନାଡ଼ୀ, ଦୁଇ ଫୁସ୍ ଫୁସ୍, ହୃଦ୍‌ଯନ୍ତ୍ର, କଣ୍ଠନାଳୀ, ଦୁଇନାସା, ମୁଖଚହ୍ୱରକୁ ପ୍ରବାହିତ ହୋଇଛି ଏହି ଚକ୍ର ମଧ୍ୟ ଭାଗରେ ଥିବା ତ୍ରିକୋଣ ମଧ୍ୟରେ ତପ୍ତସ୍ୱର୍ଣ୍ଣବର୍ଣ୍ଣର ଲିଙ୍ଗ ଅବସ୍ଥିତ । ଲିଙ୍ଗଉପରେ ଅର୍ଦ୍ଧଚନ୍ଦ୍ରାକାର ବିନ୍ଦୁ । ତାହାତଳେ ସ୍ଥିରଦୀପଶିଖା ପରି ହଂସରୂପ ଜୀବ ଆତ୍ମା ଅବସ୍ଥିତ ।

ଧ୍ୟାନବିନ୍ଦୁ ଉପନିଷଦରେ କୁହାଯାଇଛି— ହୃଦୟସ୍ଥିତ ଅନାହତ ଚକ୍ର ମଧ୍ୟରେ ଥିବା ଅଷ୍ଟଦଳ ପଦ୍ମ ଉପରେ ଆତ୍ମା ଜ୍ୟୋତିର୍ମୟ ଅଣୁରୂପରେ ବିରାଜିତ । ଏଠାରେ ପ୍ରାଣବାୟୁ ଅବସ୍ଥାନ କରେ । ପଦ୍ମର ଅଷ୍ଟଦଳ ଆତ୍ମା ଠାରେ ଆଠପ୍ରକାର ବୃତ୍ତିର ପ୍ରକାଶ କରିଥାଏ । ପୂର୍ବ ଦଳରେ ପୁଣ୍ୟମତି, ପୂର୍ବଦକ୍ଷିଣରେ ନିଦ୍ରା ଓ ଆଳସ୍ୟ ଦକ୍ଷିଣରେ କ୍ରୁରମତି, ଦକ୍ଷିଣପଶ୍ଚିମରେ ପାପମତି, ପଶ୍ଚିମରେ କ୍ଷୁଦ୍ରତା, ଉତ୍ତର ପଶ୍ଚିମରେ ଗମନ କରିବା ବୁଦ୍ଧି, ଉତ୍ତରରେ ରତି ଓ ପ୍ରୀତି ଏବଂ ଉତ୍ତର ପୂର୍ବରେ ଦ୍ରବ୍ୟଗ୍ରହଣ ଆଦି ଆଠପ୍ରକାର ବୃତ୍ତି ରହିଛି । ଜୀବାତ୍ମା ଯେଉଁ ଦଳରେ ରହେ ସେହିଦଳ ବୃତ୍ତି ତା'ଠାରେ ପ୍ରକାଶପାଏ । ପଦ୍ମର କେନ୍ଦ୍ରସ୍ଥଳରେ ସ୍ଥିତ ଜୀବାତ୍ମାଠାରେ ଜାଗ୍ରତ, ସ୍ୱପ୍ନ ସୁଷୁପ୍ତି ଓ ତୁରୀୟାବସ୍ଥାର ପ୍ରକାଶ ଘଟେ ।

ଏହି ଚକ୍ରରେ ମନ ସ୍ଥିର ରହିଲେ ସାଧକ କର୍ମକୁଶଳ ପୂଜ୍ୟ ଓ ଜିତେନ୍ଦ୍ରିୟ ହୁଏ । ତାହାର ମନସ୍ଥିର ହୋଇଥାଏ ଏବଂ ଅତି ଦୁଷ୍କର କାର୍ଯ୍ୟକୁ ସହଜରେ ସମ୍ପାଦନ କରିଥାଏ । ଏହି ଚକ୍ର ଜୟକଲେ ଆକାଶରେ ଉଡ଼ିବାର ସାମର୍ଥ୍ୟ ଆସିଥାଏ ।

## ବିଶୁଦ୍ଧ ଚକ୍ର—

ବିଶୁଦ୍ଧ ଚକ୍ର କଣ୍ଠଦେଶରେ ଅବସ୍ଥିତ । ଏଠାରେ ଜୀବ ଶୁଦ୍ଧିତା ପ୍ରାପ୍ତ ହେଉଥିବାରୁ ଏହା ବିଶୁଦ୍ଧ ଚକ୍ରନାମରେ କଥିତ । ଏହି ଚକ୍ରର ରଙ୍ଗ ଧୂମ୍ରବର୍ଣ୍ଣ ଏବଂ ଏହା ଷୋଡଶ ଦଳବିଶିଷ୍ଟ । ପ୍ରତ୍ୟେକଦଳରେ ଯଥାକ୍ରମେ ଅ, ଆ, ଇ, ଈ,

ଈ,ଉ, ଊ,ଋ, ଌ,ୡ, ଏ,ଐ, ଓ, ଔ, ଅଂ,ଅଃ ଏହି ୧୬ଟି ବର୍ଣ୍ଣ ଅବସ୍ଥିତ । ଏହିଚକ୍ର ଆକାଶତତ୍ତ୍ୱର ସ୍ଥାନ । ଶ୍ୱେତବର୍ଣ୍ଣର ଆକାଶମଣ୍ଡଳ ମଧ୍ୟସ୍ଥିତ ତ୍ରିକୋଣ ମଧ୍ୟରେ 'ହଂ' ଆକାଶବୀଜ ଅବସ୍ଥିତ । ଏହି ଚକ୍ରର ଅଧିଷ୍ଠାତା ଦେବତା ଶିବ ଏବଂ ଅଧିଷ୍ଠାତ୍ରୀ ଦେବୀ ପାର୍ବତୀ । ଏଠାରେ ଜୀବର ହଂସଲୋକଜ୍ଞାନର ଉଦୟ ହୋଇଥାଏ । ଏଠାରୁ ୧୬ ଟି ନାଡ଼ୀ ପାଟି ଦନ୍ତମୂଳ, ଜିହ୍ୱା ଓ ଜିହ୍ୱାମୂଳକୁ ପ୍ରବାହିତ । ଏଠାରେ ବ୍ୟାନ ନାମକ ବାୟୁ ଅବସ୍ଥାନ କରେ ।

ଏହି ଚକ୍ରରେ ମନ ସ୍ଥିର ରହିବା ଫଳରେ ବିନାପଠନରେ ସର୍ବଶାସ୍ତ୍ରଜ୍ଞାନ ଆସିଥାଏ । ସେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ କଥା ଜାଣିପାରେ । ସେ ସେ ରୋଗଶୋକର ଶିକାର ହୁଏନାହିଁ । ତାର ଚିତ୍ତ ଅବିଚଳିତ ରହେ ଓ ସେ ଶାନ୍ତ ଲଭକରେ ଏବଂ ଦୀର୍ଘଜୀବୀ ହୁଏ । ଏହିଠାରୁ ସ୍ଥୂଳପ୍ରପଞ୍ଚ ଶେଷହୁଏ ବା ପୃଥ୍ୱୀ, ଜଳ, ଅଗ୍ନି, ବାୟୁ ଓ ଆକାଶ ତତ୍ତ୍ୱ ଶେଷ ହୁଏ ।

## ଆଜ୍ଞାଚକ୍ର —

ଭ୍ରୂଦ୍ୱୟ ମଧ୍ୟରେ ଶ୍ୱେତବର୍ଣ୍ଣର ଆଜ୍ଞାଚକ୍ର ଅବସ୍ଥିତ । ଏହା ଦ୍ୱିଦଳ ବିଶିଷ୍ଟ ଏବଂ 'ହ' ଓ 'କ୍ଷ' ଏହି ଦୁଇବର୍ଣ୍ଣ ଦୁଇଦଳରେ ଅବସ୍ଥିତ । ଏହା ମନର ସ୍ଥାନ । ଏହିଠାରୁ ଆଦେଶ ଲଭକରି ସମସ୍ତ ନାଡ଼ୀ ବା ସ୍ନାୟୁସ୍ରୋତ ବିଭିନ୍ନ କାର୍ଯ୍ୟ କରୁଥିବାରୁ ଏହାକୁ ଆଜ୍ଞାଚକ୍ର କୁହାଯାଇଥାଏ । ଏହି ସ୍ଥାନରେ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀର ମିଳନ ଘଟିଥିବାରୁ ଏହାକୁ ତ୍ରିକୂଟ ବା ତ୍ରିବେଣୀ କୁହା-ଯାଇଥାଏ । ଏଠାରେ ଯୋନିମୁଦ୍ରାଦ୍ୱାରା ସାଧନା କଲେ ପ୍ରଣବର ଜ୍ଞାନ ମିଳିଥାଏ । କାରଣ ଏହା ପ୍ରଣବର ଆଧାର । ଯୋନିମୁଦ୍ରା କରିବାକୁ ହେଲେ ଗୁହ୍ୟଦ୍ୱାରକୁ ବାମପାଦର ଗୋଇଠିରେ ଏବଂ ଡାହାଣପାଦକୁ ଲିଙ୍ଗମୂଳରେ ରଖି ଉପବେଶନ କରିବାକୁ ପଡ଼ିଥାଏ ତାହାପରେ ସଳଖ ବସି କାକୀମୁଦ୍ରାରେ ( କାଉପରି ମୁହଁକରି ) ଦୁଇକାନକୁ ଦୁଇହାତର ବୁଢ଼ାଆଙ୍ଗୁଠିରେ, ଦୁଇଆଖିକୁ ଦୁଇହାତର ଦୁଇ ତର୍ଜନୀରେ ଦୁଇନାସାପୁଡ଼ାକୁ ମଧ୍ୟମା ଆଙ୍ଗୁଳିରେ ଓ ପାଟିକୁ ଅନାମିକା ଓ କନିଷ୍ଠା ଆଙ୍ଗୁଳିରେ ଚାପିଧରିବାକୁ ହୁଏ । ତତ୍ପରେ ପ୍ରାଣାୟାମ ଦ୍ୱାରା ରେଚକ ପୂରକ କରିବାକୁ ହୋଇଥାଏ । ଏହିପରି କରିବା ଦ୍ୱାରା ଇନ୍ଦ୍ରିୟଗମନମାର୍ଗ ବନ୍ଦହୋଇ ମନସ୍ଥିର ହୋଇଥାଏ । ମନରୁ ସ୍ଥିରତା ଆସିଲେ ଉନ୍ମନୀଭାବ ଆସିଥାଏ । ଏହି ଅବସ୍ଥାରେ ମନର ମନୋଭାବ ନଷ୍ଟ ହୋଇଥାଏ । ଏହି ଚକ୍ର ହେଉଛି ଶ୍ରୀଗୁରୁଦେବଙ୍କର ସ୍ଥାନ । ଏହି ସ୍ଥାନରୁ ସୂକ୍ଷ୍ମ ପ୍ରପଞ୍ଚ ହୁଏ । ଏହି ସ୍ଥାନରେ

ସୂକ୍ଷ୍ମମନ ସହିତ ବୁଦ୍ଧି ପ୍ରକୃତି ଓ ଅହଙ୍କାର ସୂକ୍ଷ୍ମଭାବରେ ଅବସ୍ଥିତ । ଚନ୍ଦ୍ରମଣି ଦାସ ସୁଧାସାରଗୀତାରେ ଲେଖିଛନ୍ତି– ଉନମନା ମନ ଲଲାଟଚକ୍ରରେ ରଖିଣ 'କଣ୍ଠବୁଧାନ' (୧୧ଶ ବୋଲି) ।

ଆଜ୍ଞାଚକ୍ର ଧ୍ୟାନ ଫଳରେ ସିଦ୍ଧିଆସିଲେ ସାଧକ ଶୀଘ୍ର ଦୂରଯାତ୍ରା କରିପାରେ ଓ ଅନ୍ୟଶରୀରରେ ପ୍ରବେଶ କରିପାରେ । ସେ ସର୍ବଶାସ୍ତ୍ରଜ୍ଞ ହୋଇଥାଏ ଓ ତାହାଠାରେ ଆତ୍ମଜ୍ଞାନର ବିକାଶ ଘଟିଥାଏ ।

## ବଙ୍କନାଳ —

ଆଜ୍ଞାଚକ୍ର ଉପରେ ସହସ୍ରଦଳଚକ୍ର ଅବସ୍ଥିତ । ଆଜ୍ଞାଚକ୍ରରୁ ସହସ୍ର-ଦଳଚକ୍ରକୁ ଯେଉଁ ସୂକ୍ଷ୍ମମାର୍ଗ ଅଛି ତାହାକୁ ବଙ୍କନାଳ କୁହାଯାଇଥାଏ । ଓଡ଼ିଆ ଜ୍ଞାନମିଶ୍ରାଭକ୍ତି ସାହିତ୍ୟ, ନାଥସାହିତ୍ୟ ଓ ସନ୍ଥସାହିତ୍ୟରେ ଏହି ବଙ୍କନାଳର ବହୁଳ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଓଡ଼ିଆ କବି ଦ୍ୱାରିକା ଦାସ ଲେଖିଛନ୍ତି—

ଚନ୍ଦ୍ରର ଉପରେ ଯେ ନାସାବିବର ଅଛଇ
ନିରଞ୍ଜନ ପାଟଣାକୁ ବାଟ ସେହି ଦେଇ
ବଙ୍କନାଳ ନାମଗୋଟି ଅଟଇ ତାହାର
ପରମ ହଂସ ତହିଁ କରନ୍ତି ବିହାର ।

( ଶିବପୁରାଣ )

ବଙ୍କନାଳପରେ ବାସ କରି ଅଛି ଆତ୍ମଜ୍ଞାନ ହଂସପକ୍ଷୀ
ଅବନା ଅକ୍ଷରେ ଅଜପା ମନ୍ତ୍ରରେ ଜପିଲେ ତାହାକୁ ଦେଖି ।

( ଚନ୍ଦ୍ରମଣିଦାସଙ୍କ ସୁଧାସାରଗୀତା, ଦ୍ୱିତୀୟ ବୋଲି )

## ସହସ୍ରାର ଚକ୍ର —

ଦେହ ମଧ୍ୟରେ ଥିବା ଷଡ଼ଚକ୍ର ଆଜ୍ଞାଚକ୍ରଠାରେ ଶେଷ ହୁଏ । ଏହାପରେ ସହସ୍ରାରଚକ୍ର ବା ସହସ୍ରଦଳଚକ୍ର ଅବସ୍ଥିତ । ଯୋଗସାଧନାରେ ସିଦ୍ଧିପାଇଁ ଏହା ଏକ ଗୁରୁତ୍ୱ ପୂର୍ଣ୍ଣ ଚକ୍ର ।

ସହସ୍ରଦଳ କମଳର କର୍ଣ୍ଣିକା ହେଉଛି ଚନ୍ଦ୍ରମଣ୍ଡଳର ସ୍ଥାନ । ଚନ୍ଦ୍ର-ମଣ୍ଡଳ ପରେ ସୂର୍ଯ୍ୟମଣ୍ଡଳ ଓ ଉପରେ ମହାବାୟୁମଣ୍ଡଳ ଅବସ୍ଥିତ । ଯୋଗ ସାଧନାରେ ସିଦ୍ଧିପାଇଁ ଏହା ଏକ ଗୁରୁତ୍ୱ ପୂର୍ଣ୍ଣ ଚକ୍ର ।

ସହସ୍ରଦଳ କମଳର କର୍ଣ୍ଣିକା ହେଉଛି ଚନ୍ଦ୍ରମଣ୍ଡଳର ସ୍ଥାନ । ଚନ୍ଦ୍ରମଣ୍ଡଳ ପରେ ସୂର୍ଯ୍ୟମଣ୍ଡଳ ଓ ତତ୍ପରେ ମହାବାୟୁ ମଣ୍ଡଳ ଅବସ୍ଥିତ । ଏହାକୁ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତସାହିତ୍ୟରେ ଯଥାକ୍ରମେ ଗୋଲହାଟ, କାଉଁରୀପାଟଣା ଓ ହଂସସରୋବର କୁହାଯାଇଅଛି, ଏହାପରେ ଆରମ୍ଭ ହୁଏ ବ୍ରହ୍ମରନ୍ଧ୍ର ଯାହାକୁ ଓଡ଼ିଆ ସାଧକ ଭ୍ରମରଗୁମ୍ଫା କହନ୍ତି, କାରଣ ଏଠାରୁ ଭ୍ରମରର ଗୁଞ୍ଜନ ପରି ଅନାହତ ନାଦ ସ୍ଫୁରିତ ହେଉଥାଏ, କେତେକ ସ୍ଥଳରେ ଏହାକୁ ଶ୍ରୀକୃଷ୍ଣଙ୍କ ବଂଶୀଧ୍ୱନି ସ୍ଫୁରଣ ସ୍ଥାନ କୁହାଯାଇଛି ।

ସଖୀ ଗୋ ! ଅଣ ହୃଦୟୁ ତହିଁ
ଅହର୍ନିଶି ବଂଶୀ ଧ୍ୱନି ଶୁଭଇ
(ଅଚ୍ୟୁତାନନ୍ଦ ରଚନାବଳୀ ଗ୍ରନ୍ଥାସଖଣ୍ଡ ପୃଷ୍ଠ)

ଦ୍ୱାଦଶଦାସ ଶିବପୁରାଣରେ ଭ୍ରମର ଗୁମ୍ଫାର ଅର୍ଥ ବୁଝାଇବାକୁ ଯାଇ ଲେଖିଛନ୍ତି —

ତଥିର ଉପରେଟି ଅଟଇ ନିଗମ ଗୁମ୍ଫାଘର
ପଶି ଆତଯାତ ତହିଁ ହୁଅଇ ଭ୍ରମର
ପଞ୍ଚାଶ ପାଖୁଡ଼ା ଫୁଲ ବାସନା ଘେନଇ
ଫେରି ଯାଇ ଭ୍ରମର ସେ ଗୁମ୍ଫାରେ ପଶଇ
( ଶି. ପୁ. ପୃ ୪୧ )

ଅରକ୍ଷିତ ଶିବ ସୁଧାରସାମୃତ ଗୀତାରେ ଲେଖିଛନ୍ତି—

ଶ୍ରୀହରି ବୋଇଲେ ତୋତେ ଦେଉଅଛୁ କହି
ଅନାହତ ଗୁମ୍ଫା ବୋଲି ଶ୍ରବଣ ଅଟଇ

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ଯେଉଁ ଗୋଲହାଟର ବର୍ଣ୍ଣନା କରାଯାଇଛି ତାହା ଗୋରେଖନାଥଙ୍କ 'ସିଦ୍ଧସିଦ୍ଧାନ୍ତ ପଦ୍ଧତି'ରେ ଉଲ୍ଲେଖ ଥିବା ଗୋଲ୍ଲାଟ ମଣ୍ଡପ । ଗୋଲ୍ଲାଟ ଏକ ହିନ୍ଦୀ ଶବ୍ଦ । ଏହାର ଅର୍ଥ ଉଜ୍ଜ୍ୱଳ ଆଲୋକ । ତେଣୁ ଓଡ଼ିଆରେ ବର୍ଣ୍ଣିତ ଗୋଲହାଟ ହେଉଛି ଏକ ଉଜ୍ଜ୍ୱଳ ଆଲୋକ ପୁର । ଏହା ଗୋଲ୍ଲାଟ ଶବ୍ଦରୁ ଆସିଥିବା ଅନୁମେୟ ।

ସହସ୍ରଦଳ କମଳର କର୍ଣ୍ଣିକା ମଧ୍ୟରେ ଯେଉଁ ଚନ୍ଦ୍ରମଣ୍ଡଳର ବର୍ଣ୍ଣନା କରାଯାଇଛି ତାହା ଓଡ଼ିଆ ସାହିତ୍ୟରେ ମଣିମଣ୍ଡପୁର, ମଣିବେଦୀ, ଗୋଲହାଟ ରୂପରେ ବର୍ଣ୍ଣିତ ହୋଇଛି । ତନ୍ତ୍ରଗ୍ରନ୍ଥ ଓ ଯୋଗ ଗ୍ରନ୍ଥର ବର୍ଣ୍ଣନା ଅନୁଯାୟୀ—

ଏଠାରେ ଏକ ତ୍ରିକୋଣ ଅଛି ଏବଂ ତ୍ରିକୋଣ ମଧ୍ୟରେ ଏକ ବିନ୍ଦୁ ଶୂନ୍ୟ ରୂପରେ ପ୍ରକାଶ ହୁଏ । ଏହି ବିନ୍ଦୁ ଅତି ସୂକ୍ଷ୍ମ ଏବଂ କେଶାଗ୍ରର କୋଟିଭାଗରୂପୀ ହେତୁ ଅତର୍କ୍ୟଗମ୍ୟ ଏହା ସାଧକ ଦୃଷ୍ଟିରୁ କେବେ ତିରୋହିତ ହୋଇ କେବେ ଆବିର୍ଭୂତ ହେଉଥାଏ । ଯୋଗସାଧକମାନଙ୍କ ପାଇଁ ଏହି ବିନ୍ଦୁ ହେଉଛି ପରମଧ୍ୟେୟ ।

ତ୍ରିକୋଣଂ ତସ୍ୟାନ୍ତଃ ସ୍ଫୁରତି ଚ ସତତ ବିଦ୍ୟୁତାକାରରୂପଂ
ତଦନ୍ତଃ ଶୂନ୍ୟଂ ତତ୍ ସକଳସୁରଗଣୈଃ ସେବିତଞ୍ଚାତିଗୁପ୍ତମ୍, ୪୨,

(ଶ୍ରୀତତ୍ତ୍ୱଚିନ୍ତାମଣି)

ଏହି ବିନ୍ଦୁ ଦର୍ଶନରେ ପୂର୍ବୋକ୍ତ ଚନ୍ଦ୍ରମଣ୍ଡଳର ଷୋଳକଳା ଦୃଶ୍ୟ ହୋଇଥାଏ ।

ଅଚ୍ୟୁତାନନ୍ଦ ଏହାର ବର୍ଣ୍ଣନା ଦେଇ ଲେଖିଛନ୍ତି—

ଅମାବାସ୍ୟା ନିଶିରେ ଷୋଳକଳାଚନ୍ଦ୍ର
ସର୍ବଦା ନିଶିରେ ଚନ୍ଦ୍ର ଦର୍ଶନ
ଅହର୍ନିଶି ସନ୍ଧି ପ୍ରଦୀପ ଜଳଇ
ଦୀପତେଜେ ଅଣଗ୍ରୁଣ ପବନ,

(ଅଚ୍ୟୁତାନନ୍ଦ ରଚନାବଳୀ, କବିତାଖଣ୍ଡ ପୃ ୬୩)

ଭିକ୍ଷାରୀଦାସ ମଧ୍ୟ ଜ୍ଞାନସାଗର ଗ୍ରନ୍ଥରେ ଲେଖିଛନ୍ତି—

ଅମାବାସ୍ୟା ନିଶିରେ ଶଶୀ । ଷୋଡ଼ଶ କଳାରେ ପ୍ରକାଶି
ସର୍ବଦା ନିଶିରେ ତପନ । ଉଦୟ ହୁଅନ୍ତି ଗଗନ

(ଜ୍ଞା. ସା. ୪ର୍ଥ ବୋଲି)

ବିନ୍ଦୁସ୍ଥାନ ହେଉଛି ମୋକ୍ଷଦ୍ୱାର । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଏହି ବିନ୍ଦୁକୁ ଶୂନ୍ୟବ୍ରହ୍ମ ଅଲେଖ, ନିରଞ୍ଜନ ଓ ନିର୍ଗୁଣ ବ୍ରହ୍ମ ରୂପେ ବର୍ଣ୍ଣନା କରାଯାଇଛି ।

ସହସ୍ରଦଳ ଚକ୍ରର କର୍ଣ୍ଣିକାରରେ ଥିବା ଚନ୍ଦ୍ରମଣ୍ଡଳ ଅତିକ୍ରମ କରିଗଲେ ଯେଉଁ ସୂର୍ଯ୍ୟମଣ୍ଡଳ ପଡ଼େ, ସେହି ସୂର୍ଯ୍ୟମଣ୍ଡଳର ସୂର୍ଯ୍ୟ ହେଉଛନ୍ତି ହଂସ, ସେ

ଜ୍ୟୋତିର୍ମୟବ୍ରହ୍ମ । ଏହାଙ୍କ ଦର୍ଶନରେ ତତ୍ତ୍ୱମସିଜ୍ଞାନ ଉଦୟ ହୁଏ ଅର୍ଥାତ୍ ସାଧକଠାରେ ଆତ୍ମାପରମାତ୍ମାର ଅଭେଦଜ୍ଞାନ ଜାତହୁଏ । ଯେହେତୁ ଏହା ସାଧକ ଭିତରେ ସୋହଂ ହଂସଃ (ଅହଂ ସଃ) ଅର୍ଥାତ୍ ସେ, ମୁଁ ଓ ମୁଁ, ସେ ଏହି ଏକାତ୍ମଭାବ ସୃଷ୍ଟି କରେ ତେଣୁ ଏହାକୁ ହଂସ କୁହାଯାଇଛି । ସୂର୍ଯ୍ୟ ମଣ୍ଡଳ ଉପରେ ଥିବା ମହାବାୟୁମଣ୍ଡଳ ହେଉଛି ହଂସର ବିହାରସ୍ଥଳ, ଏହାକୁ ମହା ବାୟୁମଣ୍ଡଳ କହିବାର ତାତ୍ପର୍ଯ୍ୟ ହେଉଛି, ସାଧକ ମୂଳାଧାର ଚକ୍ର ଓ ବିଭିନ୍ନ ଚକ୍ରରୁ ପ୍ରାଣ ଅପାନ ଉଦାନ, ବ୍ୟାନ ଓ ସମାନ ବାୟୁକୁ ଆଣି ଏଠାରେ ପୁଞ୍ଜୀଭୂତ କରିଥାଏ । ସାଙ୍କେତିକ ଭାଷାରେ ଏହି ବାୟୁମଣ୍ଡଳକୁ ହଂସ ସରୋବର କୁହାଯାଇଛି ।

ଅଚ୍ୟୁତାନନ୍ଦ ଲେଖିଛନ୍ତି—

ଷୋଳସ୍ତ୍ରୀ ଗୋଟିକେ ଗୃହ ଚୌରସ
ଡିମ୍ବ ପାଡ଼ିଅଛି ଅଣ୍ଡିରା ହଂସ
(ଅଚ୍ୟୁତାନନ୍ଦ ରଚନାବଳୀ, କବିତା ଖଣ୍ଡ ୬୪ପୃ)

ଚନ୍ଦ୍ରମଣି ଦାସ ସୁଧାସାର ଗୀତାରେ ଲେଖିଛନ୍ତି—

ତାହାଙ୍କ ପାଦରେ ଭକତ ଜଣେ କାଉଁସ୍ତ ପାଟଣା ଜଣି
ବଙ୍କନାଳେ ଯାଇଁ ପ୍ରବେଶ ହୋଇବ ଯହିଁପିଏ ହଂସ ପାଣି
ରୂପବର୍ଣ୍ଣିତାର କିଛି ହିଁ ନ ଦିଶେ ନାମ ତା ଅଜାତ ପକ୍ଷୀ
ସୁସ୍ପୃକ୍ତି ଭେଦରେ ଧ୍ୟାନଧାରଣାରେ ଜ୍ଞାନ ନେତ୍ରେ ତାକୁ ଦେଖି
(ସୁଧାସାର ଗୀତା ୧୧ଶ ବୋଲି)

ସହସ୍ରଦଳଚକ୍ରରେ ଅମାକଳା ଓ ନିର୍ବାଣକଳା ଏହି ପର ଦୁଇଟି କଳାର ଦର୍ଶନ ହୋଇଥାଏ । ଅମାକଳା ହେଉଛି ଚନ୍ଦ୍ରର ଷୋଳକଳା ବା ଶୂନ୍ୟାତ୍ମକ ବିନ୍ଦୁରୂପ ବ୍ରହ୍ମଙ୍କର ଅହ୍ଲାଦକର ବିପୁଳ ଜ୍ୟୋତି । ବୃହଦାରଣ୍ୟକ ଉପନିଷଦ୍‌ରେ କୁହାଯାଇଛି—

ତସ୍ମିନ୍ ଶୁକ୍ଲ ମୁତନୀଳମାହୁଃ ପିଙ୍ଗଳଂ ହରିତଂ ଲୋହିତଂଚ
ଏଷପନ୍ଥା ବ୍ରହ୍ମଣାହାନୁବିତ୍ତ ସ୍ତେନୈତି ବ୍ରହ୍ମବିତ୍ ପୁଣ୍ୟକୃତୈଜସଶ୍ଚ । ୯

ଅର୍ଥାତ୍ ବ୍ରହ୍ମଜ୍ଞାନୀ ପୁରୁଷ ଦ୍ୱାରା ଆବିଷ୍କୃତ ଏହି ମାର୍ଗ ଶ୍ୱେତ, ନୀଳ, ପୀତ ଓ ଲାଲ କୁହାଯାଇଛି । ପୁଣ୍ୟକର୍ମୀ ବ୍ରହ୍ମଜ୍ଞାନୀ ଏବଂ ତେଜସ୍ୱୀ ଏହି ମାର୍ଗରେ ଗମନକରେ ।

ଅନ୍ୟତ୍ର କୁହାଯାଇଛି —

ତସ୍ୟ ହୈତସ୍ୟ ପୁରୁଷସ୍ୟ ରୂପଂ ଯଥା ମାହାରଜନଂ ବାସୋ
ଯଥା ପାଣ୍ଡ୍ୱାବିକଂ ଯଥେନ୍ଦ୍ରଗୋପୋ ଯଥାଗ୍ନ୍ୟର୍ଚ୍ଚି ର୍ଯଥା ପୁଣ୍ଡରୀକଂ
ଯଥା ସକୃଦ୍ୱିଦ୍ୟୁତଂ ସକୃଦ୍ୱିଦ୍ୟୁତେବ ହ ବା ଅସ୍ୟ ଶ୍ରୀର୍ଭବତି ...

୨।୩।୬

ଅର୍ଥାତ୍ ( ଦକ୍ଷିଣ ନେତ୍ରରେ ସ୍ଥିତ ) ଏହି ପୁରୁଷ (ବ୍ରହ୍ମ)ଙ୍କର ସ୍ୱରୂପ କୁସୁମୀରଙ୍ଗରେ ରଞ୍ଜିତ ବସ୍ତ୍ର, ଇନ୍ଦ୍ରଯୋଗ (ସାଧବବୋହୁ ପୋକ), ଅଗ୍ନିଜ୍ୱାଳା, ଶ୍ୱେତକମଳ ବା ବିଦ୍ୟୁତର ଚମକ ସଦୃଶ ଅଟେ ।

ଶୂନ୍ୟାତ୍ମକ ବିନ୍ଦୁ ରୂପକ ବ୍ରହ୍ମାଣ୍ଡ ତନ୍ତ୍ରରେ ଶିବଶକ୍ତିଙ୍କର ମିଳିତରୂପ କୁହାଯାଇଛି ଏବଂ ତାଙ୍କ ଠାରୁ ଅମୃତ ରସ ଝରି ଅମାକଳାରେ ପଡୁଥିବାର ବର୍ଣ୍ଣନା କରାଯାଇଛି । ଓଡ଼ିଆ ଜ୍ଞାନମିଶ୍ରାଭକ୍ତିସାହିତ୍ୟରେ ଠିକ୍ ସେହି ଭଳି ଏହାକୁ ରାଧାକୃଷ୍ଣଙ୍କର ମିଳିତରୂପ କୁହାଯାଇ ତାଙ୍କଠାରୁ ଆନନ୍ଦରସ ବା ପ୍ରେମରସ ଝରି ପଡ଼ୁଥିବା କଥା କୁହାଯାଇଛି ।

ରାଧା କୃଷ୍ଣ ଦୁଇଭାବ ପ୍ରେମରସ ଦୁଇ
ଆନନ୍ଦ ଉଛୁଳ ଭାବେ ମିଶି ଦୁଇ ଠାଇଁ

× × ×

ଆନନ୍ଦ ଲହରୀ ଯେ ଉଛୁଳେ ନିରନ୍ତର
ମନ୍ତ୍ର, ଯନ୍ତ୍ର ଜପ ରୂପ ଜନମ ଏଥିରେ

(ରାଧାରସାମୃତ ଗୀତା ୪ର୍ଥ ଅଧ୍ୟାୟ)

ନିର୍ବାଣ କଳା ହେଉଛି ନିର୍ବାଣ ଶକ୍ତି । ଏହା ହେଉଛି ଅବ୍ୟକ୍ତ ନାଦ ବା ଅନାହତ ଧ୍ୱନି । ଏଠାରେ ନାଦରୂପା କୁଣ୍ଡଳିନୀ ଶକ୍ତି ଶବ୍ଦବ୍ରହ୍ମଙ୍କର ବିନ୍ଦୁରୂପରେ (ଅନାହତ ଧ୍ୱନି) ମିଳିତ ହୁଅନ୍ତି । ନିର୍ବାଣ କଳା ଦର୍ଶନ ଅର୍ଥ ହେଉଛି ଅନାହତ ଧ୍ୱନି ଶ୍ରବଣ ଜନିତ ଶବ୍ଦ ବ୍ରହ୍ମଙ୍କର ସାକ୍ଷାତକାର । ସହସ୍ରଦଳ ଚକ୍ର ହେଉଛି

ପଞ୍ଚାଶତ୍ ବର୍ଣ୍ଣମାଳାର ସ୍ଥାନ । 'ଅ' ଠାରୁ ଆରମ୍ଭ କରି 'କ୍ଷ' ପର୍ଯ୍ୟନ୍ତ ସମସ୍ତ ବର୍ଣ୍ଣ ଏଠାରେ ଅବସ୍ଥିତ । ଏହାର ତାତ୍ପର୍ଯ୍ୟ ହେଉଛି ସମସ୍ତ ବର୍ଣ୍ଣ ଓ ଶବ୍ଦମାନଙ୍କର ସୃଷ୍ଟିଉତ୍ପତ୍ତିସ୍ଥଳ ସହସ୍ର ଦଳ ଚକ୍ରରେ ସାଧକ ଯେଉଁ ଜ୍ୟୋତିଦର୍ଶନକରେ ତାହା ୫ଟି ଜ୍ୟୋତିର ମିଶ୍ରଣ ବୋଲି ଅଚ୍ୟୁତାନନ୍ଦ ଶୂନ୍ୟସଂହିତା ଗ୍ରନ୍ଥରେ ଲେଖିଛନ୍ତି ।

ଯଥା— ଏକାକ୍ଷର ବୋଲି ଯାହା ପରଂବ୍ରହ୍ମ ଜାଣ
ଜ୍ୟୋତିବ୍ରହ୍ମ ବୋଲି ସେହି ଏହୁ ଯେ ପ୍ରମାଣ
ଶ୍ୱେତପୀତ ଲୋହିତ କୁଙ୍କୁମ ଘୃତକଳା
ଶ୍ୟାମକଳା ମିଶିଣ ଯେ ଜ୍ୟୋତିବ୍ରହ୍ମ ଖେଳା

(୭ମ ଅଧ୍ୟାୟ)

ନାଥ ସମ୍ପ୍ରଦାୟରେ ମଧ୍ୟ ୫ ବର୍ଣ୍ଣ ବିଶିଷ୍ଟ ଜ୍ୟୋତିର ବର୍ଣ୍ଣନା ଦେଖିବାକୁ ମିଳିଥାଏ ।

ଯଥା— ଝରମ ଧ୍ରମ ଜ୍ୱାଲା, ଜ୍ୟୋତି ସୁରଯ କଳା ନଛୀପୈ ଗ୍ରେଲ୍ହ

(ଗୋ.ବାଣି ପୃ ୫୭)

ଶ୍ରୀଗୁହ୍ୟ ସମାଜତନ୍ତ୍ର ନାମକ ବୌଦ୍ଧତନ୍ତ୍ର ଗ୍ରନ୍ଥରେ କୁହାଯାଇଛି ସାଧନାର ଶେଷସ୍ତରରେ ସାଧକ ୫ ପ୍ରକାର ଜ୍ୟୋତି କ୍ରମରେ ଦର୍ଶନ କରିଥାଏ—

ପ୍ରଥମଂ ମରୀଚକାକାରଂ ଧୂମାକାରଂ ଦ୍ୱିତୀୟକମ୍
ତୃତୀୟଂ ଖଦ୍ୟୋତାକାରଂ ଚତୁର୍ଥଂ ଦୀପବଜ୍ଜ୍ୱାଲମ୍
ପଞ୍ଚମଂ ତୁ ସଦାଲୋକଂ ନିରଭ୍ରଂ ଗଗନ ସନ୍ନିଭଂ

( ଗୁ. ସ. ତ. ୧୮ ଅଧ୍ୟାୟ )

ଚନ୍ଦ୍ରମଣି ଦାସ ସୁଧାସାର ଗୀତାରେ ଶୁକ୍ଳବର୍ଣ୍ଣ ବ୍ରହ୍ମଙ୍କର ଘୃତକଳା ବିଷୟ ଲେଖିଛନ୍ତି ।

ଯଥା— ଊର୍ମି ଧୂର୍ମି, ଜ୍ୟୋତି ଜ୍ୱାଲା ସେହିଠାରେ ହେଉଛନ୍ତି ଆଚମ୍ବିତ
ଶୁକ୍ଳ କଳା ଶୋଣିତ ଆଦି କରି ବର୍ଣ୍ଣିତାର ଶ୍ୱେତ ପୀତ

ବ୍ରହ୍ମଙ୍କର ଜ୍ୟୋତିକୁ ଶୁକ୍ଳ ଜ୍ୟୋତି ଏବଂ ତତ୍ ସହିତ ଶ୍ୱେତ, ପୀତ ହରିତ ( ସବୁଜ ବା କଳା ) କୁଙ୍କୁମ (ନାଲି) ଘୃତରଙ୍ଗର ମିଶ୍ରଣ କଥା ଏଠାରେ କୁହାଯାଇଛି ।

ଯଶୋବନ୍ତ ଦାସ ମଧ୍ୟ ପ୍ରେମଭକ୍ତି ବ୍ରହ୍ମଗୀତାରେ ଲେଖିଛନ୍ତି ।

ଊର୍ମି ଧୂର୍ମି ସେ ଜ୍ୟୋତି ଜ୍ୱାଳା
ବିନ୍ଦୁ ସହିତେ ପଞ୍ଚକଳା

(ପ୍ରଥମ ଅଧ୍ୟାୟ)

ଜ୍ୟୋତିର୍ମୟ ବ୍ରହ୍ମଙ୍କର ଶୁକ୍ଳ ଜ୍ୟୋତି ରଙ୍ଗବେରଙ୍ଗର ଜ୍ୟୋତିଦ୍ୱାରା ମିଶ୍ରିତ ହେବା ବିଷୟ ବୌଦ୍ଧ ଧର୍ମରୁ ଗୃହୀତ ହୋଇନାହିଁ । ଏହା ଉପନିଷଦୀୟ ଚିନ୍ତାଧାରା ।

ବୃହଦାରଣ୍ୟକ ଉପନିଷଦରେ କୁହାଯାଇଛି ।

ତସ୍ମିନ୍ ଶୁକ୍ଳମୁତନୀଳମାହୁଃ ପିଙ୍ଗଳଂ ହରିତଂ ଲୋହିତଂ ଚ
ଏଷପନ୍ଥା ବ୍ରହ୍ମଣା ହାନୁ ବିତ୍ତସ୍ତେ ନୈତି ବ୍ରହ୍ମବିତ୍ ପୁଣ୍ୟକୃତୈ

—ଜଣସ୍ତ । ୯

( ୪ । ୪ । ୯

ଅର୍ଥାତ୍ ବ୍ରହ୍ମଜ୍ଞାନୀ ପୁରୁଷ ଦ୍ୱାରା ଆବିଷ୍କୃତ ଏହି ମାର୍ଗ ଶ୍ୱେତ, ନୀଳ, ପୀତ ହରିତ ଓ ଲାଲ କୁହାଯାଇଛି । ପୁଣ୍ୟକର୍ମୀ ବ୍ରହ୍ମଜ୍ଞାନୀ ଏବଂ ତେଜସ୍ୱୀ ଏହି ମାର୍ଗରେ ଗମନ କରେ । ଏହି ଉପନିଷଦରେ ଅନ୍ୟତ୍ର କୁହାଯାଇଛି—

ତସ୍ୟ ହୈତସ୍ୟ ପୁରୁଷସ୍ୟ ରୂପଂ ଯଥା ମାହାରଜନଂ ବାସୋ
ଯଥା ପାଣ୍ଡ୍ୱାବିକଂ ଯଥେନ୍ଦ୍ରଗୋପୋ ଯଥାଗ୍ନ୍ୟର୍ଚି ଯଥା ପୁଣ୍ଡରୀକଂ

୨ । ୩ । ୬

ଅର୍ଥାତ୍ ଏହି ପୁରୁଷ (ବ୍ରହ୍ମ) ଙ୍କର ସ୍ୱରୂପ କୁସୁମ୍ଭୀରଙ୍ଗରେ ରଞ୍ଜିତବସ୍ତ୍ର, ଇନ୍ଦ୍ରଗୋପ (ସାଧବ ବୋହୁ ପୋକ), ଅଗ୍ନିଜ୍ୱାଳା ଶ୍ୱେତକମଳ ବା ବିଦ୍ୟୁତର ଚମକ ସଦୃଶ ଅଟେ,) ଅରକ୍ଷିତ ଶିବ 'ରାଧାରସାମୃତଗୀତା' ରେ ଏହାର ବର୍ଣ୍ଣନା ଦେଇ ଲେଖିଛନ୍ତି—

ମୁହିଁ ପରଂବ୍ରହ୍ମ ଜ୍ୟୋତି ଶୂନ୍ୟମୟ ହୋଇ
ବିନ୍ଦୁରୂପ ମୁଁ ଆକାଶେ ଥିଲିରହି
ନୀଳ ଯେ ରୁଚିର ମୋର ବିନ୍ଦୁ ଜ୍ୟୋତି ଦିଶି
ରଙ୍ଗଗୋଟି କଲା ମୋର ଭୁବନ ପ୍ରକାଶି
ଶ୍ୱେତ, ପୀତ, ହରିତ ଯେ ରକ୍ତବର୍ଣ୍ଣ ଜାଣ
କୋଟି ସୂର୍ଯ୍ୟ ତେଜ ଜିଣି ଜ୍ୟୋତି ଜଗମାଣ

(୨ୟ ଅଧ୍ୟାୟ)

ଶୂନ୍ୟାତ୍ମକ ବିନ୍ଦୁରୂପକ ବ୍ରହ୍ମଙ୍କ ତଳରେ ଶିବଶକ୍ତିଙ୍କର ମିଳିତ ଅଦ୍ୱୟସ୍ୱରୂପ କୁହାଯାଇଛି ଏବଂ ତାଙ୍କଠାରୁ ଅମୃତରସ ଝରି ଅମାକଳାରେ ପଡ଼ୁଥିବାର ବର୍ଣ୍ଣନା କରାଯାଇଅଛି । ଓଡ଼ିଆ ଜ୍ଞାନମିଶ୍ରାଭକ୍ତିସାହିତ୍ୟରେ ଠିକ୍ ସେହି ଭଳି ଏହାକୁ ରାଧାକୃଷ୍ଣଙ୍କର ଅଦ୍ୱୟଯୁଗଳଙ୍କରୂପ କୁହାଯାଇ ତାଙ୍କଠାରୁ ଆନନ୍ଦରସ ବା ପ୍ରେମରସ ଝରି ପଡ଼ୁଥିବା ବିଷୟ ବର୍ଣ୍ଣନା କରାଯାଇଅଛି—

ଯଥା — ରାଧାକୃଷ୍ଣ ଦୁଇଭାବ ସମରସ ହୁଚି
ଆନନ୍ଦ ଉଛୁଳି ଭାବେ ମିଶି ଦୁଇଠାଇଁ

× × ×

ଆନନ୍ଦ ଲହରୀ ଯେ ସେ ଉଛୁଳେ ନିରନ୍ତର
ମନ୍ତ୍ର ଯନ୍ତ୍ର ଜପ ରୂପ ଜନମ ଏଥିର
( ରାଧାରସାମୃତଗୀତା ୪ର୍ଥ ଅଧ୍ୟାୟ )

ସହସ୍ରଦଳ ଚକ୍ରରେ ସାଧକ ଅମାକଳା ଦର୍ଶନ କଲାପରେ ନିର୍ବାଣ କଳା ଦର୍ଶନ କରିଥାଏ । ନିର୍ବାଣ କଳା ହେଉଛି ନିର୍ବାଣ ଶକ୍ତି । ଏହା ହେଉଛି ଅବ୍ୟକ୍ତ ନାଦ ବା ଅନାହତ ଧ୍ୱନି । ଏଠାରେ ନାଦ ରୂପ କୁଣ୍ଡଳିନୀଶକ୍ତି ଶବ୍ଦବ୍ରହ୍ମଙ୍କର ବିନ୍ଦୁ ରୂପରେ ମିଳିତ ହୁଅନ୍ତି । ନିର୍ବାଣକଳା ଦର୍ଶନର ଅର୍ଥ ହେଉଛି ଅନାହତ ଧ୍ୱନିଶ୍ରବଣ ପୂର୍ବକ ଶବ୍ଦବ୍ରହ୍ମଙ୍କର ବିନ୍ଦୁ ରୂପର ସାକ୍ଷାତ୍କାର । ସହସ୍ରଦଳ ଚକ୍ର ହେଉଛି ପଞ୍ଚାଶତ୍ ବର୍ଣ୍ଣମାଳାର ସ୍ଥାନ । 'ଅ' ଠାରୁ ଆରମ୍ଭ କରି 'କ୍ଷ' ପର୍ଯ୍ୟନ୍ତ ସମସ୍ତ ବର୍ଣ୍ଣ ଏଠାରେ ଅବସ୍ଥିତ । ଏହାର ତାତ୍ପର୍ଯ୍ୟ ହେଉଛି ବର୍ଣ୍ଣ ଓ ଶବ୍ଦମାନଙ୍କର । ସୂକ୍ଷ୍ମ ଉତ୍ପତ୍ତିସ୍ଥଳ ହେଉଛି ସହସ୍ରଦଳଚକ୍ର । ସହସ୍ରଦଳଚକ୍ର ମୋକ୍ଷର ସ୍ଥାନ ହୋଇଥିବାରୁ ଯୋଗୀ ଏହି ଚକ୍ରରେ ମନସ୍ଥିର ରଖିଲେ ବ୍ରହ୍ମଜ୍ଞାନ ଓ ଆତ୍ମଜ୍ଞାନ ସହିତ ସମସ୍ତ ଜ୍ଞାନର ଅଧିକାରୀ ହୋଇଥାଏ । ତାହାର ସମସ୍ତ ପାପପୁଣ୍ୟ କ୍ଷୟ ହୋଇଥାଏ । ସେ ଭେଦାଭେଦ ଭାବ ରହିତ ମାୟା ପ୍ରଭାବ ବିରହିତ ନିର୍ଗୁଣା-ବସ୍ଥାରେ ଉପନୀତ ହୋଇଥାଏ । ତାହାକୁ ଜନ୍ମମୃତ୍ୟୁ ଚକ୍ରରେ ପୁନର୍ବାର ପ୍ରବେଶ କରିବାକୁ ପଡ଼େ ନାହିଁ । ସେ ବ୍ରହ୍ମସ୍ୱରୂପ ହୋଇଯିବାରୁ ତାହାଠାରେ ଅସୀମ କ୍ଷମତା ଓ ଶକ୍ତି ଦେଖା ଦେଇଥାଏ ।

## ଯୋଗସାଧନା ପ୍ରଣାଳୀ—

ଯୋଗସାଧନାର ୮ଟି କ୍ରମ ରହିଛି । ଏହାକୁ ଯୋଗର ଆଠଟି ଅଂଗ କୁହାଯାଇଥାଏ । ଏଗୁଡ଼ିକ ହେଉଛି ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର,

ଧାରଣା ଧ୍ୟାନ ଓ ସମାଧି । ଏହି କ୍ରମରେ ଯୋଗ ସାଧନାରମ୍ଭକୁ ଅଷ୍ଟାଙ୍ଗ ଯୋଗ ସାଧନା କୁହାଯାଇଥାଏ । ପତଞ୍ଜଳିଙ୍କର ଯୋଗଦର୍ଶନର ସାଧନ ପାଦ ଏବଂ ବିଭୂତି ପାଦରେ ଯୋଗର ଏହି ଅଷ୍ଟଅଙ୍ଗଗୁଡ଼ିକ ବିଷୟରେ ବିସ୍ତୃତ ବର୍ଣ୍ଣନା କରାଯାଇଅଛି । ଚିତ୍ତବୃତ୍ତିକୁ ନିରୋଧ କରି, କ୍ଳେଶ, କର୍ମ, କର୍ମ ବିପାକ, ଓ ଦୁଃଖ ଆଦିକୁ ଦୂର କରିବା ପାଇଁ ଅଷ୍ଟାଙ୍ଗ ଯୋଗର ଆଶ୍ରୟ ନେବାକୁ ଏଥିରେ କୁହାଯାଇଛି । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଏହି ଅଷ୍ଟାଙ୍ଗ ଯୋଗସାଧନା ବିଷୟରେ ବହୁତ ବର୍ଣ୍ଣନା କରାଯାଇଛି । ଯଥା—

ଯମ ନିୟମ ଆଦି ଯେତେ
ଆଗେ ତୁ ସାଧ ମନ ହିତେ
ଚଞ୍ଚଳ ମନ ହେବ ସ୍ଥିର
ଭାବ ବିଗ୍ରହ ପରିହର (ଛୟାଳିଶ ପଟଳ-ପ୍ରଥମ ପଟଳ)

ପଞ୍ଚସଖା, ଦ୍ୱାରକା ଦାସ, ଚନ୍ଦ୍ରମଣି ଦାସ ପ୍ରଭୃତିଙ୍କ ଗ୍ରନ୍ଥରେ ବର୍ଣ୍ଣିତ ଯୋଗର ଆଠଟି ଅଙ୍ଗର ସଂକ୍ଷିପ୍ତ ବିବରଣୀ ଏଠାରେ ଦିଆଯାଉଛି—

୧ । ଯମ—ଅହିଂସା, ସତ୍ୟଭାଷଣ, ଅନ୍ୟବସ୍ତୁ ପ୍ରତି ନିସ୍ପୃହତା, ବ୍ରହ୍ମଚର୍ଯ୍ୟ, ଦୟା, ସରଳତା, କ୍ଷମା, ଧୈର୍ଯ୍ୟ, ଅଳ୍ପାହାର ଏବଂ ପବିତ୍ରତା । ଏହି ଦଶଟିକୁ ଯମ କହନ୍ତି । ଯମର ଅର୍ଥ ହେଉଛି ସଂଯମ ।

୨ । ନିୟମ—ତପ, ସନ୍ତୋଷ, ଆସ୍ତିକ୍ୟ, ଦାନ, ଈଶ୍ୱର ପୂଜନ ସିଦ୍ଧାନ୍ତ ଶ୍ରବଣ, ହ୍ରୀ ବା ଲଜ୍ଜା, ମତି ଜପ ଓ ବ୍ରତ—ଏହି ଦଶଟି ନିୟମ ଅଟେ ।

୩ । ଆସନ—ବିଭିନ୍ନ ଯୋଗଶାସ୍ତ୍ରରେ ଅନେକ ପ୍ରକାରର ଆସନ ବର୍ଣ୍ଣନା ରହିଛି । ଆସନରେ ଉଦ୍ଦେଶ୍ୟ ହେଉଛି ଦେହ, ଗ୍ରୀବା ଓ ହସ୍ତ ପଦାଦିର ନିଶ୍ଚଳତା ରକ୍ଷା କରିବା । ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣିତ ଆସନର ସର୍ବାଧିକ ସଂଖ୍ୟା ୮୪ ପ୍ରକାର । ଏହା ମଧ୍ୟରୁ ୮ଟି ଆସନ ଶ୍ରେଷ୍ଠ ରୂପେ ବିବେଚିତ । ସେଗୁଡ଼ିକ ହେଉଛି ସ୍ୱସ୍ତିକ, ଗୋମୁଖ ପଦ୍ମ, ଧୀର, ସିଂହଭଦ୍ର, ମୁକ୍ତ ଓ ମୟୂର । ଏହା ମଧ୍ୟରୁ ପଦ୍ମାସନ ଯୋଗ ସାଧନା ପାଇଁ ସର୍ବୋତ୍କୃଷ୍ଟ ।

୪ । ପ୍ରାଣାୟାମ—ପଦ୍ମାସନରେ ଉପବିଷ୍ଟ ହୋଇ ରେଚକ ପଦ୍ଧତିରେ ଶ୍ୱାସତ୍ୟାଗ, ପୂରକ ପଦ୍ଧତିରେ ଶ୍ୱାସଗ୍ରହଣ ଏବଂ କୁମ୍ଭକ ପଦ୍ଧତିରେ ଶ୍ୱାସ ଧାରଣ କାର୍ଯ୍ୟକୁ ପ୍ରାଣାୟାମ କୁହାଯାଏ ।

୫ । ପ୍ରତ୍ୟାହାର – ବାହ୍ୟ ବିଷୟରୁ ଇନ୍ଦ୍ରିୟମାନଙ୍କୁ ଫେରାଇ ଆଣିବାର ନାମ ପ୍ରତ୍ୟାହାର ଅଟେ । ବ୍ରହ୍ମୋପନିଷଦରେ କୁହାଯାଇଛି ବାୟୁକୁ ଦେହର ବିଭିନ୍ନ ସ୍ଥାନରୁ ଟାଣି ମସ୍ତକରେ ସ୍ଥାପନ କରିବାର ନାମ ପ୍ରତ୍ୟାହାର ।

୬ । ଧାରଣା––ଏହା ତିନିପ୍ରକାର ଅଟେ ।

୧ । ଆତ୍ମାରେ ମନର ଧାରଣା ।

୨ । ହୃଦୟରେ ବାହାର ଆକାଶର ଧାରଣା ।

୩ । ପୃଥ୍ୱୀ ଜଳ, ତେଜ ବାୟୁ ଏବଂ ଆକାଶରେ ପାଞ୍ଚ ମୂର୍ତ୍ତିର ଧାରଣା ।

୭ । ଧ୍ୟାନ—ଇଷ୍ଟରେ ମନ ନିମଗ୍ନକୁ ଧ୍ୟାନ କୁହାଯାଏ । ଏହା ସଗୁଣ ଧ୍ୟାନ ଓ ନିର୍ଗୁଣ ଧ୍ୟାନ ଭେଦରେ ଦୁଇ ପ୍ରକାର । ରୂପ ବା ମୂର୍ତ୍ତିର ଧ୍ୟାନ ସଗୁଣ ଧ୍ୟାନ ଏବଂ ଆତ୍ମାର ସ୍ୱରୂପ ଧ୍ୟାନ ହେଉଛି ନିର୍ଗୁଣ ଧ୍ୟାନ ।

୮ । ସମାଧି—ଜୀବାତ୍ମା ଓ ପରମାତ୍ମାଙ୍କର ଏକୀଭୂତ ଭାବ ଅନୁଭବ କରିବା ହେଉଛି ସମାଧି । ପତଞ୍ଜଳିଙ୍କ ଯୋଗ ଦର୍ଶନରେ 'ସମାଧି'କୁ ଏକାଗ୍ର ଚିତ୍ତର ଅବିଚଳିତ ଅକ୍ଷୁବ୍ଧ ଅବସ୍ଥା କୁହାଯାଇଛି । ଏହା ସମ୍ପ୍ରଜ୍ଞାତ ସମାଧି ଓ ଅସମ୍ପ୍ରଜ୍ଞାତ ସମାଧି ଭେଦରେ ଦୁଇ ପ୍ରକାର ।

ସମ୍ପ୍ରଜ୍ଞାତ ସମାଧି—ଯୋଗ ସାଧନା ବେଳେ ଯେଉଁ ଧ୍ୟାନ କରାଯାଏ ତାହା ତିନିଟି ଜିନିଷକୁ ଆଶ୍ରୟ କରିଥାଏ । ତାହା ହେଉଛି ୧ । ଧ୍ୟାନ, ୨ । ଧ୍ୟେୟ (ଯାହାକୁ ଧ୍ୟାନ କରାଯାଏ), ୩ । ଧ୍ୟାତା (ଧ୍ୟାନକରୁଥିବା ସାଧକ)

ଯେଉଁ ସମାଧିରେ ଚିତ୍ତର ଏକାଗ୍ରତା ଏବଂ ଅବିଚଳିତ ଅବସ୍ଥା ଆସିଲେ ମଧ୍ୟ ଧ୍ୟେୟକୁ (ଧ୍ୟାନର ଅବଲମ୍ବନକୁ) ପରିତ୍ୟାଗ କରାଯାଇ ନଥାଏ ସେହି ସମାଧିକୁ ସମ୍ପ୍ରଜ୍ଞାତ ସମାଧି କୁହାଯାଏ ।

ଅସମ୍ପ୍ରଜ୍ଞାତ ସମାଧି—ଧ୍ୟାନ କରୁକରୁ ଧ୍ୟାନରେ ମନ ଲାଗିଗଲେ ଧ୍ୟେୟ (ଧ୍ୟାନର ଅବଲମ୍ବନ) ଯେତେବେଳେ ଧୀରେ ଧୀରେ କ୍ଷୀଣ ହୋଇ ସମ୍ପୂର୍ଣ୍ଣ ତିରୋହିତ ହୋଇଯାଏ ସେତେବେଳେ ଚିତ୍ତ ଏକ ବିଶୁଦ୍ଧ ନିରାଲମ୍ବ ଅବସ୍ଥାରେ ଉପନୀତ ହୁଏ । ଏହା ହେଉଛି ଚିତ୍ତ ବୃତ୍ତିର ସମ୍ପୂର୍ଣ୍ଣ ନିରୁଦ୍ଧ ଅବସ୍ଥା ଏବଂ ଏହାକୁ ଅସମ୍ପ୍ରଜ୍ଞାତ ସମାଧି କୁହାଯାଇଥାଏ ।

ଏହି ବାକ୍ୟରେ କହିଲେ ସମ୍ପ୍ରଜ୍ଞାତ ସମାଧି ଅବସ୍ଥାରେ ଧ୍ୟେୟ ବସ୍ତୁ ସମ୍ବନ୍ଧରେ ଯାହା ସଚେତନ ଥାଏ ବା ଧ୍ୟେୟ ବସ୍ତୁଜ୍ଞାନ ଥାଏ ଏବଂ ଅସମ୍ପ୍ରଜ୍ଞାତ ସମାଧିରେ ଯାହାର ଧ୍ୟେୟ ବସ୍ତୁ ସମ୍ବନ୍ଧିତ ଜ୍ଞାନ ନଥାଏ ।

ସମ୍ପ୍ରଜ୍ଞାତ ସମାଧିକୁ ସବିକଳ୍ପ ସମାଧି ଏବଂ ଅସମ୍ପ୍ରଜ୍ଞାତ ସମାଧିକୁ ନିର୍ବିକଳ୍ପ ସମାଧି କୁହାଯାଏ ।

## ଷଡ଼ଚକ୍ର ଭେଦ :—

ଷଡ଼ଚକ୍ର ଭେଦ ବର୍ଣ୍ଣନା ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ପର୍ଯ୍ୟାପ୍ତ ଭାବରେ ପରିଲକ୍ଷିତ ହୋଇଥାଏ ।

ଚନ୍ଦ୍ରମଣିଦାସ ସୁଧାସାର ଗୀତାରେ ଲେଖିଛନ୍ତି—

ଉନମନା ମନ ଅଟଇ ପବନ ମଣିମଣ୍ଡ ପୁରେ ସ୍ଥିତ
ଷଡ଼ଚକ୍ର ଭେଦ ଏମନ୍ତ ଭେଦବ ମନ ପବନ ମଧ୍ୟସ୍ଥ

(ଏକାଦଶ ବୋଲି)

ଷଡ଼ଚକ୍ର ଭେଦର ଅର୍ଥ ହେଉଛି ମୂଳାଧାରସ୍ଥିତ କୁଣ୍ଡଳିନୀ ଏବଂ ସ୍ୱାଧିଷ୍ଠାନସ୍ଥିତ ଅପାନ ବାୟୁକୁ ପ୍ରାଣବାୟୁ ସହିତ ମିଳାଇ ସୁଷୁମ୍ନା ନାଡ଼ୀରେ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରିବା । ଏହା ପ୍ରାଣାୟାମ ଦ୍ୱାରା କରିବାକୁ ହୋଇଥାଏ ।

ଷଡ଼ଚକ୍ର ଭେଦ କରିବା ପୂର୍ବରୁ ସାଧକ ପ୍ରଥମେ ବାମ ପାଦର ଗୋଇଠିକୁ ଯୋନି ସ୍ଥାନରେ ରଖି ତାହା ଉପରେ ଡାହାଣ ପାଦରେ ଗୋଇଠିକୁ ସ୍ଥାପନ କରି ପଦ୍ମାସନରେ ବସିବାକୁ ହୋଇଥାଏ । ପଦ୍ମାସନରେ ବସିଲା ବେଳେ ଦେହ ଶିର ଓ ଗ୍ରୀବାକୁ ସଳଖ ରଖିବାକୁ ପଡ଼େ ଏବଂ ଭ୍ରୂଦ୍ୱୟ ମଧ୍ୟରେ ଦୃଷ୍ଟି ସ୍ଥାପନ କରିବାକୁ ପଡେ । ତାହାପରେ ପ୍ରାଣାୟାମ ଦ୍ୱାରା ସୁପ୍ତା କୁଣ୍ଡଳିନୀ ଶକ୍ତିକୁ ଜାଗରଣ କରାଇ ସୁଷୁମ୍ନା ମାର୍ଗକୁ ଆଣିବାକୁ ପଡ଼େ ।

## ପ୍ରାଣାୟାମ

ରେଚକ-ପୂରକ-କୁମ୍ଭକ ବିଧିରେ ପ୍ରାଣାୟାମ କରାଯାଇଥାଏ । ଏହାର ଏକ ନିର୍ଦ୍ଦିଷ୍ଟ ନିୟମ ରହିଛି । ତାହା ହେଉଛି ବାମ ଓ ଡାହାଣ ନାସାକୁ ବୃଦ୍ଧାଙ୍ଗୁଷ୍ଠ ଓ ତର୍ଜନୀ ଦ୍ୱାରା ପ୍ରଥମେ ଦୃଢ଼ ଭାବରେ ଧାରଣ କରିବାକୁ ପଡ଼େ ।

ଉପୂରେ ବାମ ନାସାକୁ ବନ୍ଦ କରି ଡ଼ାହାଣ ନାସା ବା ସୂର୍ଯ୍ୟନାଡ଼ୀକୁ ଖୋଲି ଶ୍ୱାସ ତ୍ୟାଗ କରିବାକୁ ପଡ଼ିଥାଏ । ଠିକ୍ ଏହିପରି ଭାବରେ ବାମନାସା ବା ଚନ୍ଦ୍ର ନାଡ଼ୀରେ ୧୨ ଥର ରେଚକ କରିବାକୁ ହୋଇଥାଏ । ରେଚକ ପରେ ପୂରକ କାର୍ଯ୍ୟ କରିବାକୁ ପଡ଼ିଥାଏ । ପୂରକର ଅର୍ଥ ଭିତରକୁ ବାୟୁଗ୍ରହଣ । ପୂର୍ବଭାବରେ ବାମ ନାସାରେ ୧୨ ଥର ଏବଂ ଦକ୍ଷିଣ ନାସାରେ ୧୨ ଥର ବାୟୁ ଗ୍ରହଣ କରିବାକୁ ଦ୍ୱାଦଶ ପୂରକ କୁହାଯାଇଥାଏ । ଦ୍ୱାଦଶ ପୂରକ ପରେ କୁମ୍ଭକ ୧୬ ଥର କରିବାକୁ ପଡ଼ିଥାଏ । କୁମ୍ଭକର ଅର୍ଥ ବାୟୁଧାରଣ । ପ୍ରାଣାୟାମ ବେଳେ ବାମ ନାସାରେ ଶ୍ୱାସ ନେଇ ଦକ୍ଷିଣ ନାସାରେ ଶ୍ୱାସ ତ୍ୟାଗ କରାଯାଏ । ଏହିପରି ୧୨, ୧୨, ଥର ପୂରକ ରେଚକ କଲାପରେ ୧୬ ଥର କୁମ୍ଭକ କରିବାକୁ ପଡ଼େ ।

ଶାଣ୍ଡିଲ୍ୟ ଉପନିଷଦରେ କୁହାଯାଇଛି ।

କୁମ୍ଭକ କେବଳ ଓ ସହିତ ଭେଦରେ ଦୁଇ ପ୍ରକାର-ରେଚକ ପୂରକ ସହିତ କୁମ୍ଭକଯୁକ୍ତ ହେଲେ କୁମ୍ଭକକୁ କେବଳ କୁମ୍ଭକ କୁହାଯାଏ । ଏବଂ ରେଚକ ପୂରକ ରହିତ କୁମ୍ଭକକୁ ସହିତ କୁମ୍ଭକ କୁହ ଯାଇଥାଏ । କେବଳ କୁମ୍ଭକ ଦ୍ୱାରା କୁଣ୍ଡଳିନୀ ଜାଗ୍ରତ ହୁଏ । ରେଚକ ପୂରକ ବିହୀନ ସହିତ କୁମ୍ଭକକୁ ବୈଷ୍ଣବୀ ମୁଦ୍ରା କୁହାଯାଏ । କେବଳ କୁମ୍ଭକରେ ଯୋଗୀର ସିଦ୍ଧିଲାଭ ସମ୍ଭବ ହୋଇଥାଏ । ସେତେବେଳେ ଯୋଗୀ ପତଳା ଶରୀର ବିଶିଷ୍ଟ, ରୋଗଶୂନ୍ୟ, ପ୍ରସନ୍ନମୁଖ, ନିର୍ମଳନେତ୍ର, ନାଦ ଶ୍ରବଣକାରୀ ବିନ୍ଦୁ ତେଜ ଓ ପ୍ରଜ୍ୱଳିତ ଜଠରାଗ୍ନି ଯୁକ୍ତ ହୋଇଥାଏ ।

ଯୋଗ ସାଧନା ବେଳେ ତିନୋଟି ବନ୍ଧର ଆଶ୍ରୟ ନେବାକୁ ପଡ଼ିଥାଏ, ସେ ଗୁଡ଼ିକ ହେଉଛି-ମୂଳବନ୍ଧ, ଉଡ୍ଡୀୟାନ୍ ବନ୍ଧ ଓ ଜାଳନ୍ଧର ବନ୍ଧ ।

## ମୂଳବନ୍ଧ—

### ମୂଳବନ୍ଧର ଆବଶ୍ୟକତା :—

ପୂର୍ବରୁ କୁହାଯାଇଛି ହୃଦଚକ୍ର ବା ଅନାହତ ଚକ୍ରରେ ପ୍ରାଣବାୟୁ ଏବଂ ଲିଂଗଚକ୍ର ବା ସ୍ୱାଧିଷ୍ଠାନ ଚକ୍ରରେ ଆପାନ ବାୟୁ ପାରସ୍ପରିକ ଆକର୍ଷଣ ମଧ୍ୟରେ ପଡ଼ି ଜୀବ ବାରମ୍ବାର ଉପରତଳ ହେଉଥାଏ । ଏହା ପ୍ରାଣ ବାୟୁରେ ଆକର୍ଷିତ ହୋଇ ବାହାରକୁ ଗଲାବେଳେ 'ହ' କାର ଧ୍ୱନି କରେ ଏବଂ ଆପାନବାୟୁ ଦ୍ୱାରା ଆକର୍ଷିତ ହୋଇ ଭିତରକୁ ଆସିଲା ବେଳେ 'ସ' କାର ଧ୍ୱନି କରେ । ଗୋଟିଏ ଦିନରେ ଜୀବ ଏହିପରି ଏକୋଇଶ ହଜାର ଛ' ଶହଥର ବାହାରକୁ ଭିତରକୁ

ଯିବା ଆସିବା କରି ଏକୋଇଶ ହଜାର ଥର 'ହଂସ'ଧ୍ୱନି ଉଚ୍ଚାରଣ କରିଥାଏ । ଜୀବର ବାରମ୍ବାର ବହିର୍ଗମନ ଓ ଚଞ୍ଚଳ ପ୍ରବାହ ହେତୁ ମନ ସ୍ଥିର ରହିପାରେ ନାହିଁ । ଆପାନ ବାୟୁକୁ ପ୍ରାଣାୟାମ ଦ୍ୱାରା ବଳପୂର୍ବକ ହୃଦୟସ୍ଥ ସ୍ଥିତ ପ୍ରାଣ ବାୟୁରେ ମିଳାଇ ରଖିବା ଦ୍ୱାରା ତାହା ସ୍ଥିର ହୋଇଥାଏ । ତତ୍ପରେ ଏହାକୁ ସହସ୍ର ଚକ୍ର ପର୍ଯ୍ୟନ୍ତ ନିଆଯାଇ ଥାଏ । ଏହା ହେଉଛି ଯୋଗ ସାଧନାର ଲକ୍ଷ୍ୟ ।

ପ୍ରାଣ ବାୟୁକୁ ଆପାନ ବାୟୁ ସହିତ ମିଳାଇବା ପାଇଁ ଏବଂ କୁଣ୍ଡଳିନୀର ଜାଗରଣ ପାଇଁ ମୂଳବଂଧ ସାଧନା ଆବଶ୍ୟକ ହୋଇଥାଏ । ମୂଳବଂଧର ଆଶ୍ରୟ ନେବାକୁ ହେଲେ ଯୋଗୀକୁ ପଦ୍ମାସନରେ ବସି ଗୁହ୍ୟ ବା ମଳଦ୍ୱାରକୁ ଆକୁଞ୍ଚନ କରି ସ୍ୱାଧିଷ୍ଠାନ ଚକ୍ର ସ୍ଥିତ ଆପାନ ବାୟୁକୁ ଉପର ଆଡ଼କୁ ଆକର୍ଷଣ କରିବାକୁ ପଡ଼ିଥାଏ । ଆପାନବାୟୁ ଆକର୍ଷିତ ହୋଇ ମଣିପୁର ( ନାଭିଚକ୍ର ) ସ୍ଥିତ ବହ୍ନି ମଣ୍ଡଳର ସଂସ୍ପର୍ଶରେ ଆସିଲେ ଉତ୍ତପ୍ତ ହୋଇଥାଏ । ଜ୍ୱାଳାର ତୀବ୍ରତାଯୋଗେ ସନ୍ତପ୍ତ ହୋଇ ମୂଳାଧାର ଓ ସ୍ୱାଧିଷ୍ଠାନ ମଧ୍ୟରେ କନ୍ଦ ସ୍ଥାନରେ ଥିବା କୁଣ୍ଡଳିନୀ ଶକ୍ତି ଜାଗ୍ରତ ହୁଏ ଏବଂ ତାହାର କୁଣ୍ଡଳାକୃତିକୁ ଛାଡ଼ି ସିଧା ହୋଇଥାଏ । ସୁଷୁମ୍ନା ମଧ୍ୟସ୍ଥ ବ୍ରହ୍ମନାଡ଼ୀର ଦ୍ୱାରରୁ କୁଣ୍ଡଳିନୀର ମୁଖ ହଟିଯିବାରୁ ବ୍ରହ୍ମନାଡ଼ୀ ଉନ୍ମୁକ୍ତ ହୋଇଯାଏ। ଏବଂ ଏଥିରେ କୁଣ୍ଡଳିନୀ ପ୍ରବେଶ କରେ । ଏହିପରି ମୂଳବଂଧ ସାହାଯ୍ୟରେ କୁଣ୍ଡଳିନୀକୁ ବଳପୂର୍ବକ ସୁଷୁମ୍ନା ମାର୍ଗରେ ପ୍ରବେଶ କରାଯାଇ-ଥାଏ ।

## ଉଡ୍‌ଡ଼ୀୟାନ୍ ବନ୍ଧ—

ଏହି ବନ୍ଧରେ ବଜ୍ରାସନରେ ପାଦକୁ ହାତ ଦ୍ୱାରା ଦୃଢ଼ଭାବରେ ଧରିବାକୁ ହୁଏ ଏବଂ ଗୋଇଠିରେ କନ୍ଦସ୍ଥାନକୁ ଚାପି ପେଟକୁ ହୃଦୟସ୍ଥ ଆଡ଼କୁ ଟାଣିବାକୁ ପଡ଼େ । ଉଡ୍‌ଡ଼ୀୟାନ୍ ବନ୍ଧ ସହିତ ଜାଳନ୍ଧର ବନ୍ଧର ଆଶ୍ରୟ ନିଆଯାଏ ।

## ଜାଳନ୍ଧର ବନ୍ଧ—

ଜାଳନ୍ଧର ବନ୍ଧରେ କଣ୍ଠକୁ ସଂକୋଚନ କରି ଗୁହ୍ୟଦ୍ୱାରକୁ ଆକୁଞ୍ଚନ କରାଯାଏ । ଏହାଫଳରେ ବାୟୁରୋଧ ହୋଇଥାଏ । ଜାଳନ୍ଧର ବନ୍ଧରେ ରହି ଉଡ୍‌ଡୀୟାନ୍ ବଂଧର ଆଶ୍ରୟରେ ପ୍ରାଣବାୟୁକୁ ସୁଷୁମ୍ନା ମାର୍ଗରେ ପୂରାଇ ଉପରକୁ ଟାଣିବାକୁ ପଡ଼ିଥାଏ । କୁଣ୍ଡଳିନୀ ମଧ୍ୟ ପ୍ରାଣବାୟୁ ସହିତ ସୁଷୁମ୍ନା ନାଡ଼ୀ ମଧ୍ୟରେ ଉପରକୁ ଗତିକରେ । ଉଡ୍‌ଡୀୟାନ୍ ବଂଧ ଦ୍ୱାରା ଆପାନ ଓ ପ୍ରାଣବାୟୁକୁ ଏକତ୍ରିତ କରି ତାକୁ ସୁଷୁମ୍ନାମାର୍ଗରେ ପୂରାଇ

ଉର୍ଦ୍ଧ୍ୱକୁ ଟାଣି ପ୍ରଥମେ ହୃଦୟରେ କେନ୍ଦ୍ରିତ କରାଯାଏ । ତତ୍ପରେ ଉର୍ଦ୍ଧ୍ୱକୁ ନେଇ କଣ୍ଠରେ ଥିବା ଉଦାନ ବାୟୁ ସହିତ ମିଳିତ କରାଇ ପୁଣି ଉପରକୁ ଉଠାଯାଇ ମସ୍ତକରେ ସ୍ଥିର କରାଯାଏ ଏବଂ ସେଥିରେ ମନକୁ ସଂଲଗ୍ନ କରାଯାଇ ପରମ ତତ୍ତ୍ୱର ଅନୁଭବ କରାଯାଏ । ଏଠାରେ ମନ ସଂଯୁକ୍ତ ହେଲେ ଜୀବ ଜ୍ୟୋତି ଦର୍ଶନ ଓ ନାଦ ଶ୍ରବଣ କରି ବିମୋହିତ ହୋଇ ସମାଧି ଲାଭ କରେ । ଏବଂ ତତ୍ପରେ ତୁରୀୟାତୀତ ଅବସ୍ଥା ବା ମୋକ୍ଷ ପଦରେ ଉପନୀତ ହୁଏ ।

## ସଂକ୍ଷେପରେ –

୧- ପଦ୍ମାସନରେ ବସି ରେଚକ ପୂରକ କୁମ୍ଭକ ବିଧିରେ ପ୍ରାଣାୟାମ କରି ମୂଳବନ୍ଧ ଦ୍ୱାରା ସ୍ୱାଧିଷ୍ଠାନ ଚକ୍ର (ଲିଂଗଚକ୍ର) ସ୍ଥିତ ଅପାନ ବାୟୁରେ ମିଶାଇବା ଦ୍ୱାରା ତାହା ଉତ୍ତପ୍ତ ହୁଏ ଏବଂ ଏହି ଉତ୍ତାପରେ କୁଣ୍ଡଳିନୀ ଶକ୍ତିର ଜାଗରଣ ଘଟି ସୁଷୁମ୍ନା ଦ୍ୱାର ଖୋଲିଯାଏ । କୁଣ୍ଡଳିନୀ ନିଜର ମୂଳସ୍ଥାନ ଛାଡ଼ି ସୁଷୁମ୍ନା ମଧ୍ୟରେ ପ୍ରବେଶ କରେ ।

୨- ଜାଳନ୍ଧର ବନ୍ଧରେ ପୂର୍ବୋକ୍ତ ଅପାନ ଓ ସମାନ ବାୟୁକୁ ପ୍ରାଣ-ବାୟୁ ସହିତ ମିଳିତ କରାଯାଇ ରୋଧ କରାଯାଏ । କଣ୍ଠ ଚକ୍ର ଓ ମୂଳାଧାର ଚକ୍ରର ବାଟକୁ ବନ୍ଦ କରାଯିବା ଫଳରେ ଦୁଇଟି ବଂଧ ମଧ୍ୟରେ ପବନ ରୁଦ୍ଧ ହୋଇଥାଏ । ଉଡ୍ଡୀୟାନ ମଧ୍ୟରେ ଏ ସମସ୍ତକୁ ବଳପୂର୍ବକ ଉପରକୁ ଟଣାଯାଏ ।

୩- ଉଡ୍ଡୀୟାନ ବଂଧରେ ଆକର୍ଷିତ ପବନକୁ (ଅପାନ, ସମାନ ଓ ପ୍ରାଣକୁ ) ପ୍ରଥମେ ହୃଦଚକ୍ରରେ ସ୍ଥିର କରି ତତ୍ପରେ କଣ୍ଠ ଚକ୍ରକୁ ନେଇ ଉଦାନ ବାୟୁ ସହିତ ଏକତ୍ରିତ କରାଯାଇଥାଏ ଓ ସେଠାରେ ମନକୁ ସ୍ଥିର କରାଯାଏ ।

୪- ତତ୍ପରେ କଣ୍ଠ ଚକ୍ରରୁ ଏ ସମସ୍ତ ବାୟୁକୁ ଆଜ୍ଞାଚକ୍ର ପର୍ଯ୍ୟନ୍ତ ନେଇ ସେଠାରେ ସ୍ଥାପନ କରାଯାଇ ସେଥିରେ ମନକୁ ସ୍ଥାପନ କରି ସ୍ଥିର କରାଯାଏ ।

୫- ତତ୍ପରେ ଏହି ପବନକୁ ମସ୍ତକରେ ଥିବା ସହସ୍ରଦଳଚକ୍ର ପର୍ଯ୍ୟନ୍ତ ନିଆଯାଇ ସେଠାରେ ସ୍ଥିର କରାଯାଏ ଏବଂ ସେଥିରେ ମନକୁ ସ୍ଥିର କରି ପରମ-ତତ୍ତ୍ୱର ଉପଲବ୍ଧି କରାଯାଏ ।

ଏହି ପ୍ରକ୍ରିୟାରେ ପ୍ରାଣବାୟୁ ମଧ୍ୟସ୍ଥ ଜୀବାତ୍ମାକୁ ସହସ୍ରଦଳ ଚକ୍ରସ୍ଥିତ ପରମାତ୍ମା ସହିତ ମିଳନ ବା ଯୋଗ କରାଯାଇଥିବାରୁ ଏହାକୁ ଯୋଗ କୁହାଯାଏ ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର ଛନ୍ଦେ ଛନ୍ଦେ ଏହି ଷଡ଼ଚକ୍ର ସାଧନା ବିଷୟ ବର୍ଣ୍ଣିତ । ଏଠାରେ ଚନ୍ଦ୍ରମଣି ଦାସ କୃତ ସୁଧାସାର ଗୀତରୁ କେତୋଟି ଉଦ୍ଧୃତ ଦିଆଯାଉଛି ଯେଉଁଥିରୁ ଷଡ଼ଚକ୍ର ସାଧନାକୁ ସଂକ୍ଷେପରେ ବର୍ଣ୍ଣନା କରାଯାଇଛି—

ଯଥା —

ବାମ ଚରଣକୁ ଡାହାଣ ହସ୍ତରେ ପଛ ଭାଗେ ଧରି ପଦ
ମୂଳ କମଳକୁ ମାଡ଼ି ବସିଥିଲେ ଚାପି ରହେ ହୃଦ ମଧ୍ୟ
ମୂଳ ପବନ ଊର୍ଦ୍ଧ୍ୱ ଗତି ତୋଳିବ ନାଭିକମଳର ମେଳେ
ଜଳ ପବନ ହୃଦେ ଦେଲେ ସ୍ଥିର ହେବ ସମାଧି ଯୋଗେ ନିଶ୍ଚଳେ
ହୃଦପଦ୍ମରୁ ପଞ୍ଚପ୍ରାଣ ତୋଳିବ କଣ୍ଠରେ ରଖି ଉଦାନ
ବ୍ୟାନ ପବନକୁ ତାଳୁ ମୂଳେ ରଖି ଅନାହତେ ଯୋଗଜ୍ଞାନ
ପ୍ରାଣ ପବନକୁ ନିମଣ୍ଡଳେ ଭରି ନିରୋଧ କରିବ ଦ୍ୱାର
ଓଁକାର ମୂଳରେ ପୂରଣ କରିବ ଚିତ୍ତକୁ କରିଣ ସ୍ଥିର
ନିଶ୍ଚଳ ଯୋଗରେ ଧ୍ୟାନ ଧାରଣାରେ ବ୍ରହ୍ମରନ୍ଧ୍ରେ ମନଭେଦ
ପରମ ପଥକୁ ନିରତେ ଯୋଗିବ ବ୍ରହ୍ମରେ ଥିବ ସମାଧି
ବ୍ରହ୍ମରୂପ ଗୋଟି ବ୍ରହ୍ମ ରୂପେ ସ୍ଥିତି ଶୂନ୍ୟ ସମାନ ସାନାଧି
ଛନ୍ଦ ହଂସଗଣଙ୍କୁ ହୃଦତର ଏଡ଼ି ବ୍ରହ୍ମେ ନିବେଶିବ ନେଇ
ସୁଷୁପ୍ତି ଭେଦରେ ବ୍ରହ୍ମରନ୍ଧ୍ର ପଥେ ଜ୍ୟୋତି ପ୍ରକାଶଇ ସିନା
ଯୋଗେଶ୍ୱରଙ୍କର ଏମନ୍ତ ବ୍ୟବସ୍ଥା ପବନ ଅଟେ ଧାରଣା ।

## ଲୟ ଯୋଗ —

ଲୟଯୋଗ ସାଧନାର ନାମ ହେଉଛି ନାଦାନୁସନ୍ଧାନ ।

## ନାଦ କଣ ?

ନାଦ ବା ଧ୍ୱନି ଏହି ସମସ୍ତ ବିଶ୍ୱରେ ପରିପୂର୍ଣ୍ଣ ହୋଇ ରହିଛି । ନାଦକୁ ଯୋଗ ଶାସ୍ତ୍ରରେ ଦୁଇ ଭାଗରେ ବିଭକ୍ତ କରାଯାଇଛି ।, ତାହା ହେଉଛି ଆହତନାଦ ଓ ଅନାହତ ନାଦ । ସଂଘର୍ଷ ଦ୍ୱାରା ସୃଷ୍ଟ ଧ୍ୱନିକୁ ଆହତ ନାଦ କୁହାଯାଇଥାଏ । ସମସ୍ତ ଆହତ ନାଦର ମୂଳ ହେଉଛି ଅନାହତନାଦ ଏବଂ ଏହାର ମୂଳକୁ ଶବ୍ଦ ବ୍ରହ୍ମ କୁହାଯାଇଥାଏ । ବ୍ରହ୍ମ ଅରୂପ ହେଲେହେଁ ଶବ୍ଦ ଓ ଜ୍ୟୋତି ମାଧ୍ୟମରେ ତାଙ୍କ ରୂପକୁ ଉପଲବ୍ଧି କରାଯାଇଥାଏ । ବିଶ୍ୱରେ ଯେପରି ଆହତ ଓ ଅନାହତ ନାଦ ରହିଛି, ଏହି ଦେହ ମଧ୍ୟରେ ସେହିପରି ଅନାହତ ନାଦ ରହିଛି । ଆମେ ଯେଉଁ ବର୍ଣ୍ଣ, ଶବ୍ଦ ଓ ବାକ୍ୟ ଉଚ୍ଚାରଣ କରୁ ତାହା ହେଉଛି

ଦେହ ମଧ୍ୟରେ ଥିବା ଆହତ ନାଦ, ଏହା ଚାରି ପ୍ରକାରରେ ବିଭକ୍ତ । ସେଗୁଡିକ ହେଉଛି –ପରା, ପଶ୍ୟନ୍ତୀ, ମଧ୍ୟମା ଓ ବୈଖରୀ ।

**ପରା**—ଆମେ ଗୋଟିଏ ବାକ୍ୟ ବା ଶବ୍ଦ ଉଚ୍ଚାରଣ କରିବାକୁ ଚାହିଁଲେ ସେହି ପ୍ରଚେଷ୍ଟା ପ୍ରଥମେ ମୂଳାଧାର ଚକ୍ରରୁ ଆରମ୍ଭ ହୋଇଥାଏ ଅର୍ଥାତ୍ ବାକ୍ୟ ବା ଶବ୍ଦ ଉଚ୍ଚାରଣର ପ୍ରଥମ ପ୍ରଚେଷ୍ଟାରେ ବାୟୁଦ୍ୱାରା ପ୍ରଥମେ ଆମର ଗୁହ୍ୟଦ୍ୱାର ସଙ୍କୁଚିତ ହୋଇଥାଏ । ଏହାକୁ ଆହତ ନାଦର ପରା ଅବସ୍ଥା କୁହାଯାଏ ।

**ପଶ୍ୟନ୍ତୀ**— ବାକ୍ୟ ବା ଶବ୍ଦ ଉଚ୍ଚାରଣ କଲାବେଳେ ଗୁହ୍ୟଦ୍ୱାର ପ୍ରଥମେ ସଙ୍କୁଚିତ ହୋଇ ତତ୍ପରେ ଉଦର ଓ ଲିଙ୍ଗ ମୂଳ ସ୍ଥାନରେ ସଙ୍କୋଚନ ହୋଇଥାଏ । ଏହି ସ୍ଥାନ ହେଉଛି ଦେହର ସ୍ୱାଧିଷ୍ଠାନଚକ୍ର । ସ୍ୱାଧିଷ୍ଠାନ ଚକ୍ରରେ ଆହତ ଧ୍ୱନି ଯେଉଁ ରୂପ ଧାରଣ କରେ ତାହାକୁ ଆହତ ଧ୍ୱନିର 'ପଶ୍ୟନ୍ତୀ' ଅବସ୍ଥା କୁହାଯାଇଥାଏ ।

**ମଧ୍ୟମା**—ଆହତ ଧ୍ୱନି ଗୁହ୍ୟ ଦ୍ୱାରରୁ ଉତ୍ଥିତ ହୋଇ ନାଭି ପ୍ରଦେଶକୁ ଆସି କ୍ରମେ ପ୍ରସାରିତ ହୁଏ । ଏବଂ ତତ୍ପରେ ହୃଦୟକୁ ବା ଅନାହତ ଚକ୍ରକୁ ବା ଫୁସ୍ ଫୁସ୍‌କୁ ଆସି ଆହୁରି ଅଧିକ ପ୍ରସାରିତ ହୋଇଥାଏ । ଆହତ ଧ୍ୱନିର ଏହି ଅବସ୍ଥାକୁ 'ମଧ୍ୟମା' ଅବସ୍ଥା କୁହାଯାଇଥାଏ ।

**ବୈଖରୀ**—ଉଚ୍ଚାରିତ ବାକ୍ୟ ବା ଶବ୍ଦ ଗୁହ୍ୟଦ୍ୱାର, ନାଭିଦେଶ ହୃଦୟ ମଧ୍ୟ ଦେଇ କଣ୍ଠ ପାଖରେ ପହଞ୍ଚିଲା ବେଳେ ତାହା ବାକ୍‌ଯନ୍ତ୍ରରେ ଏକ ନିର୍ଦ୍ଦିଷ୍ଟ ରୂପନେଇ ମୁଖବାଟେ ପ୍ରକାଶିତ ହୋଇଥାଏ । ଏହାକୁ ଅନାହତ ଧ୍ୱନିର ବୈଖରୀ ଅବସ୍ଥା କୁହାଯାଇଥାଏ ।

ଆହତ ଧ୍ୱନିକୁ ନିର୍ଦ୍ଦିଷ୍ଟ ରୂପ ଦେବା ହେଉଛି କୁଣ୍ଡଳିନୀର କାର୍ଯ୍ୟ । ତେଣୁ କୁଣ୍ଡଳିନୀକୁ ନାଦ ରୂପା କୁହାଯାଇଥାଏ । କୁଣ୍ଡଳିନୀକୁ ମଧ୍ୟ ଯୋଗଶାସ୍ତ୍ରରେ ଓ ତନ୍ତ୍ର ଶାସ୍ତ୍ରରେ ବାଣୀ ରୂପା ଶକ୍ତି ବୋଲି କୁହାଯାଇଛି । କାରଣ ତାଙ୍କ ଦ୍ୱାରା ଆମର ବାକ୍‌ଶକ୍ତି ପ୍ରକାଶିତ ହୋଇଥାଏ । କୁଣ୍ଡଳିନୀଙ୍କର ନିବାସସ୍ଥଳ ହେଉଛି ମୂଳାଧାର ଚକ୍ର । ଯେଉଁଠାରୁ ଆହତ ଧ୍ୱନିର ପ୍ରଥମ ଉଦ୍‌ଗମ ହୁଏ ।

## ଅନାହତ ଧ୍ୱନି—

ଅନାହତ ଧ୍ୱନିକୁ ଯୋଗ ଶାସ୍ତ୍ରରେ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଗୋଟିଏ ଡାହାଣ କାନଦ୍ୱାରା ଅନୁଭବ କରାଯାଇଥାଏ । ଅନ୍ୟଟିକୁ ଊର୍ଦ୍ଧ୍ୱଗାମୀ

ଧାମ ରୂପେ ଅନୁଭବ କରାଯାଇଥାଏ । ଊର୍ଦ୍ଧ୍ୱଗାମୀ ଧାର ସହସ୍ରଦଳ ଚକ୍ରରେ ଶବ୍ଦ ରୂପରେ ପରିଣତ ହୋଇଥାଏ । ଏହି ଶବ୍ଦ ହେଉଛି କେଶାଗ୍ରର କୋଟି ଭାଗ ତୁଲ୍ୟ ସୂକ୍ଷ୍ମ । ଏହାକୁ ତନ୍ତ୍ର ଶାସ୍ତ୍ରରେ ଶିବ, ଯୋଗ ଓ ଉପନିଷଦ ଶାସ୍ତ୍ରରେ ବ୍ରହ୍ମ କୁହାଯାଇଛି । ଯୋଗ ସାଧନର ଲକ୍ଷ୍ୟ ହେଉଛି ଉପବେକ୍ତ ନାଦକୁ ଶବ୍ଦରେ ପରିଣତ କରିବା ବା ନାଦର ମୂଳ ଅନୁସନ୍ଧାନ କରିବା ଶବ୍ଦ । ରୂପକ ଶବ୍ଦ ବ୍ରହ୍ମ ପ୍ରସାରିତ ହୋଇ ନାଦରେ ପରିଣତ ହୋଇଛନ୍ତି । ନାଦକୁ ଊର୍ଦ୍ଧ୍ୱଗାମୀ କରି ସଙ୍କୁଚିତ କରି ଦେଲେ ତାହା ଶବ୍ଦ ବା ଶବଦ୍ ବ୍ରହ୍ମରେ ପରିଣତ ହୁଏ ଏବଂ ଶବ୍ଦ ବ୍ରହ୍ମଙ୍କର ସନ୍ଧାନ ମିଳେ । ସେହି ଶବ୍ଦ ବ୍ରହ୍ମରେ ମନ ବିଲୀନ ହୋଇଯାଏ । ତେଣୁ ଏହାକୁ ଲୟ ଯୋଗ ସାଧନା କୁହାଯାଇଥାଏ ।

ରାଧାସ୍ୱାମୀ ସମ୍ପ୍ରଦାୟ ଓ ଦୟାଲବାଗ୍ ସତ୍‌ସଙ୍ଗ ସମ୍ପ୍ରଦାୟରେ ଏହି ଲୟ ଯୋଗ ଉପରେ ବେଶୀ ଗୁରୁତ୍ୱ ଦିଆଯାଇଥାଏ । ରାଧା ଶବ୍ଦର ବିପରୀତ ହେଉଛି ଧାରା । ଆମ ଦେହ ମଧ୍ୟରେ ଶବ୍ଦର ଧାରା ଊର୍ଦ୍ଧ୍ୱରୁ ନିମ୍ନକୁ ପ୍ରବାହିତ ହେଉଛି । ଏହାକୁ ମୂଳାଧାର ଚକ୍ରରୁ ପୁଣି ଓଲଟାଇ ଅର୍ଥାତ୍ ଧାରାକୁ ରାଧାରେ ପରିଣତ କରି ସହସ୍ର ଦଳ ଚକ୍ରରେ ସ୍ୱାମୀ ସଙ୍ଗରେ ଯୁକ୍ତ କରିଲେ ରାଧାସ୍ୱାମୀଙ୍କର ବା ଶବ୍ଦ ବ୍ରହ୍ମଙ୍କର ସାକ୍ଷାତ୍ ହୋଇଥାଏ ବୋଲି ଉକ୍ତ ଦୁଇ ସଂପ୍ରଦାୟର ମତ । କବୀର ମଧ୍ୟ ଠିକ୍ ଏହା କହିଛନ୍ତି । ଯଥା—

କବୀର ଧାରା ଅଗମ କି ସଦ୍‌ଗୁରୁ ଦୟି ଲଖାୟ
ଉଲଟ ତାହି ସୁମିରନ କରୈ ସ୍ୱାମୀ ସଙ୍ଗ ଲଗାୟ

କଲ୍ୟାଣ ପତ୍ରିକାରେ "ବାମକୌଳିକ ତାନ୍ତ୍ରିକ ମାର୍ଗ" ଶୀର୍ଷକ ପ୍ରବନ୍ଧରେ ଶ୍ରୀ ଗୁଲାବ ସିଂହ ବର୍ମା ଲେଖିଛନ୍ତି— ଶ୍ରୀରାଧା କୁଳକୁଣ୍ଡଳିନୀ ସ୍ୱରୂପ । ଶରୀର ମଧ୍ୟସ୍ଥ ଷଡ଼ଚକ୍ର ବିଭିନ୍ନ ନିକୁଞ୍ଜ, ସାଧକ କୁଳକୁଣ୍ଡଳିନୀ ରୂପିଣୀ ରାଧାଙ୍କୁ ନେଇ ସହସ୍ରାର ଚକ୍ରସ୍ଥ ଶ୍ରୀକୃଷ୍ଣଙ୍କ ସହିତ ମିଳନ କରାଇ ରାସଲୀଳା ଦର୍ଶନ କରେ (କଲ୍ୟାଣ ପତ୍ରିକା ଯୋଗାଙ୍କ ପୃ ୮୪୨) ଏ ପ୍ରକାର ଲୟ ଯୋଗ ସାଧନାକୁ ଓଲଟ ସାଧନା ବା ସୁରତି ସାଧନା କୁହାଯାଇ ଥାଏ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାଧକ ବୃନ୍ଦ ଏହି ଲୟଯୋଗ ବା ଓଲଟ ସାଧନା କରୁଥିଲେ । ସେମାନଙ୍କର ରାଧାକୃଷ୍ଣ ମିଳନ ରାସରେ ଏହି ନାଦ ବିନ୍ଦୁ ତତ୍ତ୍ୱ ପ୍ରତିଫଳିତ । ଅଚ୍ୟୁତାନନ୍ଦଙ୍କ ବିଭିନ୍ନ 'ରାସ' କବିତାରେ ଏହାହିଁ ବର୍ଣ୍ଣିତ ହୋଇଛି ।

ନାଦ ବିନ୍ଦୁ ଉପନିଷଦ ଓ ଯୋଗ କୁଣ୍ଡଳିନୀ ଉପନିଷଦରେ ଲୟଯୋଗ ସାଧନା ବା ନାଦବିନ୍ଦୁ ମିଳନ ସାଧନା ବର୍ଣ୍ଣିତ ହୋଇଛି । ପ୍ରଥମେ ନାଦବିନ୍ଦୁ ଉପନିଷଦର ବର୍ଣ୍ଣନାକୁ ଏଠାରେ ସଂକ୍ଷେପରେ ପ୍ରଦାନ କରାଯାଉଛି -

ଏହି ଉପନିଷଦରେ ଓଁ ବା ପ୍ରଣବକୁ ହଂସ ଏବଂ ବ୍ରହ୍ମ ରୂପ କଳ୍ପନା କରାଯାଇଛି । ନାଦବିନ୍ଦୁ ସାଧନା ହେଉଛି ପ୍ରଣବ ସାଧନା । ଓଁ କାର ହେଉଛି ଦ୍ୱାଦଶ କଳାତ୍ମକ । ପ୍ରଣବ ହେଉଛନ୍ତି ହଂସ । 'ଅ' କାର ତାଂକର ଦକ୍ଷିଣ ଡେଣା 'ଉ'କାର ବାମଡେଣା ଏବଂ 'ମ' କାର ତାଙ୍କର ପୁଚ୍ଛ ଓ ଅର୍ଦ୍ଧମାତ୍ରା ଶିର ଅଟନ୍ତି । ସହସ୍ର ଦଳ ଚକ୍ରରେ ଯେଉଁ ବିନ୍ଦୁ ରୂପୀ ବ୍ରହ୍ମ ଅଛନ୍ତି ତାଂକ ଠାରୁ ପ୍ରଣବ ପ୍ରକାଶିତ । ତେଣୁ ପ୍ରଣବ ତାଙ୍କର ସ୍ୱରୂପ, ପ୍ରଣବର 'ଅ' କାର ବ୍ରହ୍ମା 'ଉ'କାର ବିଷ୍ଣୁ ଏବଂ 'ମ'କାର ହେଉଛନ୍ତି ଶିବ । ପ୍ରଣବରୁ ଏମାନଙ୍କର ସୃଷ୍ଟି । ପଦ୍ମାସନରେ ପ୍ରାଣାୟାମ ଦ୍ୱାରା କୁଣ୍ଡଳିନୀକୁ ସୁଷୁମ୍ନା ମାର୍ଗରେ ପ୍ରବେଶ କରାଇଲା ବେଳେ ଓଁ ଧ୍ୱନି ବାରମ୍ବାର ଉଚ୍ଚାରଣକରିବାକୁ ପଡ଼ିଥାଏ । ନାଦବିନ୍ଦୁ ଉପନିଷଦ୍‌ରେ କୁହାଯାଇଛି ଓଁ ଓଁ ଉଚ୍ଚାରଣ କରି କୁଣ୍ଡଳିନୀକୁ ଉଠାଇଲାବେଳେ ପ୍ରଥମେ 'ଅ' କାର ପରେ 'ଉ' କାର ଉପରେ ବିଜୟ ଲାଭ କରାଯାଏ । ଅର୍ଥାତ୍ ଓଁ ରୁ କେବଳ 'ମ' କାର ଧ୍ୱନି ଉଚ୍ଚରିତ ହୋଇ କ୍ରମେ ଅନ୍ୟ ଦୁଇ ଧ୍ୱନି ( ଅ, ଉ ) ଧୀରେ ଧୀରେ କ୍ଷୀଣ ହୋଇଯାଏ । କ୍ରମେ କ୍ରମେ ଏହି ନାଦ ଘନୀଭୂତ ହୋଇ ବିନ୍ଦୁରେ ପରିଣତ ହୋଇଯାଏ ଏବଂ ମନ ମଧ୍ୟ ସେଠାରେ ବିଲୀନ ହୋଇଯାଏ । ଏହି ସମୟରେ ବ୍ରହ୍ମଙ୍କର ଶବ୍ଦମୟ ବିନ୍ଦୁରୂପ ଓ ଜ୍ୟୋତିର୍ମୟ ବିନ୍ଦୁରୂପ ସହିତ ଜୀବର ପରିଚତି ଘଟେ ।

"ବୀଜ କ୍ଷରଂ" ପରଂବିନ୍ଦୁ ନାଦଂ ତସ୍ୟୋପରିସ୍ଥିତମ୍
ସ ଶବ୍ଦ ଚ୍ୟକ୍ଷରେ କ୍ଷୀଣେ ନିଃଶବ୍ଦଂ" ପରମଂ ପଦମ୍
ଅନାହତଂ ତୁ ଯଚ୍ଛବ୍ଦଂ ତସ୍ୟ ଶବ୍ଦସ୍ୟ ଯତ୍ପରମ୍
ତତ୍ପରଂ ବିନ୍ଦତେ ଯସ୍ତୁ ସ ଯୋଗୀ ଚ୍ଛିନ୍ନ ସଂଶୟଃ ।"

( ଧ୍ୟାନବିନ୍ଦୁ ଉପନିଷଦ ୨-୩ )

ଲୟ ଯୋଗ ସାଧନା କଲାବେଳେ ପ୍ରାଣାୟାମ ସାଧନାର ଆଶ୍ରୟ ନେଇ ମନ ଓ ପବନକୁ ସ୍ଥିର କରିବାକୁ ପଡ଼ିଥାଏ । ମନ ଓ ପବନ ସ୍ଥିର ହୋଇଗଲେ ଇଂଦ୍ରିୟ ମାନଙ୍କର ବହିର୍ଗମନ ମଧ୍ୟ ବନ୍ଦ ହୋଇଥାଏ । ଫଳରେ ବହିର୍ଜଗତର ଆହତ ଧ୍ୱନି ସାଧକର ଶ୍ରୁତି ଗୋଚର ହୋଇପାରେ ନାହିଁ । ଏହି ଅବସ୍ଥାରେ

ସେ ଦକ୍ଷିଣ କର୍ଣ୍ଣ ମଧ୍ୟରେ ଭିତରୁ ପ୍ରକାଶିତ ହେଉଥିବା ଅନାହତ ଧ୍ୱନି ଶ୍ରବଣ କରିବାକୁ ପାଏ ।

## ଅନାହତ ଧ୍ୱନି :—

ଅନାହତ ଧ୍ୱନି ସହସ୍ର ଦଳ କମଳରୁ ସୃଜିତ ହେଉଥାଏ । ଏହା ଦ୍ୱାଦଶ ପ୍ରକାର ବୋଲି ନାଦ ବିନ୍ଦୁ ଉପନିଷଦ୍‌ରେ କୁହାଯାଇଛି ।

ଯଥା—
ଆଦୌ ଜଳଧିଜୀମୂତ ଭେରୀ ଝର୍ଝର ସମ୍ଭବଃ
ମଧ୍ୟେ ମର୍ଦ୍ଦଳ ଶଙ୍ଖୋତ୍ଥା ଘଣ୍ଟା କାହାଳ ଜାସ୍ତଥା
ଅନ୍ତେ ତୁ କିଂକିଣୀ ବଂଶୀ ବୀଣା ଭ୍ରମର ନିସ୍ୱନଃ
ଇତି ନାନାବିଧାଃ ଶବ୍ଦାଃ ଶ୍ରୂୟନ୍ତେ ସୂକ୍ଷ୍ମ ସୂକ୍ଷ୍ମତଃ । ।୩୫।

× × ×

ଯସ୍ମିନ୍ ଜାପିବା ନାଦେ ଲଗତି ପ୍ରଥମମନଃ
ତତ୍ର ସ୍ଥିତ୍ୱା କୃତ୍ୱା ତେନ ସାର୍ଦ୍ଧଂ ବିଲୀୟତେ । ।୩୮।

ଅର୍ଥାତ୍ ଅନାହତ ଧ୍ୱନି କ୍ରମରେ ସମୁଦ୍ର ଗର୍ଜ୍ଜନ, ମେଘ ଗର୍ଜ୍ଜନ, ଭେରୀ, ମାଦଳ, ଶଙ୍ଖ, ଘଣ୍ଟା, କାହାଳି, କିଙ୍କିଣୀ, ବଂଶୀ, ଓ ଭ୍ରମର ଧ୍ୱନି ଭଳି କ୍ଷୀଣରୁ କ୍ଷୀଣତର ହୋଇ ନାନାପ୍ରକାରର ଶୁଭୁଥାଏ ।

× × ×

ମନର ସ୍ୱଭାବ ହେଉଛି ତାହା ଯେକୌଣସି ନାଦରେ ରୁଚି ଲଗାଏ । ସେଥିରେ ସ୍ଥିର ହୋଇଯାଏ ଏବଂ ତାହାସହିତ ମଧ୍ୟ ବିଲୀନ ହୋଇଯାଏ ।

ଅଚ୍ୟୁତାନନ୍ଦ ଶୂନ୍ୟ ସଂହିତା ଗ୍ରନ୍ଥରେ ଦ୍ୱାଦଶ ପ୍ରକାର ଅନାହତ ଧ୍ୱନିର ବର୍ଣ୍ଣନା ଦେଇଛନ୍ତି ।

ଯଥା :—
ଦ୍ୱାଦଶ ପ୍ରକାରେ ଶବ୍ଦ ହୋଇଛି ପ୍ରକାଶ
ଅନାଦି ଦେହରେ ଯିଏ କରିଅଛି ବାସ
ଭ୍ରମର ଝିଙ୍କାରି ଶାରି ପାରିଯେ କପୋତ
କୁକୁଟ ମୟୂର ଶଙ୍ଖ କାଂସରୁଖି ମତ

ବାଦ୍ୟ ଘଣ୍ଟ ଧରଣ ଯେ ଦ୍ୱାଦଶ ଶବଦ
ମହାଶୂନ୍ୟ ଭିତରୁ ଯେ ଛୁଟୁଅଛୁ ନାଦ ।

× × ×

ଏମନ୍ତ ହୋଇଣ ଧ୍ୱନି ପ୍ରକାଶି ଯେ ଅଛୁ
ଏଥିର ଉପରେ ଶବ୍ଦ ବ୍ରହ୍ମ ଅଭ୍ୟାସୁଛୁ ।
(ଶୂନ୍ୟସଂହିତା—୪ର୍ଥ ଅଧ୍ୟାୟ)

ଲୟ ଯୋଗ ବା ନାଦାନୁ ସନ୍ଧାନର ଗୁରୁତ୍ୱ ସମ୍ପର୍କରେ ନାଦବିନ୍ଦୁ ଉପନିଷଦରେ କୁହାଯାଇଛୁ । ଅନାହତ ନାଦର ଶ୍ରବଣ କ୍ରମେ କ୍ଷୀଣରୁ କ୍ଷୀଣତର ହୋଇ ଧ୍ୱନିବିହୀନ ହୋଇଥାଏ । ଏହି ଧ୍ୱନିବିହୀନ ଅବସ୍ଥାହିଁ ପରମପଦ ।

ସଶବ୍ଦ ଶ୍ଚାକ୍ଷରେ କ୍ଷୀଣେ ନିଃଶବ୍ଦଂ ପରମଂ ପଦମ୍
ସଦା ନାଦାନୁ ସନ୍ଧାନାତ୍ ସଂକ୍ଷୀଣା ବାସନା ଭବେତ୍ ୪୮,
ନିରଞ୍ଜନେ ବିଲୀୟତେ ମନୋବାୟୁ ନ ସଂଶୟଃ

ଲୟ ଯୋଗଦ୍ୱାରା ଅନାହତ ନାଦକୁ ଅନୁଭବ କରିବାକୁ ହେଲେ ଖେଚରୀ ମୁଦ୍ରାର ଆଶ୍ରୟ ନେଇ ତୁରୀୟାବସ୍ଥାକୁ ଯିବାକୁ ହୋଇଥାଏ । ଯୋଗକୁଣ୍ଡଳିନୀ ଉପନିଷଦ ଓ ଯୋଗରାଜ ଉପନିଷଦରେ ଏହାର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଓଡ଼ିଆ କବି ଚନ୍ଦ୍ରମଣିଦାସ ମଧ୍ୟ ସୁଧାସାର ଗୀତାରେ ଲେଖିଛନ୍ତି—

ଘଟକୁ ଛାଡ଼ିଣ ଆନ ଘଟେ ଯାଇ ରହଇ ଚେତା ଶବଦ,
ଖେଚରୀ ମୁଦ୍ରାରେ ତୁରୀୟେ ରହିଲେ ଶୁଭେ ଅନାହତ ନାଦ ।
(ତୃତୀୟ ବୋଲି)

## ଖେଚରୀ ମୁଦ୍ରା :—

କପାଳ କୁହରେ ଜିହ୍ୱା ପ୍ରବିଷ୍ଟା ବିପରୀତ ଗା । ୧ ।
ଭ୍ରୁବୋରନ୍ତର୍ଗତା ଦୃଷ୍ଟିର୍ମୁଦ୍ରାଭବତି ଖେଚରୀ । ୫୨ ।
ନରୋଗୋ ମରଣଂ ତସ୍ୟ ନ ନିଦ୍ରା ନକ୍ଷୁଧା ତୃଷା
ନ ଚ ମୂର୍ଚ୍ଛା ଭବେତ୍ତସ୍ୟ ଯୋ ମୁଦ୍ରାଂ ବେତ୍ତିଂ ଖେଚରୀମ୍ । ୫୩ ।
ପୀଡ୍ୟତେ ନ ସ ରୋଗେଣ ଲିପ୍ୟତେ ନ ସ କର୍ମଭିଃ
ବଧ୍ୟତେ ନ ଚ କେନାପି ଯୋମୁଦ୍ରାଂ ବେତ୍ତି ଖେଚରୀମ୍ । ୫୪ ।

ତତ୍‌ଂ ଚରତ ଖେ ଯସ୍ମାଲ୍ଲିଙ୍ଗ୍ୱା ଚରତ ଖେଯତଃ
ତେନେୟଂ ଖେଚରୀ ବଦ୍ୟା ସର୍ବସିଦ୍ଧ ନମସ୍କୃତା । ୫୫ ।

(ଯୋଗ ଚୂଡ଼ାମଣି ଉପନିଷଦ–-ସାଧନ ଖଣ୍ଡ)

ଯୋଗ ଚୂଡ଼ାମଣି ଉପନିଷଦ୍‌ର ଉପରୋକ୍ତ ବର୍ଣ୍ଣନା ଅନୁଯାୟୀ ଜିହ୍ୱାକୁ ଓଲଟାଇ କପାଳ କୁହରରେ ପ୍ରବିଷ୍ଟ କରାଇବା ଏବଂ ଦୁଇ ଭ୍ରୂମଧ୍ୟରେ ଦୃଷ୍ଟି ସ୍ଥିର କରିବା ଦ୍ୱାରା ଖେଚରୀ ମୁଦ୍ରାହୁଏ । ଏହା କରିବା ଦ୍ୱାରା ରୋଗ, ମରଣ, ନିଦ୍ରା, କ୍ଷୁଧା, ତୃଷା, ଭୟ ରହେନାହିଁ । ଖେଚରୀ ସାଧକ କେବେ ମୂର୍ଚ୍ଛାହୁଅନ୍ତି ନାହିଁ । ରୋଗରେ ପୀଡ଼ିତ ହୁଅନ୍ତି ନାହିଁ କିମ୍ବା କର୍ମରେ ଲିପ୍ତ ହୁଅନ୍ତି ନାହିଁ । ଏହି ମୁଦ୍ରା ସାଧନା ଦ୍ୱାରା ଚିତ୍ତ ଆକାଶରେ ବିଚରଣ କରେ ତେଣୁ ଏହାକୁ ଖେଚରୀ ମୁଦ୍ରା କୁହାଯାଇଥାଏ । ( ଛତିଶ ଗୁପ୍ତ ଗୀତା- ବିଂଶଅଧ୍ୟାୟ )

## ଖେଚରୀ ମୁଦ୍ରା ସାଧନାର ଉଦ୍ଦେଶ୍ୟ

ଯୋଗ ଶାସ୍ତ୍ରରେ କୁହାଯାଇଛି ସହସ୍ର ଦଳ ମଧ୍ୟରେ ଥିବା ଚନ୍ଦ୍ରମଣ୍ଡଳରୁ ଅମୃତ ଝରି ବ୍ରହ୍ମରନ୍ଧ୍ର ପଥ ବାଟେ ସୁଷୁମ୍ନାକୁ ଆସେ ଏବଂ ତାହା ସୁଷୁମ୍ନା ପଥରେ ଷଟ୍‌ଚକ୍ର ଭେଦକରି ମୂଳାଧାର ଚକ୍ରରେ ପଞ୍ଚ ଉତ୍ତ୍ୱପରେ ଶୁଷ୍କ ହୋଇଯାଏ । ବ୍ରହ୍ମରନ୍ଧ୍ରରୁ ପ୍ରବାହିତ ଅମୃତ ଧାରାକୁ ଶୁଖିବାକୁ ନଦେଇ ଖେଚରୀ ମୁଦ୍ରାରେ ତାହାକୁ ପାନ କଲେ ସାଧକ ମୃତ୍ୟୁ ଆଦି ଜୟ କରିଥାଏ ।

## ଯୋଗ କୁଣ୍ଡଳିନୀ ଉପନିଷଦ୍‌ରେ କୁହାଯାଇଛି—

ଶରୀରର ଆଧାର ହେଉଛି ବିନ୍ଦୁ ବା ବୀର୍ଯ୍ୟ । ଏହି ବିନ୍ଦୁ ବା ବୀର୍ଯ୍ୟ ବ୍ରହ୍ମ ରନ୍ଧ୍ରପଥ ଦେଇ ନିର୍ଗତ ହୋଇଯିବା ଫଳରେ ମନୁଷ୍ୟ ମୃତ୍ୟୁର ଶିକାର ହୁଏ । ଖେଚରୀ ମୁଦ୍ରାରେ ଜିହ୍ୱାକୁ ଓଲଟାଇ ବ୍ରହ୍ମରନ୍ଧ୍ର ପାଖରେ ସ୍ଥାପନ କଲେ ବ୍ରହ୍ମରନ୍ଧ୍ର ପଥ ବନ୍ଦ ହେବା ସହିତ ବିନ୍ଦୁ ( ବୀର୍ଯ୍ୟ ) କ୍ଷରଣ ବନ୍ଦ ହୋଇ ଯାଇଥାଏ । ଏପରିକି ଏଭଳି ସାଧନାରେ ସିଦ୍ଧ ସାଧକ ନାରୀକୁ ଆଲିଙ୍ଗନ କଲେ ମଧ୍ୟ ତାହାର ବୀର୍ଯ୍ୟ ସ୍ଖଳିତ ହୁଏ ନାହିଁ । ଯେତେବେଳେ ପର୍ଯ୍ୟନ୍ତ ବିନ୍ଦୁ (ବୀର୍ଯ୍ୟ) ଶରୀର ମଧ୍ୟରେ ଥାଏ ସେତେବେଳ ପର୍ଯ୍ୟନ୍ତ ମୃତ୍ୟୁର ଭୟ ନଥାଏ । ତେଣୁ ଖେଚରୀ ମୁଦ୍ରାରେ ବିନ୍ଦୁକୁ ଶରୀର ମଧ୍ୟରେ ରଖାଯିବା ବିଧେୟ । ( ୫୭-୬୦ ସାଧନା ଖଣ୍ଡ ) ଓଡ଼ିଆଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ଏହି ବିନ୍ଦୁ ବା ବୀର୍ଯ୍ୟରକ୍ଷା ଉପରେ ଗୁରୁତ୍ୱ ଦିଆଯାଇଛି । ଯଥା— "ବିନ୍ଦୁ ଟଳିଲେ କାୟା ଗୋଟି ଟଳିବ କମଳେ ବିନାଶେ ବିନ୍ଦୁ ।"

## ଖେଚରୀ ମୁଦ୍ରା ସାଧନା—

ସାଧକଙ୍କୁ ସାତଦିନ ପର୍ଯ୍ୟନ୍ତ ତାଳୁର ମୂଳକୁ ଘଷି ମଇଳା ଦୂର କରିବାକୁ ହୁଏ ଏବଂ ତତ୍ପରେ କ୍ଷୁରରେ ଏହି ସ୍ଥାନର କେଶକୁ କାଟିବାକୁ ହୁଏ । କଟା ସ୍ଥାନରେ ହଳଦୀ ଓ ସୈନ୍ଧବ ଲବଣର ଚୂର୍ଣ୍ଣକୁ ଘଷି ୭ ଦିନ ପରେ ପୁଣି ବାଳ କାଟିବା ଆବଶ୍ୟକ । ଏହିପରି କରିବା ଦ୍ୱାରା ଜିହ୍ୱାର ତାଳୁ ସହିତ ସମ୍ପର୍କ ଛିନ୍ନ ହୁଏ । ତତ୍ପରେ ଜିହ୍ୱାର ଅଗ୍ରଭାଗକୁ କନାରେ ଧରି ଧୀରେ ଧୀରେ ବାହାରକୁ ଟଣାଯାଇ ଥାଏ । ୬ମାସ ପର୍ଯ୍ୟନ୍ତ ଅଭ୍ୟାସ କରି ଜିଭକୁ ଟାଣିଲେ ଜିଭ ବଢ଼ି ଭ୍ରୂଲତା ପାଖରେ ପହଞ୍ଚେ । ତିନିବର୍ଷ ଏହିପରି ଅଭ୍ୟାସ କଲେ ଜିଭ ବଢ଼ି ବଢ଼ି କର୍ଣ୍ଣ କୂପ ପର୍ଯ୍ୟନ୍ତ ଲମ୍ବିଯାଏ । ଏହାପରେ ସାଧକ ଏହି ଲମ୍ବ ଜିଭକୁ ଓଲଟାଇ ପଛକୁ ଠେଲି ବ୍ରହ୍ମରନ୍ଧ୍ରର ଦ୍ୱାରକୁ ଆବୃତ୍ତ କରେ ।

ଖେଚରୀମୁଦ୍ରା ସାଧନବେଳେ "ହ୍ରୀଂ ଭଂ ସଂ ମଂ ପଂ ସଂ କ୍ଷମ୍" ଏହି ଖେଚରୀ ବୀଜମନ୍ତ୍ର ଜପକଲେ ଶୀଘ୍ର ସିଦ୍ଧି ମିଳିଥାଏ । ଖେଚରୀ ମୁଦ୍ରାସାଧନ-ବେଳେ ଜିହ୍ୱାକୁ ବ୍ରହ୍ମରନ୍ଧ୍ର ପାଖରେ ସ୍ଥାପନକରି ସେହି ସ୍ଥାନକୁ ଜିହ୍ୱାରେ ମନ୍ଥନ କରିବାକୁ ହୋଇଥାଏ । ମନ୍ଥନ ପ୍ରତ୍ୟେକଦିନ ନକରି ମାସରେ ଥରେ କରାଯାଇ-ଥାଏ । ବାରବର୍ଷ ଖେଚରୀମୁଦ୍ରା ସାଧନକଲେ ସିଦ୍ଧି ଆସିଥାଏ ।

## ସପ୍ତାଙ୍ଗ ଯୋଗ :—

ସପ୍ତାଙ୍ଗ ଯୋଗ ସାଧନା କେବଳ ନାଥ ସଂପ୍ରଦାୟରେ ଗୁରୁତ୍ୱଲାଭ କରିଥିଲା । ଓଡ଼ିଶାରେ ନାଥଧର୍ମର ଲୋକପ୍ରିୟତା ଥିବା ହେତୁ ଏହାକୁ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତସାଧକମାନେ ସେମାନଙ୍କ ସାଧନାର ଅନ୍ତର୍ଭୁକ୍ତ କରିନେଇଥିଲେ । ପଞ୍ଚସଖାଙ୍କ ଆବିର୍ଭାବ ପୂର୍ବରୁ ସପ୍ତାଙ୍ଗ ଯୋଗ ସାଧନା କିପରି ଓଡ଼ିଶାର ସାଧନା-ପରମ୍ପରାରେ ଗୃହୀତ ହୋଇଥିଲା, ତାହାର ପ୍ରମାଣ ସାରଳା ମହାଭାରତରେ ଦେଖିବାକୁ ମିଳିଥାଏ । ଯଥା—

ବ୍ରାହ୍ମଣରୂପଧରିଣ ଦେବ ବୃହସ୍ପତି
ଶ୍ରୀହସ୍ତରେ ଧରିଛନ୍ତି ସପତାଙ୍ଗ ପୋଥି ।
( ଉଦ୍‌ଯୋଗପର୍ବ )

ସପ୍ତାଙ୍ଗ ଯୋଗସାଧନା ଅଷ୍ଟାଙ୍ଗ ଯୋଗ ସାଧନାଠାରୁ ଭିନ୍ନ । ରବିବାର ଠାରୁ ଶନିବାର ମଧ୍ୟରେ ସପ୍ତବାରର ବିଭିନ୍ନ ବାରରେ ଶ୍ୱାସପ୍ରବାହକୁ ଦକ୍ଷିଣ ଓ

ବାମନାସାରେ ନିୟନ୍ତ୍ରିତ କରିବା ଏବଂ ବିଭିନ୍ନ କାର୍ଯ୍ୟସାଧନକୁ ବିଭିନ୍ନ ସମୟର ଶ୍ୱାସପ୍ରବାହ ଅନୁଯାୟୀ ନିୟନ୍ତ୍ରଣ କରିବା ହେଉଛି 'ସପ୍ତାଙ୍ଗ ଯୋଗ ସାଧନା'। ଶ୍ୱାସପ୍ରବାହକୁ ସ୍ୱର କୁହା ଯାଉଥିବାରୁ ଏହାକୁ ସ୍ୱରସାଧନା ମଧ୍ୟ କୁହାଯାଇଥାଏ ।

ଯଶୋବନ୍ତଙ୍କ ରଚିତ ଶିବସ୍ୱରୋଦୟ ଗ୍ରନ୍ଥରେ ଏହି ସ୍ୱର ସାଧନା ବିଷୟ ବିସ୍ତୃତ ଭାବରେ ଆଲୋଚିତ ହୋଇଅଛି । ଏହା ସଂସ୍କୃତ ଶିବସ୍ୱରୋଦୟ ଗ୍ରନ୍ଥର ଏକ ଅନୁବାଦ ।

ଗୋରେଖ ମଲ୍ଲିକା କଥୋପକଥନ ଛଳରେ ଲିଖିତ 'ସପ୍ତାଙ୍ଗଲେଖନ'ରେ ସପ୍ତାଙ୍ଗ ସାଧନାର ଲକ୍ଷ୍ୟ ସମ୍ବନ୍ଧରେ ବର୍ଣ୍ଣନା କରାଯାଇ କୁହାଯାଇଛି—

ସପ୍ତବାର ଏଥି ସପ୍ତ ଆବରଣ
ସପ୍ତାଙ୍ଗ ଯୋଗ ପୁଣ କହିବା ଏବେ ଶୁଣ ।
ଜ୍ଞାନସପ୍ତଭୂମି ବୋଲି ବେଦାନ୍ତରେ କହି
ସପ୍ତାଙ୍ଗ ଜ୍ଞାନଭୂମି ସପ୍ତବାର ଏହି ।

ଭକ୍ତକବି ବଳରାମଦାସ ସପ୍ତାଙ୍ଗ ଯୋଗସାର ଟୀକାରେ ସପ୍ତାଙ୍ଗଯୋଗ-ସାଧନାର ବିବରଣୀ ପ୍ରଦାନ କରାଯାଇଛି । ଏହା ଗୋରେଖମଲ୍ଲିକା ସମ୍ବାଦ ଛନ୍ଦରେ ଲିଖିତ ।

ପ୍ରଣବ ଯୋଗ ଏ ଚନ୍ଦ୍ର ସୂର୍ଯ୍ୟ ନାଡ଼ୀବନ୍ଧ
ସାତବାର ଗଣ୍ଠି ସୂତ୍ର ପଡ଼ିଅଛି ସନ୍ଧି ।୮୭।
ଇଅଁଳା ପିଅଁଳା ପୂତା ସୁଷୁମ୍ନା ଛନ୍ନ
ଉଦୟ ହୋଇଅଛନ୍ତି ସାତବାର ଘେନ ।୮୭।
ପିଅଁଳା ଉଦୟେ ରବି ମଣ୍ଡଳୁ ଚାହିଁବୁ
ଘୃଣବାର ଜଗି ଦିବାକରଙ୍କୁ ଭେଟିବୁ
ଇଅଁଳା ଉଦୟ ସୋମମଣ୍ଡଳ ସୁମର
ଛନ୍ନଦ୍ୱାର ଜଗି ପୁଣ ଭେଟି ନିଶାକର ।୮୯।
ଏ ବେନି ସଙ୍ଗମ ପୁଣ ସୁଷୁମ୍ନା ଭେଟ
ଶୂନ୍ୟମେରୁ ବୋଲି ତାକୁ ଅଚଳ ନିକୂଟ ।

ବ୍ରହ୍ମଶାଙ୍କୋଳି ଗ୍ରନ୍ଥରେ ଅଚ୍ୟୁତାନନ୍ଦ ସପ୍ତାଙ୍ଗଯୋଗର ବିବରଣୀ ପ୍ରଦାନ କରିଥିଲେ ହେଁ ଏହା ଅପେକ୍ଷା ଅଷ୍ଟାଙ୍ଗ ଯୋଗସାଧନାକୁ ଗୁରୁତ୍ୱ ଦେଇଛନ୍ତି ।

ଶିବସ୍ୱରୋଦୟସ୍ତ ଛନ୍ଦର ବର୍ଣ୍ଣନାନୁଯାୟୀ ଦକ୍ଷିଣ ନାସାରେ ସ୍ୱର ଉଦୟ ବେଳେ କ୍ରୁରକର୍ମ, କଠିନ କର୍ମ, ଭୋଜନ ଓ ପୂଜା ଆଦି କରାଯିବା ଉଚିତ ଏବଂ ବାମନାସାରେ ସ୍ୱର ଉଦୟ ଅର୍ଥାତ୍ ଶ୍ୱାସ ପ୍ରବାହ ବେଳେ ଶୟନ, ଶାନ୍ତିକର୍ମ ଓ ଶୁଭକର୍ମମାନ କରାଯିବା ଉଚିତ । ସୁଷୁମ୍ନା ନାଡ଼ୀରେ ସ୍ୱରପ୍ରବାହ ବେଳେ ଧ୍ୟାନ, ଯୋଗସାଧନା ଆଦି କାର୍ଯ୍ୟକଲେ ଶୀଘ୍ର ସିଦ୍ଧିଲାଭ ହୋଇଥାଏ । ଯୋଗୀ ଚେଷ୍ଟା-କରି ଶନି, ରବି, ମଙ୍ଗଳ ଓ ଗୁରୁବାରରେ ଶ୍ୱାସପ୍ରବାହକୁ ଦକ୍ଷିଣନାସାରେ ବା ସୂର୍ଯ୍ୟନାଡ଼ୀରେ ଏବଂ ସୋମ, ବୁଧ ଓ ଶୁକ୍ରବାରରେ ଶ୍ୱାସପ୍ରବାହକୁ ବାମନାସା ବା ଚନ୍ଦ୍ରନାଡ଼ୀରେ ରଖିପାରିଲେ କାଳଚକ୍ରର ସମ୍ମୁଖୀନ ହୋଇନଥାଏ । ଶନି, ରବି, ମଙ୍ଗଳ ଓ ଗୁରୁବାରରେ ସୂର୍ଯ୍ୟନାଡ଼ୀରେ ଶ୍ୱାସ ପ୍ରବାହିତ ହେଲାବେଳେ ଯୋଗ-ସାଧନା କରାଯିବା ବିଧେୟ ।

ବାମନାସାରେ ଓ ଦକ୍ଷିଣନାସାରେ ଶ୍ୱାସପ୍ରବାହ ହେଲାବେଳେ ପୃଥ୍ୱୀତତ୍ତ୍ୱ, ଜଳତତ୍ତ୍ୱ, ଅଗ୍ନିତତ୍ତ୍ୱ, ବାୟୁତତ୍ତ୍ୱ ଓ ଆକାଶତତ୍ତ୍ୱର ଉଦୟ କ୍ରମାନୁସାରେ ହୋଇଥାଏ । ଏହି ତତ୍ତ୍ୱକୁ ଜାଣି ବିଭିନ୍ନ କାର୍ଯ୍ୟ କରାଯିବାପାଇଁ ଏହି ଗ୍ରନ୍ଥରେ ନିର୍ଦ୍ଦେଶ ଦିଆଯାଇଛି ।

ଜଗନ୍ନାଥ ଦାସ 'ତୁଳାଭିଣା' ଗ୍ରନ୍ଥରେ ସ୍ୱରସାଧନା ଉପରେ ଗୁରୁତ୍ୱଦେଇ ଲେଖିଛନ୍ତି :—

ଷୋଳକଳା ପୁତାରେ ବାମ ପୁଡ଼ା ନାସାରେ ବହଇ, ଏହିଟି ଚନ୍ଦ୍ର ଅଙ୍ଗ, ମହାକାଳ ପ୍ରଳୟ ଜଳ, ଏହାକୁ ଜାଣିଥିବୁ । ଏହିଟି ଅର୍ଦ୍ଧମାତ୍ରା ପ୍ରାଣୀମାନଙ୍କୁ ନାଶ କରଇ । ଏହାକୁ ଜାଣିଲେ ପୁତାରେ ଅଜରାମର ହେବୁ । ଏ ଦୁଇଘଡ଼ି ଉଦୟ ଅସ୍ତ ହେଉଛନ୍ତି, ଡ଼ାହାଣ ଅଙ୍ଗ ପୁତାରେ ସୂର୍ଯ୍ୟଙ୍କର ଦୁଇଘଡ଼ି । ଏ ଦୁଇଘଡ଼ି ପୁତାରେ ଭୋଗାଙ୍ଗ । ଏ ଦୁଇଘଡ଼ିରେ ଅନ୍ନଭୁଞ୍ଜିବୁ । ଚନ୍ଦ୍ରଘରେ ପୁତାରେ କିଛି ନ ଛୁଇଁବୁ, ଭକ୍ଷିଲେ ଅବଶ୍ୟ ମରିବୁ । ରୋଗହେବ, ହାଇହେବ, ଛିଙ୍କ ହେବ, ନିଦ୍ରାହେବ, ମୈଥୁନ ସ୍ୱପନ ସୁନ୍ଦରୀ ହରିବ, ଶୁଣ ପୁତାରେ ଚନ୍ଦ୍ରଘରେ ଖାଇଲେ ଏତେ ବ୍ୟାଧି ହୁଅଇ ଅନ୍ନ ପାଚଇ । ରବିରେ ଭୁଞ୍ଜିଲେ ପୁତାରେ ଅଙ୍ଗରେ ପଡ଼ି ଭସ୍ମ ହୁଅଇ, ସକଳ ବ୍ୟାଧି ନାଶଯାଇ ଏହିକଥା ଧରି ପୁତାରେ ଯୋଗସାଧନ କରି-ଯୋଗାଧି ହୋଇବୁ, କାଳ ଘଉଡ଼ିବୁ ।

(ଦଶମ ଅଧ୍ୟାୟ)

ସପ୍ତାଙ୍ଗ ଯୋଗ ସାଧନା ହେଉଛି ଅଷ୍ଟାଙ୍ଗ ଯୋଗ ସାଧନାର ପୂର୍ବପ୍ରସ୍ତୁତି । ତେଣୁ ସପ୍ତାଙ୍ଗ ଯୋଗସାଧନାରେ ଅଟକି ନଯାଇ ଅଷ୍ଟାଙ୍ଗ ଯୋଗସାଧନା ପାଇଁ ତତ୍ପର ହେବା ଆବଶ୍ୟକ । ସେଥିପାଇଁ ଅଚ୍ୟୁତାନନ୍ଦ ଲେଖିଛନ୍ତି—

ସେ ଯେ ସପ୍ତାଙ୍ଗ ଯୋଗ କର୍ମ, ଅନେକ ବାର ମତ ଭ୍ରମ
ସପ୍ତାଙ୍ଗ ସାଧିବୁ ତୁ ଯେବେ, ଅନେକ ଧନେ ସିଦ୍ଧି ନେବେ ।

(ବ୍ରହ୍ମଣାଙ୍କୋଳ— ୩ୟ କଲ୍ପ)

ଚନ୍ଦ୍ରମଣି ଦାସ ସୁଧାର ଗୀତାରେ ଲେଖିଛନ୍ତି—

ସପ୍ତାଙ୍ଗ ଯୋଗେ ଯେ ଜଣିଗଲାଠାରୁ ଅଷ୍ଟାଙ୍ଗ ଯୋଗେ ପଶଇ
ଅଷ୍ଟାଙ୍ଗ ଯୋଗରେ ପଶିଲେ ଯେମନ୍ତେ ଆଉ ଜନ୍ମମୃତ୍ୟୁ ନାହିଁ ।

(୫ମ ବୋଲ)

## ଅନ୍ୟାନ୍ୟ ଯୋଗସାଧନା—

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଅନ୍ୟ କେତେ ଗୋଟି ଯୋଗସାଧନା ବିଷୟ ପ୍ରଦାନ କରାଯାଇଛି । ସେଗୁଡ଼ିକ ହେଉଛି ଛାୟା ସାଧନା, ଅବାଙ୍ମନୋଗତ ସାଧନା । ପତଞ୍ଜଳିଙ୍କ ଯୋଗଚର୍ଚ୍ଚା ସମ୍ବନ୍ଧିତ ଉପନିଷଦ ସମୂହ କିମ୍ବା କୌଣସି ତନ୍ତ୍ରଗ୍ରନ୍ଥରେ ଛାୟାସାଧନା ବିଷୟରେ ବର୍ଣ୍ଣନା କରାଯାଇନାହିଁ । କେବଳ ଅଚ୍ୟୁତାନନ୍ଦ ଶୂନ୍ୟ ସଂହିତା ଓ ଛୟାଳିଶ ପଟଳରେ ଏହାର ବର୍ଣ୍ଣନା ଦେଇଛନ୍ତି । ଅବାଙ୍ମନୋଗତ ସାଧନା ସହିତ ପ୍ରଣବୋପନିଷଦର ପ୍ରଣବ ସାଧନାର କେତେକ ସାମ୍ୟ ଥିଲେ ହେଁ ଏହା ସେଥିରୁ ସମ୍ପୂର୍ଣ୍ଣ ଗୃହୀତ ବୋଲି କହିବା ମଧ୍ୟ ଠିକ୍ ନୁହେଁ ।

## ଛାୟା ସାଧନା —

ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତା ଗ୍ରନ୍ଥର ପଞ୍ଚମ ଅଧ୍ୟାୟ ଓ ଛୟାଳିଶ ପଟଳ ଗ୍ରନ୍ଥର ଅଷ୍ଟାଦଶ ପଟଳରେ ପ୍ରଦତ୍ତ ଛାୟା ସାଧନାର ପ୍ରଣାଳୀକୁ ଏଠାରେ ସଂକ୍ଷେପରେ ପ୍ରଦାନ କରାଯାଉଅଛି ।

ଆକାଶ ନିର୍ମଳ ଥିଲା ବେଳେ ସାଧକ ଶୁଚିପୂତ ହୋଇ ନିର୍ଜନ ସ୍ଥାନରେ ଏକାକୀ ଠିଆ ହେବ ଏବଂ ପ୍ରଥମେ ତଳେ ପଡ଼ିଥିବା ନିଜ ଛାୟାକୁ ଦୃଷ୍ଟି ଦେବ । ଏହି ସମୟରେ ସେ ଓଁକାର ବ୍ରହ୍ମଙ୍କୁ ହୃଦୟରେ ସ୍ମରଣ କରିବାକୁ ହେବ । କିଛି ସମୟ ନିଜ ଛାୟାକୁ ଦୃଷ୍ଟି ଦେଲା ପରେ ସାଧକ ଆକାଶକୁ ଚାହିଁ ଆକାଶରେ ଆପଣାଭଳି ଦେଖା ଯାଉଥିବା ଛାୟାବ୍ରହ୍ମଙ୍କୁ ଲକ୍ଷ୍ୟ କରିବ । ଛାୟାପୁରୁଷ ଯଦି ଶ୍ୱେତବର୍ଣ୍ଣ ବା ରଙ୍ଗବର୍ଣ୍ଣ ଦେଖାଯାଆନ୍ତି, ତେବେ ସୁପୁଣ୍ୟୋଦୟ, ସନ୍ତାନଲାଭର

ସୂଚନା ମିଳେ । ଯେଉଁଦିନ ମଳିନ ଦେଖାଯିବ ସେଦିନ ମାନହାନି ଓ ଦ୍ରବ୍ୟହାନି ଘଟିବ । ଅଣାକ୍ଷର ମନ୍ତ୍ରକୁ ସ୍ମରଣ କଲେ ଶ୍ୱେତବର୍ଣ୍ଣର ଛାୟାଅଙ୍ଗ ଆକାଶରେ ଦେଖାଯିବ । ସାଧକର ଅଙ୍ଗରେ ପାପ ଥିଲେ ଛାୟାପୁରୁଷ ବିରୂପ ଦେଖାଯାଇଥାନ୍ତି । ଛାୟା ସାଧନା ପ୍ରତ୍ୟେକ ଦିନ କରିବା ଉଚିତ । ଏହାଦ୍ୱାରା ଅଙ୍ଗଶୁଦ୍ଧି ପାପନାଶ ହୋଇଥାଏ ଓ ଋଙ୍ଗସିଦ୍ଧି ହୋଇଥାଏ । ଛାୟାସାଧନା ଦ୍ୱାଦଶ ବର୍ଷରେ ସିଦ୍ଧ ହୋଇଥାଏ ଏବଂ ଛାୟାସାଧକ ମୃତ୍ୟୁପରେ ଛାୟାରେ ମିଶିଯାଏ । ଛାୟା ଶୂନ୍ୟରେ ମିଶିଯାଏ । (ଶୂନ୍ୟ ସଂହିତା – ୫ମ ଅଧ୍ୟାୟ) । ଛାୟାଲକ୍ଷଣ ପଟଳରେ ଛାୟାପୁରୁଷ ଦର୍ଶନର ଫଳ ସାମାନ୍ୟ ଅଧିକ ଦିଆଯାଇଛି । ତାହା ନିମ୍ନରେ ଦିଆଗଲା ।

ଶ୍ୱେତବର୍ଣ୍ଣ--ଶୁଭକର୍ମ କାରକ

ରକ୍ତବର୍ଣ୍ଣ—ତୀର୍ଥାଟନ କାରକ

ପାଣ୍ଡୁବର୍ଣ୍ଣ—ବ୍ୟାକୁଳତା ବୃଦ୍ଧି କାରକ

କୃଷ୍ଣବର୍ଣ୍ଣ—ସର୍ବନାଶକ

ଦକ୍ଷିଣବାହୁ ନାଶ ହେଲେ—ଭ୍ରାତୃ ନାଶ

ବାମ ଭୁଜ ଅଦୃଶ୍ୟ ହେଲେ—ବନ୍ଧୁନାଶ

ଜାନୁ ଅଦୃଶ୍ୟ ହେଲେ—ଜାୟା ନାଶ

ପାଦ ଅଦୃଶ୍ୟ ହେଲେ—ସନ୍ତାନ ନାଶ

ମସ୍ତକ ଅଦୃଶ୍ୟ ହେଲେ—ଛ ମାସରେ ନିଜର ମୃତ୍ୟୁ

ଛାଇ ଆଦୌ ଦେଖା ନଗଲେ—ବୈର, ଖଳ, ଖଣ୍ଡ ଆଦିଙ୍କଠାରୁ ବିପଦ ପ୍ରାପ୍ତି

## ଅବାଡ଼ ଜ୍ୟୋତି ସାଧନା—

ଶୂନ୍ୟ ସଂହିତାର ୫ମ ଅଧ୍ୟାୟରେ ପ୍ରଦତ୍ତ ଅବାଡ଼ ଜ୍ୟୋତି ସାଧନାର ବିବରଣୀକୁ ସଂକ୍ଷେପରେ ନିମ୍ନରେ ଦିଆଯାଉଛି—

ଏକାକ୍ଷର ଓଁକାର ବ୍ରହ୍ମ ହେଉଛି ଜ୍ୟୋତିର୍ମୟ । ତାଙ୍କ ଜ୍ୟୋତିରେ ଶ୍ୱେତ, ପୀତ, ଲୋହିତ, ନୀଳ ଓ କୁଙ୍କୁମ ଏହିପରି ପାଞ୍ଚ କଳାର ମିଶ୍ରଣ ହୋଇଛି । ଏହି ପାଞ୍ଚକଳାଯୁକ୍ତ ଜ୍ୟୋତିର୍ମୟ ଏକାକ୍ଷର ବ୍ରହ୍ମଙ୍କର ଧ୍ୟାନ ହେଉଛି ଜ୍ୟୋତି-ସାଧନା ।

## ସାଧନା ଉପାୟ—

ସାଧକ ପଦ୍ମାସନରେ ବସି ଲଲାଟ (ଭ୍ରୂଲତା ଦ୍ୱୟର ମଧ୍ୟବର୍ତ୍ତୀ ସ୍ଥାନ)କୁ ଅପଲକ ଦୃଷ୍ଟିରେ ଲକ୍ଷ୍ୟ କରିବ । ଏହିଭଳି ଅଭ୍ୟାସ କରୁ କରୁ ଲଲାଟରେ ଜ୍ୟୋତି ଦର୍ଶନ ହେବ । ଏହି ଜ୍ୟୋତି ହେଉଛି ଅବାଡ଼ । ଏହା ବିଦ୍ୟୁତ୍‌ମାଳା ସଦୃଶ ଏବଂ ଜାଲମାନ ଭଳି ଦେଖାଯାଏ । ସେହି ଜ୍ୟୋତି ମଧ୍ୟରେ ବ୍ରହ୍ମଙ୍କର ବିନ୍ଦୁରୂପ କ୍ରମେ ଦେଖାଯିବ । ଏହା ହେଉଛି ଜ୍ୟୋତି ସାଧନା ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଏହି ଯୋଗତତ୍ତ୍ୱର ବିସ୍ତୃତ ବର୍ଣ୍ଣନା କରାଯାଇଛି । ଏଥିପାଇଁ ବିଭିନ୍ନ ପ୍ରତୀକାତ୍ମକ ଶବ୍ଦର ପ୍ରୟୋଗ ମଧ୍ୟ ହୋଇଛି । ସେହି ଶବ୍ଦଗୁଡ଼ିକର ଅବବୋଧ ପାଇଁ ଏହି ଗ୍ରନ୍ଥର ପରିଶିଷ୍ଟରେ ଏକ ଶବ୍ଦଟିପ୍ପଣୀ ତାଲିକା ଦିଆଯାଇଥିବାରୁ ଏହି ଅଧ୍ୟାୟରେ ତାହାର ଅବତାରଣାକୁ ବାଦ୍ ଦିଆଯାଇଛି । ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତି ସାଧକ ବୃନ୍ଦ ପ୍ରତ୍ୟେକ ଏକ ଏକ ସିଦ୍ଧଯୋଗୀ ଥିଲେ । ସେମାନଙ୍କ ଯୋଗସାଧନା ପଦ୍ଧତି ଓ ପ୍ରତ୍ୟକ୍ଷ ସିଦ୍ଧ ଅନୁଭୂତି ସେମାନଙ୍କ ସାହିତ୍ୟର ଛନ୍ଦେ ଛନ୍ଦେ ସ୍ଥାନ ପାଇଛି । ତେଣୁ ସେହି ସାହିତ୍ୟର ଅବବୋଧ ପାଇଁ ଯୋଗତତ୍ତ୍ୱକୁ ଜାଣିବା ଏକାନ୍ତ ଆବଶ୍ୟକ ।



# ପିଣ୍ଡବ୍ରହ୍ମାଣ୍ଡବାଦ

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ପିଣ୍ଡବ୍ରହ୍ମାଣ୍ଡବାଦ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ପିଣ୍ଡବ୍ରହ୍ମାଣ୍ଡବାଦର ଅର୍ଥ ହେଉଛି ଶରୀର ମଧ୍ୟରେ ବ୍ରହ୍ମାଣ୍ଡର ପରିକଳ୍ପନା । ଅର୍ଥାତ୍ ବ୍ରହ୍ମାଣ୍ଡ ମଧ୍ୟରେ ଭ୍ରମଣ କରି ଈଶ୍ୱରଙ୍କର ସନ୍ଧାନ କରିବା ଅପେକ୍ଷା ପିଣ୍ଡ ମଧ୍ୟରେ ଈଶ୍ୱରଙ୍କର ସତ୍ତା ବା ଆତ୍ମାକୁ ଈଶ୍ୱରଙ୍କ ସତ୍ତା ରୂପେ ଉପ-ଲବ୍ଧ କରିବା । ଶ୍ରୀମଦ୍ ଭଗବଦ୍ ଗୀତାରେ ଈଶ୍ୱର ସମେତ ବ୍ରହ୍ମାଣ୍ଡକୁ ତିନି ଭାଗରେ ବିଭକ୍ତ କରାଯାଇଛି ଏବଂ ତାହାକୁ କ୍ଷରବ୍ରହ୍ମ, ଅକ୍ଷରବ୍ରହ୍ମ ଓ ପରବ୍ରହ୍ମ ବା ପୁରୁଷୋତ୍ତମ ନାମରେ ଆଖ୍ୟାୟିତ କରାଯାଇଛି । କ୍ଷରବ୍ରହ୍ମ ହେଉଛି ଦୃଶ୍ୟମାନ୍ ଜଗତ । ଅକ୍ଷର ବ୍ରହ୍ମ ହେଉଛନ୍ତି ପ୍ରାଣୀ ଓ ପରବ୍ରହ୍ମ ହେଉଛନ୍ତି ପୁରୁଷୋତ୍ତମ, ଯେ ସମସ୍ତ ଜଗତ ଓ ପ୍ରାଣୀମାନଙ୍କ ମଧ୍ୟରେ ପ୍ରାଣ ରୂପେ ବିରାଜିତ । ତେଣୁ କୁହାଯାଇଛି –

"ଯସ୍ମାଦ୍ କ୍ଷରମତୀତୋହମକ୍ଷରାଦପି ଚୋତ୍ତମଃ
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ।"

ଈଶ୍ୱର ବା ବ୍ରହ୍ମଙ୍କୁ କ୍ଷର ବ୍ରହ୍ମରେ ନଖୋଜି ଅକ୍ଷର ବ୍ରହ୍ମରେ ଖୋଜିବା ଅତି ସହଜ । ଉପନିଷଦ୍‌ମାନଙ୍କରେ ମଧ୍ୟ ପିଣ୍ଡ ମଧ୍ୟରେ ବ୍ରହ୍ମଙ୍କର ସ୍ଥିତି ବିଷୟ କୁହାଯାଇଛି । କଠୋପନିଷଦ୍‌ରେ କୁହାଯାଇଛି—ସର୍ବପ୍ରଥମେ ବ୍ରହ୍ମ ପ୍ରକଟିତ ହୁଅନ୍ତି । ତତ୍ପରେ ଆକାଶର ପ୍ରକାଶ ଘଟେ । ତାହାପରେ ସେ ଜୀବଗଣଙ୍କୁ ନିର୍ମାଣ କରି ସେମାନଙ୍କ ହୃଦୟରୂପୀ ଗୁମ୍ଫାରେ ଅନ୍ତର୍ଯାମୀ ରୂପେ ଅବସ୍ଥାନ କରନ୍ତି । ସମସ୍ତଙ୍କ ହୃଦୟରେ ଅବସ୍ଥିତ ପରମାତ୍ମାଙ୍କୁ ଯେ ଜାଣେ, ସେ ହେଉଛି ଜ୍ଞାନୀ ।" (୧ । ୭) ପୁଣି ଏହାର ଦ୍ୱିତୀୟ ବଲ୍ଲୀରେ କୁହାଯାଇଛି— ଏହି ମନୁଷ୍ୟ ଶରୀର ହେଉଛି ଗୋଟିଏ ନଗରୀ ସଦୃଶ । ଏଥିରେ ଏକାଦଶଟି ଦ୍ୱାର ଅଛି ଏବଂ ଏହା ମଧ୍ୟରେ ପରମାତ୍ମା ବାସ

କରୁଛନ୍ତି । (୨ । ୧) ଛାନ୍ଦୋଗ୍ୟ ଉପନିଷଦ୍‌ରେ ଅଛି, 'ହରିଃ ଓଁ ଅଥ — ଯଦିଦ-ମସ୍ମିନ୍ ବ୍ରହ୍ମପୁରେ ଦହରଂ ପୁଣ୍ଡରୀକଂ ବେଶ୍ମ ଦହରୋଽସ୍ମିନ୍ନନ୍ତରାକାଶସ୍ତସ୍ମିନ୍ୟ-ଦନ୍ତସ୍ତଦନ୍ୱେଷ୍ଟବ୍ୟଂ ତଦ୍ୱାବ ବିଜିଜ୍ଞାସିତବ୍ୟମିତି ।" (୮ । ୧ । ୧) ବ୍ରହ୍ମପୁର ଅର୍ଥାତ୍ ଶରୀରରେ ଅଳ୍ପକମଳରୂପ ଘର ବା ହୃଦୟ ଅଛି । ସେଥିରେ ସୂକ୍ଷ୍ମ ଦହର ବା ଅନ୍ତରାକାଶ ଅଛି । ତାହା ଭିତରେ ଯାହାଙ୍କିଛି ଅଛନ୍ତି, ତାଙ୍କର ସାକ୍ଷାତ୍‌-କାର କରିବା ଉଚିତ । ପୁନଶ୍ଚ ଏହାର ଅନ୍ୟ ଏକ ସ୍ଥଳରେ କୁହାଯାଇଛି— "ଯାବାନ୍ ବା ଅୟମାକାଶସ୍ତାବାନେଷୋଽନ୍ତର୍ହୃଦୟ ଆକାଶ ଉଭେ ଅସ୍ମିନ୍ ଦ୍ୟାବାପୃଥିବୀ ଅନ୍ତରେବ ସମାହିତେ ଉଭାବଗ୍ନିଶ୍ଚ ବାୟୁଶ୍ଚ ସୂର୍ଯ୍ୟାଚନ୍ଦ୍ରମସାବୁଭୌ ବିଦ୍ୟୁନ୍ନକ୍ଷତ୍ରାଣି ଯଚ୍ଚାସ୍ୟେହାସ୍ତି ଯଚ୍ଚ ନାସ୍ତି ସର୍ବଂ ତଦସ୍ମିନ୍ ସମାହିତମିତି ।" (୮ । ୧ । ୩) ତେଣୁ ଆଗ୍ରହୀ ଏହାର ଉତ୍ତର ଦେବା ଉଚିତ କି, ଯେତେ ଏହି ଭୌତିକ ଆକାଶ ଦେଖାଦେଉଛି, ସେତିକି ତ ହୃଦୟ ଭିତରେ ଆକାଶ ଅଛି' । ଏହା ଭିତରେ ସ୍ୱର୍ଗ ଏବଂ ପୃଥିବୀ ପୂର୍ଣ୍ଣ ଭାବରେ ସ୍ଥିତ ଅଛନ୍ତି । ଏଥିରେ ଅଗ୍ନି ଏବଂ ବାୟୁ, ସୂର୍ଯ୍ୟ ଏବଂ ଚନ୍ଦ୍ର, ବିଜୁଳି, ଏବଂ ନକ୍ଷତ୍ର, ଯାହା କିଛି ଏହି ଲୋକରେ ଅଛି ଏବଂ ଯାହା କିଛି ମଧ୍ୟ ଏହି ଲୋକରେ ନାହିଁ, ସେ ସମସ୍ତ ଏହାଙ୍କ ଭିତରେ ସ୍ଥିତ ଅଛନ୍ତି । ମୈତ୍ରେୟୀ ଉପନିଷଦ୍‌ରେ ମହାଦେବଙ୍କ ମୁଖରେ କୁହାଯାଇଛି ଯେ, ଏହି ଶରୀର ଦେବାଳୟ ଅଟେ ଏବଂ ଏଥିରେ ଜୀବ କେବଳ ପରମାତ୍ମା ଅଟନ୍ତି— "ଦେହୋ ଦେବାଳୟଃ ପ୍ରୋକ୍ତଃ ସଜୀବଃ କେବଳଃ ଶିବଃ ।" (୨ । ୧) ପୁନଶ୍ଚ ଏଥିରେ କୁହାଯାଇଛି—"ପାଷାଣ ଲୋହମଣିମୃଣ୍ମୟ ବିଗ୍ରହେଷୁ ପୂଜା ପୁନର୍ଜନନ ଭୋଗକାରୀ ମୁମୁକ୍ଷୋଃ, ତସ୍ମାଦ୍ୟତିଃ ସ୍ୱହୃଦୟାର୍ଚ୍ଚନମେବ କୁର୍ଯ୍ୟାଦ୍ ବାହ୍ୟାର୍ଚ୍ଚନଂ ପରିହରେଦ ପୁନର୍ଭବାୟ ।" (୨ । ୨୬) ଅର୍ଥାତ୍ ପଥର, ସୁନା, ଅଥବା ମାଟିଦ୍ୱାରା ନିର୍ମିତ ମୂର୍ତ୍ତିର ପୂଜା, ମୋକ୍ଷ ଇଚ୍ଛୁକଙ୍କ ପୁଣି ଜନ୍ମ ଏବଂ ଭୋଗପ୍ରାପ୍ତିକାରକ ହୁଏ । ସେଥିପାଇଁ ପୁନର୍ଜନ୍ମ ନେବାକୁ ନଚାହେଲେ ସନ୍ନ୍ୟାସୀ ବାହାର ପୂଜାକୁ ତ୍ୟାଗ କରି ହୃଦୟରେ ଆତ୍ମାଙ୍କର ପୂଜା କରିବା ଉଚିତ । ବ୍ରହ୍ମ ସୂତ୍ରକାର ବେଦ-ବ୍ୟାସ ମଧ୍ୟ 'ବ୍ରହ୍ମସୂତ୍ର'ରେ ଲେଖିଛନ୍ତି, 'ଦହର ଉତ୍ତରେଭ୍ୟଃ' । (୧ । ୩ । ୧୪) ଅର୍ଥାତ୍ ମନୁଷ୍ୟ ଶରୀର ବ୍ରହ୍ମଙ୍କର ନଗର ଅଟେ । ଏହାର ଟୀକାରେ ଶଙ୍କରାଚାର୍ଯ୍ୟ ସମସ୍ତ ବ୍ରହ୍ମାଣ୍ଡକୁ ଦେହରୂପେ ଚର୍ଚ୍ଚିତ କରିଅଛନ୍ତି ।

ବୃହଦାରଣ୍ୟକ ଉପନିଷଦ୍‌ରେ ଶାକଲ୍ୟ ଓ ଯାଜ୍ଞବଲ୍କ୍ୟଙ୍କ ପ୍ରଶ୍ନୋତ୍ତର ସ୍ଥଳରେ କୁହାଯାଇଛି, ପୃଥିବୀ ଯାହାଙ୍କର ଦେହ, ଅଗ୍ନି ଯାହାଙ୍କର ଲୋକ, ମନ ଯାହାଙ୍କର ଜ୍ୟୋତି, ସେହି ପୁରୁଷ ହେଉଛନ୍ତି ବ୍ରହ୍ମ ଏବଂ ଆତ୍ମା ହେଉଛନ୍ତି ସେହି ପୁରୁଷ । (୩° । ୨୦) ଏଠାରେ ସୂଚିତ ହେଉଛି ବ୍ରହ୍ମାଣ୍ଡ ସ୍ୱରୂପ, ଏବଂ ଏଥିରେ

ପରମାତ୍ମା ବାସ କରୁଅଛନ୍ତି । ଅନ୍ୟତ୍ର କୁହାଯାଇଛି, ଏହି ଦେହର ଦକ୍ଷିଣ ନେତ୍ରରେ ଇନ୍ଦ୍ର ଏବଂ ବାମନେତ୍ରରେ ଇନ୍ଦ୍ରଙ୍କର ଭାର୍ଯ୍ୟା ବାସ କରୁଛନ୍ତି । ( ୪/୨-୩ ) ପୁନଶ୍ଚ ଅନ୍ୟ ଏକ ସ୍ଥଳରେ କୁହାଯାଇଛି ଯେ ଏହି ପୁରୁଷ ଅର୍ଥାତ୍ ବ୍ରହ୍ମ ମନୋମୟ ଓ ସତ୍ୟ ସ୍ୱରୂପ ଅଟନ୍ତି । ସେ ହୃଦୟର ମଧ୍ୟଭାଗରେ ବାସ କରୁ-ଅଛନ୍ତି ଏବଂ ଦେହରୂପକ ଜଗତ୍‌କୁ ଶାସନ କରୁଛନ୍ତି । ( ୬/୧ ) ସତ୍ୟ ହେଉଛନ୍ତି ଆଦିତ୍ୟ । ସୂର୍ଯ୍ୟମଣ୍ଡଳସ୍ଥିତ ଆଦିତ୍ୟ ଏବଂ ଦକ୍ଷିଣ ନେତ୍ରସ୍ଥିତ ପ୍ରାଣ ଏକ । ତାଙ୍କର ଶିରରେ 'ଭୂ', ହାତରେ 'ଭୁବଃ' ଏବଂ ପାଦରେ 'ସ୍ୱଃ' ଅବସ୍ଥାନ କରିଛନ୍ତି । ( ୫/୨ ) ଏହିପରି ଭାବରେ ଦେଖିବାକୁ ଗଲେ ପିଣ୍ଡ ସହିତ ବ୍ରହ୍ମାଣ୍ଡର ବିଭିନ୍ନ ବସ୍ତୁର ସ୍ଥିତି କଳ୍ପନା କରାଯାଇଛି । ଏହି କଳ୍ପନା ପରବର୍ତ୍ତୀ କାଳରେ ଯୋଗ ଦର୍ଶନର ବିକାଶ ସମୟରେ ଅଧିକ ପ୍ରସାରିତ ହୋଇଥିଲା । ଯୋଗ-ଶାସ୍ତ୍ରରେ ଶରୀର ମଧ୍ୟରେ ଯେଉଁ ଛଅଟି ଚକ୍ରର କଳ୍ପନା କରାଯାଇଛି, ତାହା ମଧ୍ୟରୁ ପାଞ୍ଚଟି ହେଉଛି ପଞ୍ଚମହାଭୂତର ସ୍ଥାନ । ମୂଳାଧାରଚକ୍ର ହେଉଛି ପୃଥିବୀତତ୍ତ୍ୱର ସ୍ଥାନ । ସ୍ୱାଧିଷ୍ଠାନ ହେଉଛି ଜଳତତ୍ତ୍ୱର ସ୍ଥାନ । ଅନାହତ ବା ହୃଦ୍‌ଚକ୍ର ହେଉଛି ବାୟୁ ତତ୍ତ୍ୱର ସ୍ଥାନ, କଣ୍ଠଚକ୍ର ହେଉଛି ଆକାଶତତ୍ତ୍ୱର ସ୍ଥାନ ଏବଂ ଆଜ୍ଞାଚକ୍ର ହେଉଛି ତେଜତତ୍ତ୍ୱର ସ୍ଥାନ ଏବଂ ସର୍ବୋପରି ମହାଶୂନ୍ୟ ବା ସତ୍ୟପୁରର ସ୍ଥାନ, ଯାହା ହେଉଛି ସହସ୍ରଦଳଚକ୍ର । ମୂଳାଧାର ଚକ୍ରଠାରୁ ନିମ୍ନକୁ ପାଦପର୍ଯ୍ୟନ୍ତ ସ୍ଥାନ ହେଉଛି ସପ୍ତପାତାଳର ସ୍ଥାନ । ମୂଳାଧାର ଚକ୍ରଠାରୁ ଊର୍ଦ୍ଧ୍ୱକୁ ଭୂ, ଭୁବଃ ଆଦି ସପ୍ତଲୋକର ସ୍ଥାନ । ଏହିଭଳି ଭାବରେ ଦେହକୁ ଚତୁର୍ଦ୍ଦଶ ପୁରର ଏକ ବ୍ରହ୍ମାଣ୍ଡ ଭାବେ କଳ୍ପନା କରାଯାଇଛି । ଇଡ଼ା, ପିଙ୍ଗଳା ଓ ସୁଷୁମ୍ନାକୁ ଯଥାକ୍ରମେ ଗଙ୍ଗା, ଯମୁନା ଓ ସରସ୍ୱତୀ ଏବଂ ଦକ୍ଷିଣ ଓ ବାମ ନେତ୍ରକୁ ସୂର୍ଯ୍ୟ ଏବଂ ଚନ୍ଦ୍ର ରୂପେ କୁହାଯାଇଛି । ହଠଯୋଗରେ ଆତ୍ମାକୁ ସୂର୍ଯ୍ୟ, ପରମାତ୍ମାକୁ ଚନ୍ଦ୍ରରୂପେ ବର୍ଣ୍ଣନା କରାଯାଇଛି । ଦେହ ମଧ୍ୟରେ ପ୍ରବାହିତ ୭୨୦୦୦ ନାଡ଼ୀ ବା ଅସଂଖ୍ୟ ସ୍ନାୟୁ ସ୍ରୋତକୁ ନଦୀପ୍ରବାହ ସଙ୍ଗରେ ତୁଳନା କରାଯାଇଛି । ଯୌଗିକ ପରିଭାଷାରେ ଏହି ସମସ୍ତ ବର୍ଣ୍ଣନା ପରବର୍ତ୍ତୀକାଳରେ ପିଣ୍ଡବ୍ରହ୍ମାଣ୍ଡ ପରି-କଳ୍ପନାର ପୂର୍ଣ୍ଣରୂପ ଦେଇଥିଲା ।

ଉପନିଷଦ୍‌ର ଚିନ୍ତାଧାରା ସହିତ ସାଂଖ୍ୟ ଚିନ୍ତାଧାରାର ସାମ୍ୟ ଦେଖାଯାଏ । ସାଂଖ୍ୟରେ ଏକ ନିର୍ଗୁଣ ପୁରୁଷର ପରିକଳ୍ପନା କରାଯାଇଛି । ଏହା ଚେତନା ଶକ୍ତିଯୁକ୍ତ କିନ୍ତୁ ନିଷ୍କ୍ରିୟ । ଗୁଣମୟୀ ଶକ୍ତିର ପ୍ରକୃତି ସଂସ୍ପର୍ଶରେ ଆସିଲେ ପୁରୁଷ-ପ୍ରକୃତିର ସଂଯୋଗ ଘଟେ । ଏଥିରୁ ମହତ୍ ଆଦି ଚବିଶ ତତ୍ତ୍ୱର ସୃଷ୍ଟି ହୁଏ ଏବଂ ପ୍ରାଣୀଜଗତ ସୃଷ୍ଟି ହୁଅନ୍ତି । ପ୍ରାଣୀଜଗତ ମଧ୍ୟରେ ପୁରୁଷ ଅବସ୍ଥାନ କରେ,

କିନ୍ତୁ ପ୍ରକୃତିର ଅଧୀନସ୍ଥ ରହେ । ପରିଦୃଶ୍ୟମାନ ଜଗତ ଯେଉଁ ଚବିଶ ତତ୍ତ୍ୱରେ ଗଢ଼ା, ମନୁଷ୍ୟର ଶରୀର ମଧ୍ୟ ସେହି ଚବିଶ ତତ୍ତ୍ୱରେ ଗଢ଼ା । ପରିଦୃଶ୍ୟମାନ ଜଗତରେ ଯେପରି ପୁରୁଷର ପ୍ରତିଫଳନ ଘଟେ । ପ୍ରାଣୀର ଶରୀର ମଧ୍ୟରେ ସେପରି ପୁରୁଷର ପ୍ରତିଫଳନ ଘଟେ ପୁରୁଷ ଏବଂ ମନୁଷ୍ୟ ମଧ୍ୟରେ ପ୍ରତିଫଳିତ ପୁରୁଷ ଏକ ଓ ଅଭିନ୍ନ । ଚବିଶ ତତ୍ତ୍ୱରେ ନିର୍ମିତ ଜଗତ ଏବଂ ମନୁଷ୍ୟର ଶରୀର ମଧ୍ୟ ଏକ ଓ ଅଭିନ୍ନ । ସାଂଖ୍ୟର ଏହି ଚିନ୍ତାଧାରା ଏବଂ ତାନ୍ତ୍ରିକ ଚିନ୍ତାଧାରା କହିଲେ ଅତ୍ୟୁକ୍ତି ହେବନାହିଁ । ତନ୍ତ୍ରରେ ଦୁଇଟି ଜଗତର କଳ୍ପନା କରାଯାଇଛି । ଗୋଟିଏ ହେଉଛି ସ୍ଥୂଳଜଗତ ଓ ଅନ୍ୟଟି ହେଉଛି ସୂକ୍ଷ୍ମ ଜଗତ । ସ୍ଥୂଳ ଜଗତ ହେଉଛି, ଏହି ପରିଦୃଶ୍ୟମାନ ବିଶ୍ୱ, ଯାହା ମଧ୍ୟରେ ଈଶ୍ୱରଙ୍କର ସତ୍ତା ସର୍ବତ୍ର ପରିବ୍ୟାପ୍ତ ରହିଛି । ସୂକ୍ଷ୍ମଜଗତ ହେଉଛି ଏହି ଶରୀର, ଯାହା ମଧ୍ୟରେ ପରମାତ୍ମାଙ୍କ ସତ୍ତା ବିଦ୍ୟମାନ ରହିଛି । ସ୍ଥୂଳଜଗତ ଓ ସୂକ୍ଷ୍ମଜଗତ୍ ମଧ୍ୟରେ ବସ୍ତୁତଃ ପାର୍ଥକ୍ୟ କିଛି ନାହିଁ । ଅର୍ଥାତ୍ ଶରୀର ଓ ବ୍ରହ୍ମାଣ୍ଡ ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । ଶରୀର ହେଉଛି ବ୍ରହ୍ମାଣ୍ଡର ଏକ ପ୍ରତୀକ । ସେଥିପାଇଁ ତନ୍ତ୍ରରେ ସ୍ଥୂଳ ସାଧନା ଓ ସୂକ୍ଷ୍ମସାଧନା ଭଳି ଦୁଇପ୍ରକାର ସାଧନା ରହିଛି । ସ୍ଥୂଳସାଧନା ହେଉଛି ବାହ୍ୟ ସାଧନା । ଅର୍ଥାତ୍ ବାହ୍ୟଜଗତ୍ ମଧ୍ୟରେ ନାମ, ରୂପ, ଗୁଣ ଆଦିକୁ ଆଶ୍ରୟ ବା ନାମ, ରୂପ, ଗୁଣ ଅବଲମ୍ବନରେ ଈଶ୍ୱରଙ୍କର ଉପଲବ୍ଧି କରିବା । ସୂକ୍ଷ୍ମ-ସାଧନା ହେଉଛି ମନକୁ ଏକାଗ୍ର କରି ଯୋଗ ସାଧନା ଦ୍ୱାରା ଶରୀର ରୂପୀ ବ୍ରହ୍ମାଣ୍ଡ ମଧ୍ୟରେ ପରମେଶ୍ୱରଙ୍କର ସତ୍ତା ଉପଲବ୍ଧି କରିବା । ତନ୍ତ୍ରର ଏହି ପରିକଳ୍ପନା ପତଞ୍ଜଳିଙ୍କ ଯୋଗଶାସ୍ତ୍ରରେ ଗୃହୀତ ହୋଇଛି । ଯୋଗଶାସ୍ତ୍ରରେ କୁହାଯାଇଛି, ଲୟଯୋଗ ଦ୍ୱାରା ପ୍ରକୃତି ପୁରୁଷାତ୍ମକ ଏହି ଦେହମଧ୍ୟରେ ପରମାତ୍ମାଙ୍କର ସନ୍ଧାନ କରାଯାଇପାରେ । ଅଙ୍ଗିରା, ଯାଜ୍ଞବଲ୍କ୍ୟ, କପିଳ, ପତଞ୍ଜଳି, ବଶିଷ୍ଠ, କଶ୍ୟପ-ଆଦି ମହର୍ଷି ଏହି ତତ୍ତ୍ୱକୁ ବର୍ଣ୍ଣନା କରିଯାଇଛନ୍ତି ।

ବଜ୍ରତନ୍ତ୍ରର ଚିନ୍ତାଧାରାକୁ ଅବଲମ୍ବନ କରି ବୌଦ୍ଧତନ୍ତ୍ର ମଧ୍ୟ ପିଣ୍ଡ ବ୍ରହ୍ମାଣ୍ଡ ବାଦ ଉପରେ ଗୁରୁତ୍ୱ ପ୍ରଦାନ କରିଥିଲା । ହେବଜ୍ରତନ୍ତ୍ରରେ କୁହାଯାଇଛି,— "ଦେହାଭବେ କୁତଃ ସୁଖମ୍" । ସହଜଯାନର ପ୍ରବର୍ତ୍ତିକା ଲକ୍ଷ୍ମୀଙ୍କର ଏକ ଶ୍ଳୋକରେ ବର୍ଣ୍ଣନା କରି କହିଛନ୍ତି—

"ନ କଷ୍ଟ କଳ୍ପନାଂ କୁର୍ଯ୍ୟାତ୍ ନୋପବାସଂ ନ ଚକ୍ରିୟାମ୍
ନ ଶୌଚଂ ନାପିସ୍ନାନଂ ଗ୍ରାମ୍ୟଧର୍ମ ବିବର୍ଜନମ୍
ନ ଚାପି ପୂଜୟେତ୍ ଦେବାନ୍ କାଷ୍ଠ ପାଷାଣ ମୃଣ୍ମୟାନ୍
ପୂଜାମସୈବକାୟସ୍ୟ କୁର୍ଯ୍ୟାତ୍ ନିତ୍ୟଂ ସମାହିତମ୍ ।"

ନାଥ ପନ୍ଥାରେ ପିଣ୍ଡ ବ୍ରହ୍ମାଣ୍ଡ ବାଦ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି । କାରଣ ସେମାନେ ଥିଲେ କାୟା ସାଧକ । "ସିଦ୍ଧ ସିଦ୍ଧାନ୍ତ ସଂଗ୍ରହ" ନାମକ ଗ୍ରନ୍ଥରେ କୁହାଯାଇଛି—

ତ୍ରିସ୍ତ୍ରିଂଶତ୍ କୋଟି ଦେବତା ବାହ୍ୟ ଲୋମ କୂପେଷୁ
ବସନ୍ତି । ଦେବ ଦାନବ ଯକ୍ଷ ରାକ୍ଷସ ଭୂତପ୍ରେତାଃ
ଅସ୍ଥି ସନ୍ଧିଷୁ ବସନ୍ତି । କୁଳତାତା ବକ୍ଷସି ବସନ୍ତି ।
ଅନ୍ୟେମନକୋଟି ମୁନିସିଦ୍ଧା, କଣ୍ଠରୋମ କୂପେଷୁ
ବସନ୍ତି । ଅନ୍ୟେ ପର୍ବତା ଉଦର ଲୋମେଷୁ ବସନ୍ତି ।
ଗନ୍ଧର୍ବ କିନ୍ନର କିଂ ପୁରୁଷା ଅପ୍ସରୋଗଣା ଉଦରେ
ବସନ୍ତି । ଅନନ୍ତସିଦ୍ଧାଃ ମଠ ପ୍ରକାଶେ ବସନ୍ତି ।

× × ×

ଏବଂ ସର୍ବଦେହେଷୁ ବିଶ୍ୱସ୍ୱରୂପଃ ତତ୍ ସ୍ୱରୂପୀତିଷ୍ଠତି ।"
(ପୃ ୨୬-୨୭)

ଏଥିରେ ଅନ୍ୟତ୍ର କୁହାଯାଇଛି—

"ବ୍ରହ୍ମାଣ୍ଡବର୍ତ୍ତି ଯତ୍ କିଞ୍ଚିତ୍ ତତ୍ପିଣ୍ଡେପ୍ୟସ୍ତି ସର୍ବଥା
ଇତି ନିଶ୍ଚୟ ଏବାଯ ପିଣ୍ଡସିଦ୍ଧିରୁଚ୍ୟତେ ।"

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ପିଣ୍ଡବ୍ରହ୍ମାଣ୍ଡ ବାଦର ଯେଉଁ ପରି-କଳ୍ପନା କରାଯାଇଛି, ସେଥିରେ ନାଥ ସମ୍ପ୍ରଦାୟର ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ସାମ୍ୟ ପରିଲକ୍ଷିତ ହୋଇଥିଲେ ସୁଦ୍ଧା ଏହାର ମୂଳକୁ ସେହି ପର୍ଯ୍ୟନ୍ତ ଅନୁସନ୍ଧାନ କରି ନିବୃତ୍ତ ରହିବା ଅସମୀଚୀନ । ପୂର୍ବରୁ କୁହାଯାଇଛି, ଓଡ଼ିଶାରେ ଜ୍ଞାନମିଶ୍ରା-ଭକ୍ତି ସାଧକ ବୃନ୍ଦ ତନ୍ତ୍ରପୁଷ୍ଟପଞ୍ଚରାତ୍ରଧର୍ମୀର ଶ୍ରେଷ୍ଠଗ୍ରନ୍ଥ ଭାଗବତର ତୃତୀୟ ସ୍କନ୍ଧରେ ଯେଉଁ ବିରାଟ ପୁରୁଷର ପରିକଳ୍ପନା କରାଯାଇଛି, ସେହି ପରିକଳ୍ପନା ବଳରାମ ଦାସଙ୍କର "ବେଦାନ୍ତ ସାର ଗୁପ୍ତଗୀତା," 'ବ୍ରହ୍ମାଣ୍ଡ ଭୂଗୋଳ' ଓ 'ବିରାଟଗୀତା'ରେ ପ୍ରତିଧ୍ୱନିତ ହୋଇଥିବା ଦେଖାଯାଏ । ଏଠାରେ ଶ୍ରୀମଦ୍ଭାଗବତର ତୃତୀୟ ସ୍କନ୍ଧର କେତେକ ଅଂଶର ସାରାଂଶକୁ ଏଠାରେ ଉଲ୍ଲେଖ କରାଯାଇପାରେ ।

"ଯେତେବେଳେ ମହତତ୍ତ୍ୱ ଅହଙ୍କାର ଏବଂ ପଞ୍ଚ ମହାଭୂତ-ଏହି ସାତତତ୍ତ୍ୱ ପରସ୍ପର ମିଳିତ ନ ହୋଇପାରି ପୃଥକ ପୃଥକ ରହିଥିଲେ, ସେତେବେଳେ

ଜଗତର ଆଦିକାରଣ ଶ୍ରୀନାରାୟଣ କାଳ, ଅଦୃଷ୍ଟ ଏବଂ ସତ୍ତ୍ୱାଦିଗୁଣ ସହିତ ସେଥିରେ ପ୍ରବେଶ କଲେ । ପୁଣି ପରମାତ୍ମାଙ୍କ ପ୍ରବେଶରୁ କ୍ଷୁବ୍ଧ ତଥା ପରସ୍ପର ମିଳିତ ସେହି ତତ୍ତ୍ୱରୁ ଏକ ଜଡ଼ ଅଣ୍ଡ ଉତ୍ପନ୍ନ ହେଲା । ସେହି ଅଣ୍ଡରୁ ଏକ ବିରାଟ ପୁରୁଷର ଅଭିବ୍ୟକ୍ତି । ଏହି ଅଣ୍ଡ ନାମ ବିଶେଷ ଅଟେ । ସେହି ଅଣ୍ଡ ଅନ୍ତର୍ଗତ ଶ୍ରୀହରିଙ୍କ ସ୍ୱରୂପଭୂତ ଚତୁର୍ଦ୍ଦଶ ଭୁବନର ବିସ୍ତାର । ଏହାର ଚତୁର୍ଦ୍ଦିଗରୁ କ୍ରମଶଃ ଏକ ଅନ୍ୟଠାରୁ ଦଶଗୁଣ ଜଳ, ଅଗ୍ନି, ବାୟୁ, ଆକାଶ, ଅହଙ୍କାର, ମହତ୍ତତ୍ତ୍ୱ-ଏହି ଷଡ଼ ଆବରଣ ବେଷ୍ଟିତ ହୋଇଅଛି । ଏସବୁର ବାହାରେ ସପ୍ତମ ଆବରଣ ପ୍ରକୃତି ଅଟେ ।

କାରଣମୟ ଜଳରେ ସ୍ଥିତ ସେହି ତେଜୋମୟ ଅଣ୍ଡରୁ ଉଠି ସେହି ବିରାଟ ପୁରୁଷ ପୁନଃ ସେଥିରେ ପ୍ରବେଶ କଲା ତହିଁରେ କେତେକ ପ୍ରକାର ଛିଦ୍ର ଉତ୍ପନ୍ନ କଲେ । ସବୁ ପ୍ରଥମେ ସେଥିରେ ମୁଖ ପ୍ରକଟ ହୋଇ ତହିଁରୁ ବାଗେନ୍ଦ୍ରିୟ ଏବଂ ତାହାପରେ ବାକ୍‌ର ଅଧିଷ୍ଠାତା ଅଗ୍ନି ଉତ୍ପନ୍ନ ହେଲା । ପୁଣି ନାସା ଛିଦ୍ର ପ୍ରକଟ ହୋଇ ତହିଁରୁ ପ୍ରାଣ ସହିତ ଘ୍ରାଣେନ୍ଦ୍ରିୟ ଉତ୍ପନ୍ନ ହେଲା । ତତ୍ ପଶ୍ଚାତ୍ ନେତ୍ର ଗୋଲକ ପ୍ରକଟ ହୋଇ ତହିଁରୁ ଚକ୍ଷୁ ଇନ୍ଦ୍ରିୟ ଏବଂ ତାହାପରେ ତାହାର ଅଧିଷ୍ଠାତା ସୂର୍ଯ୍ୟ ଉତ୍ପନ୍ନ ହେଲେ । ପୁଣି କର୍ଣ୍ଣଛିଦ୍ର ପ୍ରକଟ ହୋଇ ତହିଁରୁ ଶ୍ରୋତେନ୍ଦ୍ରିୟ ଏବଂ ତାହାର ଅଭିମାନୀ ଦିଗଦେବତା ପ୍ରକଟ ହେଲେ । ତାହାପରେ ସେହି ବିରାଟ ପୁରୁଷଙ୍କର ତ୍ୱକ୍ ଉତ୍ପନ୍ନ ହୋଇ ତହିଁରୁ ରୋମ, ମୁଛ-ଦାଢି ତଥା ମସ୍ତକର କେଶ ପ୍ରକଟ ହେଲା ଏବଂ ତାପରେ ତ୍ୱକ୍ର ଅଭିମାନୀ ଔଷଧ ସମୂହ ଅନ୍ନାଦି ଉତ୍ପନ୍ନ ହେଲେ । ପୁଣି ଲିଙ୍ଗ ପ୍ରକଟ ହେଲା । ତହିଁରୁ ବୀର୍ଯ୍ୟ ଏବଂ ବୀର୍ଯ୍ୟପରେ ଲିଙ୍ଗ ଅଭିମାନୀ ଦେବତା ଆପୋଦେବ (ବରୁଣ) ଉତ୍ପନ୍ନ ହେଲେ । ତାହାପରେ ଗୁହ୍ୟଦେଶ ପ୍ରକଟ ହେବାରୁ ତହିଁରୁ ଆପାନ ବାୟୁ ଏବଂ ତାହାର ଅଭିମାନୀ ଲୋକଭୟଦାୟକ ମୃତ୍ୟୁଦେବ ଉତ୍ପନ୍ନ ହେଲେ ।

ତଦନନ୍ତରେ ହସ୍ତ ପ୍ରକଟ ହେଲା । ତହିଁରୁ ବଳ ଏବଂ ହସ୍ତେନ୍ଦ୍ରିୟର ଅଭିମାନୀ ଇନ୍ଦ୍ର ଉତ୍ପନ୍ନ ହେଲେ । ତାହାପରେ ପାଦ ପ୍ରକଟ ହେବାରୁ ତହିଁରୁ ଗତି ( ଗମନ କ୍ରିୟା ) ଏବଂ ପାଦେନ୍ଦ୍ରିୟର ଅଭିମାନୀ ବିଷ୍ଣୁ ଦେବତା ଉତ୍ପନ୍ନ ହେଲେ । ସେହିପରି ଯେତେବେଳେ ବିରାଟ ପୁରୁଷଙ୍କର ନାଡ଼ିମାନ ପ୍ରକଟ ହେଲା, ତହିଁରୁ ରୁଧିର ଏବଂ ରୁଧିରରୁ ନଦୀମାନେ ସୃଷ୍ଟି ହେଲେ । ତାହାପରେ ତାଙ୍କର ଉଦର ପ୍ରକଟ ହେଲା । ତହିଁରୁ କ୍ଷୁଧା-ପିପାସାର ଅଭିବ୍ୟକ୍ତ ହୋଇ ପୁଣି ଉଦର-ଅଭିମାନୀ ଦେବତା ସମୁଦ୍ର ଉତ୍ପନ୍ନ ହେଲେ । ତତ୍ ପଶ୍ଚାତ୍ ତାହାଙ୍କ ହୃଦୟ ପ୍ରକଟ ହେଲା । ହୃଦୟରୁ ମନର ପ୍ରାକଟ୍ୟ ।

ମନପରେ ତାହାର ଅଭିମାନୀ ଦେବତା ଚନ୍ଦ୍ରମା ପ୍ରକଟ ହେଲେ । ପୁଣି ହୃଦୟରୁ ବୁଦ୍ଧି ଏବଂ ତାହାର ଅଭିମାନୀ ଦେବତା ବ୍ରହ୍ମା ଉତ୍ପନ୍ନ ହେଲେ । ତାହାପରେ ଅହଙ୍କାର ପ୍ରକଟ ହେବାରୁ ତାହାର ଅଭିମାନୀ ଦେବତା ରୁଦ୍ର ଉତ୍ପନ୍ନ ହେଲେ । ତତ୍ପରେ ଚିତ୍ତ ଏବଂ ତାହାର ଅଭିମାନ ଦେବତା କ୍ଷେତ୍ରଜ୍ଞ ପ୍ରକଟ ହେଲେ । ଯେତେବେଳେ କ୍ଷେତ୍ରଜ୍ଞଙ୍କ ବ୍ୟତୀତ ସମସ୍ତ ଦେବତା ଉତ୍ପନ୍ନ ହୋଇ ମଧ୍ୟ ବିରାଟ ପୁରୁଷଙ୍କୁ ଉଠାଇବାକୁ ସମର୍ଥ ନହେଲେ, ସେତେବେଳେ ତାଙ୍କୁ ଉଠାଇବା ନିମନ୍ତେ କ୍ରମଶଃ ପୁଣି ନିଜନିଜ ଉତ୍ପତ୍ତି ସ୍ଥାନରେ ସେହି ସେହି ଦେବତା ପ୍ରବିଷ୍ଟ ହେବାକୁ ଲାଗିଲେ ।

ଅଗ୍ନି ବାଣୀ ସହିତ ମୁଖରେ ପ୍ରବେଶ କଲେ ମଧ୍ୟ ବିରାଟ ପୁରୁଷ ଉଠିଲେ ନାହିଁ । ବାୟୁ ଘ୍ରାଣେନ୍ଦ୍ରିୟ ସହିତ ନାସା ଛିଦ୍ରରେ ପ୍ରବେଶ କଲେ ମଧ୍ୟ ବିରାଟ ପୁରୁଷ ଉଠିଲେ ନାହିଁ । ସୂର୍ଯ୍ୟଦେବ ଚକ୍ଷୁ ସହିତ ନେତ୍ରରେ, ଦିଶାମାନେ ଶ୍ରୋତେନ୍ଦ୍ରିୟ ସହିତ କର୍ଣ୍ଣରେ ପ୍ରବେଶ କଲେ ମଧ୍ୟ ବିରାଟ ପୁରୁଷ ଉଠଲେ ନାହିଁ । ଔଷଧି ସମୂହ ରୋମ ସହିତ ତ୍ୱଚାରେ, ଜଳ ବୀର୍ଯ୍ୟ ସହିତ ଲିଙ୍ଗରେ ପ୍ରବେଶ କଲେ ମଧ୍ୟ ବିରାଟ ପୁରୁଷ ଉଠିଲେ ନାହିଁ । ମୃତ୍ୟୁ ଅପାନ ସହିତ ଗୁହ୍ୟରେ, ଇନ୍ଦ୍ର ବଳ ସହିତ ହସ୍ତରେ ପ୍ରବେଶ କଲେ ମଧ୍ୟ ବିରାଟ ପୁରୁଷ ଉଠିଲେ ନାହିଁ । ବିଷ୍ଣୁ ଗତି ସହିତ ପାଦରେ,ନଦୀମାନେ ରୁଧିର ସହିତ ନାଡ଼ିରେ, ସମୁଦ୍ର କ୍ଷୁଧା-ପିପାସା ସହିତ ଉଦରରେ, ଚନ୍ଦ୍ରମା ମନ ସହିତ ହୃଦୟରେ, ବ୍ରହ୍ମା ବୁଦ୍ଧି ସହିତ, ରୁଦ୍ର ଅହଙ୍କାର ସହିତ ହୃଦୟରେ ପ୍ରବେଶ କଲେ ମଧ୍ୟ ବିରାଟ ପୁରୁଷ ଉଠିଲେ ନାହିଁ । କିନ୍ତୁ ଯେତେବେଳେ ଚିତ୍ତର ଅଧିଷ୍ଠାତା କ୍ଷେତ୍ରଜ୍ଞ ଚିତ୍ତ ସହିତ ହୃଦୟରେ ପ୍ରବେଶ କଲେ, ସେତେବେଳେ ବିରାଟ ପୁରୁଷ ଜଳରୁ ଉଠି ଠିଆ ହୋଇଗଲେ । ଯେପରି ଲୋକରେ ପ୍ରାଣ, ଇନ୍ଦ୍ରିୟ ମନ ଏବଂ ବୁଦ୍ଧି ଆଦି ଚିତ୍ତର ଅଧିଷ୍ଠାତା କ୍ଷେତ୍ରଜ୍ଞଙ୍କ ବିନା ସହାୟତାରେ ସୁପ୍ତ ପ୍ରାଣୀକୁ ନିଜ ବଳରେ ଉଠାଇବାକୁ ସମର୍ଥ ନୁହନ୍ତି, ସେହିପରି ବିରାଟ ପୁରୁଷଙ୍କୁ ମଧ୍ୟ କ୍ଷେତ୍ରଜ୍ଞ ପରମାତ୍ମାଙ୍କ ବିନା ଉଠାଇପାରିଲେ ନାହିଁ ।

ଅତଏବ ଭକ୍ତି, ବୈରାଗ୍ୟ ଏବଂ ଚିତ୍ତର ଏକାଗ୍ରତାରେ ପ୍ରକଟିତ ଜ୍ଞାନ ଦ୍ୱାରା ସେହି ଅନ୍ତରାତ୍ମା ସ୍ୱରୂପ କ୍ଷେତ୍ରଜ୍ଞ ଏହି ଶରୀରରେ ଅବସ୍ଥାନ କରୁଥିବାର ଜାଣି ତାହାଙ୍କ ଚିନ୍ତନ କରିବା ମନୁଷ୍ୟର କର୍ତ୍ତବ୍ୟ । (ପୃ ୫୦-୬୨ )

ପିଣ୍ଡବ୍ରହ୍ମାଣ୍ଡ ବାଦର ପରିକଳ୍ପନା 'ଶ୍ରୀମଦ୍‌ଭଗବଦ୍‌ଗୀତା' ଓ 'ମହାଭାରତ'ରେ ନିହିତ ଅଛି କହିଲେ ଭୁଲହେବ ନାହିଁ । ଶ୍ରୀକୃଷ୍ଣଙ୍କର ମୁଖଗହ୍ୱର

ମଧ୍ୟରେ ଯଶୋଦାଙ୍କ ବ୍ରହ୍ମାଣ୍ଡ ଦର୍ଶନ ଏବଂ 'ଶ୍ରୀମଦ୍‌ଭଗବଦ୍ ଗୀତା'ର ଏକାଦଶ ଅଧ୍ୟାୟରେ ବର୍ଣ୍ଣିତ ବିଶ୍ୱରୂପ ଦର୍ଶନ ମଧ୍ୟରେ କୃଷ୍ଣଙ୍କର ଦେହ ମଧ୍ୟରେ ବିଶ୍ୱ-ବ୍ରହ୍ମାଣ୍ଡର ସ୍ଥିତିକୁ ଯେଉଁଭଳି ବର୍ଣ୍ଣନା କରାଯାଇଛି, ତାହା ପରବର୍ତ୍ତୀ କାଳରେ ପିଣ୍ଡବ୍ରହ୍ମାଣ୍ଡ ପାଇଁ ପଥ ପ୍ରସ୍ତୁତ କରିଥିଲା । ତୁଳସୀଦାସଙ୍କ 'ରାମାୟଣ'ରେ ଭୂଷଣ୍ଡିକାକ ଉପାଖ୍ୟାନରେ ରାମଙ୍କ ଗର୍ଭରେ ବିଶ୍ୱବ୍ରହ୍ମାଣ୍ଡର ବର୍ଣ୍ଣନା ଠିକ୍ ଏହାର ଅନୁରୂପ । ଏହି କଳ୍ପନା କ୍ରମେ ନିର୍ଗୁଣ ପରମ୍ପରାରେ ଅଧିକ ବିକଶିତ ହୋଇ ଏକ ପୂର୍ଣ୍ଣରୂପ ଗ୍ରହଣ କରିଥିଲା । ବିଶେଷ ଭାବରେ ଶୈବତନ୍ତ୍ର ପରମ୍ପରାରୁ ଉଦ୍‌ଭୂତ ନାଥ ସମ୍ପ୍ରଦାୟର ଗ୍ରନ୍ଥମାନଙ୍କରେ ଏହାର ବହୁଳ ବର୍ଣ୍ଣନା କରାଯାଇଛି ।

ଓଡ଼ିଆରେ ରଚିତ ନାଥପନ୍ଥୀମାନଙ୍କର ଗ୍ରନ୍ଥମଧ୍ୟରେ 'ସପ୍ତାଙ୍ଗ ଯୋଗ ଧାରଣ,' 'ଅମରକୋଷଗୀତା,' "ଗୋବିନ୍ଦଚନ୍ଦ୍ର ଗୀତା" ଓ 'ଶିଶୁବେଦ' ପ୍ରଭୃତି ଗ୍ରନ୍ଥରେ ପିଣ୍ଡ ବ୍ରହ୍ମାଣ୍ଡ ବାଦର ସୂଚନା ମିଳିଥାଏ । ଡଃ ନଗେନ୍ଦ୍ର ନାଥ ପ୍ରଧାନ ତିନିଟି ଭିନ୍ନଭିନ୍ନ 'ଅମରକୋଷ' ଗ୍ରନ୍ଥ ସମ୍ପର୍କରେ ତାଙ୍କର 'ପ୍ରାଚୀନ ଓଡ଼ିଆ ସାହିତ୍ୟରେ ନିର୍ଗୁଣଧାରା' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ସେ ଏଥିରୁ ପିଣ୍ଡବ୍ରହ୍ମାଣ୍ଡ-ବାଦର କେତେକ ଉଦ୍ଧୃତି ପ୍ରଦାନ କରିଛନ୍ତି । ସେଥିମଧ୍ୟରୁ କେତୋଟି ଉଦ୍ଧୃତିକୁ ଏଠାରେ ପ୍ରଦାନ କରାଯାଇପାରେ ।

— "ନାସିକାଦ୍ୱାରେ ପୂତାରେ ଠୁଳ ପୁରୁଷର ସ୍ଥିତି
ଯହିଁକି ବିଷ୍ଣୁ ଧ୍ୟାଇଲେ ପରମ ବିଭୂତି ।
ତଥି ଉପରେ ପୂତାରେ କରିସ୍ଥ ଗିରିମାନ
ତହିଁରେ ଚନ୍ଦ୍ର ସୂର୍ଯ୍ୟ କରିଛନ୍ତି ଆସନ ।
ମେରୁ ଉପରେ ପୂତାରେ ଅରଣ୍ୟ ଅପାର

× × ×

ତଥି ଉପରେ ପୂତାରେ ନିରାକାର ପୁରୁଷ
ଯାହାକୁ ଦେବାଧିଦେବ ପୁରୁଷମାନେ ଖୋଜି ନପାଇଲେ ନେଶ ।"

(ଅମର କୋଷ-୧, ପ୍ରାଚୀନ ଓଡ଼ିଆ ସାହିତ୍ୟରେ ନିର୍ଗୁଣ ଧାରା,
ପୃ ୪୧୧ ରେ ଉଦ୍ଧୃତ)

— "ପ୍ରଥମେ ପୃଥ୍ୱୀ, ଆପ, ତେଜ, ବାଇ, ଆକାଶ
ଯେତେ ତତ୍ତ୍ୱଯୋଗ କାୟା ପରକାଶ

ପଞ୍ଚ ତତ୍ତ୍ୱ     ଘେନ     ସମ୍ଭେ     ଦେହଂ
ସଦ୍‌ଗୁରୁ ନାରାୟଣଙ୍କ ଅଗତେ ସଦାଶିବ କହଂ ।
ସେ ଶବ୍ଦରୁ ଉତ୍ପତ୍ତି ଶୂନ୍ୟଂ
ଆକାଶରୁଂ ଉତ୍ପତ୍ତି ପୃଥ୍ୱୀ,"        (ଅମର କୋଷ- ୨)

(ପ୍ରାଚୀନ ଓଡ଼ିଆ ସାହିତ୍ୟରେ ନିର୍ଗୁଣଧାରା, ପୃ ୪୧୪ ରେ ଉଦ୍ଧୃତ)

— "ପାଦେ ସୂନାଗଦେହୀ ।
ଆଣ୍ଠୁରେ ଖେଚେଡ଼ୀ ।
ଗୁହ୍ୟେ ଗଣପତି ।
ଲିଙ୍ଗେ କାମଦେବ ।
ନାଭିରେ ବ୍ରହ୍ମା ।
ହୃଦେ ନାରାୟଣ ।
କଣ୍ଠେ ନୀଳକଣ୍ଠ ।
ନୀଳକଣ୍ଠ ଉପରେ ବୈକୁଣ୍ଠ ।
ବୈକୁଣ୍ଠ ଉପରେ ପ୍ରମବ୍ରହ୍ମ ବସେ ।
ଆଧାରେ ଘୃତ ।
ଲିଙ୍ଗେ ଛଅ ।
ନାଭିରେ ଦଶ ।
ହୃଦେ ବାର ।
କଣ୍ଠେ ଷୋଳ ।
ନୟନେ ଦୁଇ ।
ମୂଳ ତମ୍ଭରୁ ଉପରେ ପ୍ରମବ୍ରହ୍ମ ବସେ ।
ମାତା ରଜ ପିତା ବୀଜ ହୋଇଂ ଦେହଟି ।
ମାତା ରଜରୁ ଚର୍ମ, ରକ୍ତ, ମାଂସ ।
ପିତା ବୀଜରୁ ହାଡ଼, ଶିର, ବନ୍ଧ ।
ପବନ ବୋଲନ୍ତି ଯେ ବ୍ରହ୍ମ ସେ ।
ଇତିଶ୍ରୀ ହରିହର ସମ୍ବାଦେ ବ୍ରହ୍ମଜ୍ଞାନ ଅମର କୋଷ ସମ୍ପୂର୍ଣ୍ଣ ।

( ଅମର କୋଷ-୩, ପ୍ରାଚୀନ ଓଡ଼ିଆ ସାହିତ୍ୟରେ ନିର୍ଗୁଣଧାରା,
ପୃ ୪୨୩ ରେ ଉଦ୍ଧୃତ)

— "ଆଦିନାଥ ବୋଲନ୍ତି ଶୁଣ ପୁତ୍ର ହୋଇ
ଶୁଣ ଘଟ ଯୋଗ ବସ୍ତୁର
ଯେତ୍ଥି ସାଧିପାର ପାରିଲେ ଜୀଅଇ ଦ୍ୱାଦଶ କୋଟି ବଛର ।
(ଅମର କୋଷ-୩)

ନାଥ ସମ୍ପ୍ରଦାୟରେ ଯେଉଁ ପିଣ୍ଡ ବ୍ରହ୍ମାଣ୍ଡ ବାଦର ସୃଷ୍ଟି ହୋଇଥିଲା, ତାହା ଉତ୍ତର ଭାରତୀୟ ସନ୍ଥ ସାହିତ୍ୟକୁ ମଧ୍ୟ ପ୍ରଭାବିତ କରିଥିଲା । ସମକାଳୀନ ଦାଦୁ, କବୀର, ନାନକ ଆଦିଙ୍କ ଗ୍ରନ୍ଥରେ ଏହି ପିଣ୍ଡବ୍ରହ୍ମାଣ୍ଡ ବାଦର ପ୍ରତିଫଳନ ଦେଖିବାକୁ ମିଳିଥାଏ ।

କବୀରଙ୍କ ଭାଷାରେ—

"ମନମଥୁରା ଦିଲ୍ ଦ୍ୱାରକା କାୟା କାଶି ଜାଣି
ଦ୍ୱାଶାଂ ଦ୍ୱାର ଦେହୁରା ତାମେଂ ଜ୍ୟୋତି ପିଛାଂଣି"
(କବୀର ଗ୍ରନ୍ଥାବଳୀ, ୧୩।୧୦।୩୫)

— "କାୟା ମଧ୍ୟେ କୋଟି କୋଟି ତୀରଥ କାୟାମଧ୍ୟେ କାଶୀ
କାୟାମଧ୍ୟେ କମଳାପତି କାୟା ମଧ୍ୟେ ବୈକୁଣ୍ଠବାସୀ,"
(ତତ୍ରୈବ, ୩୭।୨୮)

— "ଜ୍ୟୋଂ ନୈନନ ମେଂ ପୂତରୀଜ୍ୟୋଂ ଖାଲିକ ଘଟମାହିଂ
ମୂରଖ ଲୋଗ ନ ଜାନହୀଂ ବାହାର ଢୁଁଢ଼ନ ଜାହିଁ ।"
(ତତ୍ରୈବ, ପୃ ୭)

— "ଜ୍ୟୋଂ ତିଲ ମାହୀଂ ତେଲ ହୈ ଜ୍ୟୋଂ ଚକମକ ମେଂ ଆଗି
ତେରା ସାଁଇ ତୁଜ୍‌ମେଂ ଜାଗି ସକୈ ତୋ ଜାଗି ।"
(ପୃ-୭)

— "ୟା ଘଟ ଭୀତର ସାତ ସମୁନ୍ଦର ୟାହି ମେଂ ନଦୀନାରା
ୟା ଘଟ ଭୀତର କାଶି ଦ୍ୱାରକା ୟାହିମେଂ ଠାକୁର ଦ୍ୱାରା
ୟା ଘଟ ଭୀତର ଚଂଦ ସୂରହୈ ଯାହି ମେଂ ନୌଲଖ ତାରା
କହୈଂ କବୀର ସୁନୋ ଭାଇ ସାଧୋ ୟାହି ମେଂ ସତ କରତାର ।"
(କବୀର ଗ୍ରନ୍ଥାବଳୀ, ପୃ ୨୭୩)

— "କୈସେ ବଟକା ବୀଜ ତାହି ମେଂ ପତ୍ର ଫୁଲ ଫଲ ଛାୟା
କାୟାମଧ୍ୟେ ବୁଂଦ ବସତୈ, ବୁଂଦ ମଧ୍ୟେ କାୟା ।।"
(ଭକ୍ତିଦର୍ଶନ, ପୃ ୧୬୪)

ଓଡ଼ିଆ ସାହିତ୍ୟର ଆଦିଗ୍ରନ୍ଥ ସାରଳାଙ୍କ 'ମହାଭାରତ'ରେ ମଧ୍ୟ ଏହି ପିଣ୍ଡବ୍ରହ୍ମାଣ୍ଡ ବାଦର ଏକ କାବ୍ୟିକ ମନୋଜ୍ଞ ବର୍ଣ୍ଣନା ଦେଖିବାକୁ ମିଳେ ।

"ଦେବତା କାହିଁ ଶୁଣ ଅନନ୍ତ ମହାବୀର
ଶରୀରେ ସେ ନିଜ ଦେବତା ବସନ୍ତି ଦେହର ।।
ପ୍ରଥମେଣ ଶିର ଯେ ତାଳୁରେ ବସେ ବ୍ରହ୍ମା
କପାଳ ପାଟିରେ ନାରାୟଣ ମହାତ୍ମା ।।
ଚନ୍ଦ୍ର ସୂର୍ଯ୍ୟ ଦେବତାଯେ ଅଛନ୍ତି ଚକ୍ଷୁ ବେନି
ନାସାଯେ ବସଇ ହୋ ପବନ ମହାଜ୍ଞାନୀ ।।
ନାଭିଠାରୁ ଉପରକୁ ତାଳୁ ଯାକେ
ତେତିଶ କୋଟି ଭୋଗ୍ୟ କରନ୍ତି ଦେବଲୋକେ ।।
ପିତୃ ଦଇବତ ପୁରୁଷ ବସନ୍ତି ନାଭି ମଣ୍ଡଳେ ଜଙ୍ଘ
ସ୍ଥଳ ଉଦକଯେ ଅନେ୍ତ ହେଂ ଯାଂନ୍ତି ଛାଡ଼ି ।।
ଭୂ ବୋଲଇ ଯେ ଦେବତାକୁ ନ ବଦଇ ଅନ୍ୟ
ଶରୀରେଣ ଥାଆନ୍ତି ସକଳ ଦେବତାମାନ ।।"
( ଆଦିପର୍ବ )

ପଞ୍ଚଦଶ ଶତାବ୍ଦୀର ଅନ୍ୟ ଏକ ବୈଷ୍ଣବ କବି ନାରସିଂହ ବିଲ୍ଲୋଚନ । ତାଙ୍କର 'ଗୋବିନ୍ଦ ଗୀତା'' ରେ ଜୟଦେବକୃତ ଶ୍ରୀଗୀତଗୋବିନ୍ଦର ତାତ୍ତ୍ୱିକ ଅର୍ଥ ଓ ରାଧାକୃଷ୍ଣ ଲୀଳାର ମାର୍ମିକ ରୂପ ଉଦ୍‌ଘାଟନ କରିବାକୁ ଯାଇ ଦେହ ମଧ୍ୟରେ ରାଧାକୃଷ୍ଣଙ୍କର ଅବସ୍ଥିତିକୁ ସୂଚାଇଛନ୍ତି । ତାଙ୍କ ମତରେ ଜୀବ ହେଉଛି ରାଧା ଓ ପରମ ହେଉଛି କୃଷ୍ଣ । ଏ ଉଭୟର ନିତ୍ୟଲୀଳା ହେଉଛି ରାଧାକୃଷ୍ଣ ଲୀଳା । କବିଙ୍କ ଭାଷାରେ—

"ଶୁଣିମା ସୁଜନେ ଜନେଂ ସାବଧାନ ହୋଇ
ରାଧିକା ସେ ଜୀବ କୃଷ୍ଣ ପରମ ଅଟଇ ।

ଯେତେକେ ହୋଇଥାନ୍ତି ଜଳା ପାଇଁ ଅବତାର
ଅଧ ଉର୍ଦ୍ଧେ କଲ୍ପିଣ ବିନୋଦ ଲୀଳାକର ।''

( ସପ୍ତମ ଗାଥା )

କବି ଏହି ଜୀବ ପରମ ରୂପୀ ରାଧାକୃଷ୍ଣଙ୍କର ଉତ୍ପତ୍ତି ପ୍ରସଙ୍ଗ ବର୍ଣ୍ଣନା କରି କହିଛନ୍ତି—

"ଜୀବ ପରମ ଦୁଇ ସ୍ୱଭାବ ପ୍ରକୃତି ପୁରୁଷ ଯେହି
ଯେତୁ ଦୁଇନାଦ ବିନ୍ଦୁ ସେ ବୋଲନ୍ତି ପ୍ରାଣପ୍ୟାନ ନାମ ସେହି
ଲୁହନ୍ତି ଭିନ୍ନ ଯେତୁକ ଜୀବନ ଊର୍ଦ୍ଧ ଅର୍ଦ୍ଧେଣ କଲ୍ପିଲେ
କଲ୍ପିତା ସୁଷମ୍ନା ମାର୍ଗେ ଅବତରି ବେନି ନାଡ଼ରେ ଚଳିଲେ ।"

ପୁନଶ୍ଚ କବି କହିଛନ୍ତି ଯେ, ରାଧାକୃଷ୍ଣଙ୍କର କେଳିକୁଞ୍ଜ ହେଉଛି ଅନନ୍ତଦଳ ବିଶିଷ୍ଟ ସହସ୍ରଦଳ କମଳ । ପ୍ରତ୍ୟେକ ଦଳ ଏକ ଏକ ନାୟିକା । କବି ରାଧା, କୃଷ୍ଣ ଓ ଗୋପାଙ୍ଗନାମାନଙ୍କ ପ୍ରସଙ୍ଗରେ ସ୍ପଷ୍ଟଭାବେ ଉଲ୍ଲେଖ କରି କହିଛନ୍ତି—

"ଗୋପୀମାନେ ଅଟନ୍ତି ଯେ ଅନନ୍ତ କମଳ
ରାଧିକା ଅଟନ୍ତି ଯେ କମଳେ କେଶର ।
ମଧୁକର ଅଟନ୍ତି ଯେ କାଳିଆ କହ୍ନାଇ
ଅନନ୍ତ କମଳ ଦଳ ମଧ୍ୟରେ ଭ୍ରମଇ ।" ଇତ୍ୟାଦି ।

( ସପ୍ତମ ଗାଥା )

ସାରଳାଙ୍କ ପରବର୍ତ୍ତୀ କାଳରେ ପଞ୍ଚସଖାଯୁଗୀୟ ରଚନା ମଧ୍ୟରେ ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱର ବିଶଦ ଚର୍ଚ୍ଚା ହୋଇଥିଲା । କବି ବଳରାମ ଦାସ ତାଙ୍କର 'ବିରାଟ ଗୀତା'ରେ ପାଦିରେ ବଡ଼ଦାଣ୍ଡ, କଣ୍ଠତଳକୁ ବାଇଶି ପାହାଚ, ଗଳାରେ ଅଠର ନଳା, କଣ୍ଠତଳେ ତୁଳସୀଚଉରା, ଗୁହ୍ୟରେ ଯାଜପୁର, ନାଭିରେ ବ୍ରହ୍ମାପୁର, ହୃଦୟରେ ବିଷ୍ଣୁପୁର, କଣ୍ଠରେ କପିଳାସ, ମୁଖରେ ବୈକୁଣ୍ଠ, ତାଳୁରେ ସ୍ୱର୍ଗଦ୍ୱାର, କପାଳରେ କାଉଁରୀମଣ୍ଡଳ, କପୋଳ ଉପରେ ଗୋଲହାଟ, ନାସିକାର ଦୁଇପୁଡ଼ାରେ ଦୁଇ ଆଲଟ, ଚକ୍ଷୁରେ ତ୍ରିମୂର୍ତ୍ତି, ମନରେ ଗରୁଡ଼ସ୍ତମ୍ଭ, ନାସାରେ ମଣୋହି କୋଠ, ରୁଣ୍ଡଦେଗ, ରୁଣ୍ଡମେଘ, ପଞ୍ଚବଟ, ଛଅରତୁ, ସାତବାର, ଗଙ୍ଗା-ଯମୁନା-ସରସ୍ୱତୀ ତିନି ନଦୀ ଓ ସେମାନଙ୍କର ସଙ୍ଗମସ୍ଥଳ ତ୍ରିବେଣୀ, ଚତୁର୍ବେଦ, ଶିଶୁବେଦ ପ୍ରଭୃତିକୁ ଏହି ଶରୀର ମଧ୍ୟରେ ପରିକଳ୍ପନା କରିଅଛନ୍ତି ।

(ଚତୁର୍ଥ ଅଧ୍ୟାୟ) କବି ବଳରାମ ଦାସ ମଧ୍ୟ ତାଙ୍କର 'ବ୍ରହ୍ମାଣ୍ଡ ଭୂଗୋଳ' ଗ୍ରନ୍ଥରେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱର ବର୍ଣ୍ଣନା କରିଛନ୍ତି । ତାଙ୍କର 'ଅମରକୋଷ ଗୀତା'ରେ ମଧ୍ୟ ଏହି ତତ୍ତ୍ୱର ବର୍ଣ୍ଣନା ରହିଛି । ଯଥା :—

"ଯାହା ଦେଖୁଛୁ ଏ ବ୍ରହ୍ମାଣ୍ଡେ । ସମସ୍ତ ଅଛି ଏହି ପିଣ୍ଡେ ।।
ବ୍ରହ୍ମାଣ୍ଡେ ଯେତେକ ଭିଆଣ । ପିଣ୍ଡରେ ଅଛଇ ସମାନ ।।"

ଓଡ଼ିଆ ଜ୍ଞାନମିଶ୍ରା ସାଧକବୃନ୍ଦ ଶ୍ରୀମଦ୍‌ଭାଗବତର ବିରାଟ ରୂପ କଳ୍ପନାକୁ କିପରି ପିଣ୍ଡବ୍ରହ୍ମାଣ୍ଡ ବାଦ ମଧ୍ୟରେ ଜୀବନ୍ତ କରି ରଖିଥିଲେ, ତାହାର ଦୃଷ୍ଟାନ୍ତ ବଳରାମ ଦାସଙ୍କ "ବେଦାନ୍ତସାର ଗୁପ୍ତଗୀତା"ରେ ଦେଖିବାକୁ ମିଳେ ।

"ଆବର ପଞ୍ଚ ମହାଭୂତେ । ରହିଲେ ବିରାଟର ପାଦେ ।।
ଶୁଣହୋ ପଣ୍ଡୁ ରାଜା ବାଳ । ତୋତେ କହିବା ତାଙ୍କ ସ୍ଥଳ ।।
କଣ୍ଠରୁ ବ୍ରହ୍ମ ରନ୍ଧ୍ର ଯାଏ । ଆକାଶ ରହିଲ ଏଠାଏଁ ।।
ହୃଦୟରୁଠାରୁ କଣ୍ଠସ୍ଥଳ । ହୋଇଲା ପବନ ମଣ୍ଡଳ ।।
ନାଭି କମଳୁ ହୃଦମୂଳ । ସେ ହେଲା ଅଗ୍ନିର ମଣ୍ଡଳ ।।
ତଳକୁ ଜାନୁଯାଏ ପୁଣ । ଜଳ ରହିଲ ଆବୋରଣ ।।
ପାଦରେ ପୃଥ୍ୱୀକଲା ଘର । ଏମନ୍ତେ ହେଲା ମଞ୍ଚପୁର ।।"

( ୨।୨୩-୨୯ )

ପୁନଶ୍ଚ ଏଥିରେ କୁହାଯାଇଛି, ତାଙ୍କ କର୍ଣ୍ଣରେ ଦିଗଗଣ, ଚର୍ମରେ ପବନ, ଚକ୍ଷୁରେ ଅର୍କ ଜିହ୍ୱାରେ ପ୍ରଚେତା, ନାସାରେ ଅଶ୍ୱିନୀକୁମାର, ଗୁହ୍ୟରେ ଅଗ୍ନିଦେବତା, ବାହୁରେ ଇନ୍ଦ୍ର, ପାଦରେ ବିଷ୍ଣୁ, ଅଣ୍ଡରେ ପ୍ରଜାପତି, ମନରେ ଚନ୍ଦ୍ର, ଆଦି ବାସ କରନ୍ତି । ( ୨।୩୦।୩୮ ) ଏହି ବିରାଟ ପୁରୁଷ ଅନନ୍ତକୋଟି ବ୍ରହ୍ମାଣ୍ଡର ଆଧାର । ବିରାଟ ପୁରୁଷର ଦେହ ଏବଂ ଏହି ମନୁଷ୍ୟର ଦେହ ମଧ୍ୟରେ ପାର୍ଥକ୍ୟ କିଛି ନାହିଁ । ଏହି କଥାକୁ ବଳରାମ ଦାସ ସ୍ପଷ୍ଟ କରି କହିଛନ୍ତି—

"ଅନନ୍ତ କୋଟି ବ୍ରହ୍ମାଣ୍ଡ । ବିରାଟ ଦେହେ ହୋଏ ରୁଣ୍ଡ ।।
ଏହି ପ୍ରକାରେ ତୋର ଦେହ । ପଞ୍ଚମେ ତତ୍ତ୍ୱେ ଛନ୍ତି ରହି ।।
ବିରାଟ ରୂପ ତୋର ଦେହ । ସେ ଏହି ଭିନ୍ନ ଯେ ନୁହଇ ।।
ଏହି ପ୍ରକାରେ ଦେହେ ବୁଝ । ଆତ୍ମା ସ୍ୱରୂପେ ସବୁ ହେଜ ।।
ଜୀବ ପରମରେ ଆଚ୍ଛାଦ । ତେବେ ପାରିବୁ ଭିନ୍ନ ଭେଦ ।।"

( ବେଦାନ୍ତସାର ଗୁପ୍ତଗୀତା, ୨।୫୪-୫୮ )

ଏହି 'ବେଦାନ୍ତସାର ଗୁପ୍ତଗୀତା'ର ତୃତୀୟ ଅଧ୍ୟାୟରେ କବି ବଳରାମ ଦାସ ଶ୍ରୀମଦ୍ ଭଗବଦ୍‌ଗୀତାକୁ ଅନୁସରଣ କରି ଦେହକୁ ଓଲଟ ବୃକ୍ଷ କହିବା ସଙ୍ଗେ ସଙ୍ଗେ ଦେହ ମଧ୍ୟରେ ଅବସ୍ଥିତ ଷଡ଼ଚକ୍ରରେ କିପରି ବିଭିନ୍ନ ଦେବତା ବାସ କରନ୍ତି, ତା'ର ବର୍ଣ୍ଣନା ପ୍ରଦାନ କରିଅଛନ୍ତି । ତାଙ୍କର 'ଗୁପ୍ତଗୀତା'ରେ ମଧ୍ୟ ଏହି ପିଣ୍ଡବ୍ରହ୍ମାଣ୍ଡ ବାଦର ଉଲ୍ଲେଖ ରହିଛି, ଯେଉଁଠି ସେ କହିଚନ୍ତି—

'ଏ ସ୍ୱର୍ଗ ମର୍ତ୍ତ୍ୟ ଯେ ପାତାଳ । ଏ ତିନି ଏକ ଠାବେ ମେଳ ॥
ନାଭିରୁ ପାଦଯାଏ ପୁଣ । ପାତାଳ ବୋଲି ହୋ ଅର୍ଜୁନ ॥
କଟୀରୁ ଭୁଜଯାଏ ଜାଣ । ମର୍ତ୍ତ୍ୟ ବୋଲିଣ ଏ ପ୍ରମାଣ ॥
କଣ୍ଠରୁ ଲଲାଟର ଯାଏ । ଆକାଶ ବୋଲି ବେଦ କହେ ॥"

ଏଥିରେ ପୁଣି ନାସାକୁ ସାମବେଦର ସ୍ଥାନ, ନୟନକୁ ଯଜୁର୍ବେଦର ସ୍ଥାନ, ମୁଖକୁ ଋଗ୍‌ବେଦର ସ୍ଥାନ ଏବଂ ଶ୍ରବଣକୁ ଅଥର୍ବ ବେଦର ସ୍ଥାନ ବୋଲି କୁହାଯାଇଛି । ଯାଜପୁରଠାରୁ ଶ୍ରୀକ୍ଷେତ୍ର ପର୍ଯ୍ୟନ୍ତ ପିଣ୍ଡ ମଧ୍ୟରେ ଦର୍ଶାଇବା ମଧ୍ୟ ଜ୍ଞାନମିଶ୍ରା ଭକ୍ତ ସାଧକଙ୍କର ଏକ ପାରମ୍ପରିକ ପ୍ରଥା ଥିଲା । କାରଣ ଏହି ସ୍ଥାନ ସେତେବେଳେ ସ୍ମାର୍ତ୍ତ, ବୈଷ୍ଣବ ଓ ଶୈବପୀଠ ରୂପେ ପ୍ରସିଦ୍ଧି ଲାଭ କରିଥିଲା । ବଳରାମ ଦାସ ପାଦକୁ ଯାଜପୁର, କଟୀକୁ କଟକ, ପେଟକୁ ଖଣ୍ଡଗିରି, ନାଭିକୁ ଭୁବନେଶ୍ୱର, ତୁଳସୀଚଉରାକୁ ହୃଦୟ, ଭୁଜକୁ ଦକ୍ଷେଶ୍ୱର ଭାବେ ନିର୍ଦ୍ଦେଶିତ କରିଅଛନ୍ତି । ଏହାର ଅନୁରୂପ ବର୍ଣ୍ଣନା ତାଙ୍କର 'ବିରାଟଗୀତା'ରେ ମଧ୍ୟ ଦେଖିବାକୁ ମିଳିଥାଏ । କବି ପିଣ୍ଡ ଏବଂ ବ୍ରହ୍ମାଣ୍ଡକୁ ଏକ ଭାବେ ଗ୍ରହଣ କରି କହିଛନ୍ତି—

'ବ୍ରହ୍ମାଣ୍ଡେ ଯେତେ ବସ୍ତୁମତ । ପିଣ୍ଡରେ ଅଛନ୍ତି ସମସ୍ତ ॥
ପିଣ୍ଡବ୍ରହ୍ମାଣ୍ଡ ଏକମତ । ତୋ ଆଗେ କହିଦେଲି ତତ୍ତ୍ୱ ॥
ବ୍ରହ୍ମାଣ୍ଡେ ବୁଲିଣ ନମର । ଏ ପିଣ୍ଡେ ସଦା ହେଉ କର ॥'
( ବିରାଟଗୀତା, ଚତୁର୍ଥ ଅଧ୍ୟାୟ )

ପୁନଶ୍ଚ ଏହି 'ବିରାଟ ଗୀତା'ର ଅନ୍ୟ ଏକ ସ୍ଥଳରେ କବି ଲେଖିଛନ୍ତି—

"ଚଉଦ ବ୍ରହ୍ମାଣ୍ଡ କହିବା । ତୋ ମନ ସଂଶୟ ଦହିବା ॥
ବ୍ରହ୍ମାଣ୍ଡ ଦାଣ୍ଡ ତାକୁ କହି । ତେର ବ୍ରହ୍ମାଣ୍ଡେ ବର୍ଣ୍ଣି ତହିଁ ॥
ତେର ଚକ୍ଷୁ ତେର ବ୍ରହ୍ମାଣ୍ଡ । କଣ୍ଠରେ ଏକଇ ବ୍ରହ୍ମାଣ୍ଡ ॥
ମୁଣ୍ଡରେ ତେର ଯେ ବ୍ରହ୍ମାଣ୍ଡ । କଣ୍ଠରେ ଏକଇ ବ୍ରହ୍ମାଣ୍ଡ ॥

ହୃଦୟ ନାଭି ହେନ ହୋଇ । ଇନ୍ଦ୍ର ଯେ ଗୁହ୍ୟ ହେନ ହୋଇ ॥
ଏମନ୍ତେ ପୃଥ୍ୱୀ ଯେ ବ୍ରହ୍ମାଣ୍ଡ । କହିବା ପୃଥ୍ୱୀ ନବଖଣ୍ଡ ॥
ପ୍ରଥମ ଖଣ୍ଡ ପୃଥ୍ୱୀ ଯେହି । ତାଳୁକା ପୁର ଯେ ଅଟଇ ॥

କବି ବଳରାମ ଦାସଙ୍କର "ଛତିଶ ଗୁପ୍ତଗୀତା"ରେ ମଧ୍ୟ କୃଷ୍ଣଙ୍କ ମୁଖରେ ଏହି ପିଣ୍ଡବ୍ରହ୍ମାଣ୍ଡବାଦର ଅବତାରଣା କରାଯାଇଛି । ଶ୍ରୀହରି ଅର୍ଜ୍ଜୁନଙ୍କୁ କହୁଛନ୍ତି—

"ଶ୍ରୀହରି ବୋଲନ୍ତି ଶୁଣ ଅର୍ଜ୍ଜୁନ । ଯେମନ୍ତ ବ୍ରହ୍ମାଣ୍ଡ ନାମ ଭିଆଣ ॥
ସବୁ ଦେହରୁ ଏହି ଦେହ ସାର । ଏ ଦେହୁଁ ନାହିଁ ଆନ କଳେବର ॥
ଦଶଦିଗପାଳ ଦେବତା ଯେତେ । ତେତିଶି କୋଟି ଦେବତା ସହିତେ ॥
ପୃଥ୍ୱୀ ଆପ ତେଜ ବାୟୁ ଆକାଶ । ଏ ଦେହ ଜ୍ଞାନେ ତହିଁ ତହିଁ ଲେଖ ॥
ସବୁଘଟ ମଧ୍ୟେ ସାରଟି ଏହି । ଦିବ୍ୟଜ୍ଞାନ ଏହି ଶରୀରେ ପାଇ ॥

(ପୃ, ୮୧)

ଏହି ଯୁଗର ଅନ୍ୟତମ ସାଧକ ଭାଗବତକାର ଜଗନ୍ନାଥ ଦାସ ତାଙ୍କ 'ତୁଳାଭିଣା'ରେ ଲେଖିଛନ୍ତି—"ମାତାରଜ ଷଡ଼ରଡ, ପିତାବୀର୍ଯ୍ୟ ରଡଏ—ଏମନ୍ତେ ସାତରଡକୁ ଦ୍ୱିଗୁଣ କଲେ ଚଉଦରଡ ହେଲା । ଏହା ଭିତରୁ ଚଉଦ ବ୍ରହ୍ମାଣ୍ଡ ହେଲା । ଶିକୁଳି ଛନ୍ଦେଣ ଛନ୍ଦିଲା । ଷୋଡ଼ଶ ଡମ୍ବରୁ କଲା । କଟୀରୁ କଣ୍ଠଯାଏ ସର୍ଜିଲି । ସାତଶ ବାସ୍ତରି ନାଡ଼ୀ କଲା । ଡମ୍ବରକୁ ବେଢ଼ି ରହିଲା । ଶିକୁଳି ଛନ୍ଦରେ ବାନ୍ଧିଲା" । (ଦ୍ୱିତୀୟ ଅଧ୍ୟାୟ) "ଏ ସବୁ ମନଠାରୁ ଜାତ ହେଲା । ତ୍ରିଗୁଣ ତ୍ରିଭୁବନ । ସପ୍ତ ସମୁଦ୍ର, ସପ୍ତ ଦ୍ୱୀପ, ମହାବାସୁକୀ । ଏହି ଝାଡ଼ ପର୍ବତ, ବୃକ୍ଷ ପାଷାଣ । ଏତେକ ଘେନ ଏ ଦେହର ବସ୍ତୁର । ଆକାଶ କ୍ଷେତ୍ର ପବନ । ନଖଦନ୍ତ ରୋମାବଳୀ । ଉନଶ ଖଣ୍ଡ । କୋଷ୍ଠିହାଡ଼ ହୋଡ଼ ହୋଇ ହାଡ଼ ଖଣ୍ଡଏ ଅଛି । ଉଣ ନଦୀ, ଗୁରୁବେଦ, ଗୁରୁବାଟ, ଗୁରୁମଠ, ଗୁରୁ ସମ୍ପ୍ରଦା, ଗୁରୁଧାମ, ବାଆଜ ଦ୍ୱାର, ଅନନ୍ତ କୋଟି ସାଧୁ, ନଅ ନାଥ, ଛୈୟାଶି ସିଦ୍ଧ, ଚଉରାଅଶି ମନ୍ତ୍ର, ଚୌରାଶି ଜାତି ଗଙ୍ଗା, ଗୁରୁଧାମ, ସକଳ ତୀର୍ଥ, ବାଣିଜ୍ୟ, ଲଭ, ବେଦ, ପୁରାଣ, ଅଷ୍ଟାଦଶ ଭାରତ, ବାଳସ୍କନ୍ଧ ଭାଗବତ, ସାତଖଣ୍ଡ ରାମାୟଣ, ଷଡ଼ଖଣ୍ଡ ହରିବଂଶ, ଦେହ ବିଦ୍ୟା ଜଉତିଷ, ନବନାଟକ, ଯୁକ୍ତ ଯୁକ୍ତି X X X ଏ ଦେହକୁ ଏମାନେ ଆବୋରି ରହିଛନ୍ତି ଓ ମାତା ରଜରୁ ଏମାନେ ଜାତ ହୋଇଛନ୍ତି ।" (ତୃତୀୟ ଅଧ୍ୟାୟ)

ଜ୍ଞାନ ମାର୍ଗର ଅନ୍ୟତମ ସାଧକ ଅଚ୍ୟୁତାନନ୍ଦ ଦାସ ଶରୀର ଉପରେ ଗୁରୁତ୍ୱ ପ୍ରଦାନ କରି ଆମ୍ଭକୁ ଚହ୍ନିବା ପାଇଁ ନିର୍ଦ୍ଦେଶ କରିଛନ୍ତି । କାରଣ ଏହି ଶରୀର

ମଧ୍ୟରେ ସମସ୍ତ ବ୍ରହ୍ମାଣ୍ଡ ବିଦ୍ୟମାନ । ସେ ଶରୀର ମଧ୍ୟରେ ସପ୍ତପାତାଳ, ମର୍ତ୍ତ୍ୟର ସପ୍ତପୁର ଓ ସ୍ୱର୍ଗର ସପ୍ତପୁର ପ୍ରଭୃତି ଏମନ୍ତେ ଏକୋଇଶ ପୁର, ତନ୍ମଧ୍ୟରେ ଶ୍ରୀଜଗନ୍ନାଥ ସମସ୍ତପୁର, କିନ୍ନର ପ୍ରଭୃତି ଅବସ୍ଥାନ କରିଥିବା ଉଲ୍ଲେଖ କରିଛନ୍ତି । କବି ଅଚ୍ୟୁତାନନ୍ଦ ଦେହନାଭି, ହୃଦ, ନାଭି, ଉଦର, ପୃଷ୍ଠ, କଟୀକୁ ମର୍ତ୍ତ୍ୟର ସପ୍ତପୁର ଓ ଶିର, ଚକ୍ଷୁ, କର୍ଣ୍ଣ, ନାସା, କପୋଳ, ଗଂଡରେ ଇନ୍ଦ୍ର, କୁବେର, ଶଙ୍କର, ସୁର, କିନ୍ନର, ବ୍ରହ୍ମା, ଓ ସମୀର ଅବସ୍ଥାନ କରୁଥିବା କଥା କହିଛନ୍ତି । ସପ୍ତପାତାଳ ମଧ୍ୟରୁ କବି ପାଦର ଅଗ୍ରଭାଗରେ ତଳ, ଆଉ ଅର୍ଦ୍ଧ ମଧ୍ୟରେ ତଳାତଳ ଗୁପ୍ତ ଦେଶରେ ସୁତଳ, ତାହାର ନିମ୍ନ ଭାଗରେ ନିତଳ, ଆଣ୍ଠୁରେ ବିତଳ, ଜାନୁରେ ତଳ ଓ ଜଙ୍ଘର ଉପରେ ରସାତଳକୁ ନିର୍ଦ୍ଦେଶ କରିଛନ୍ତି । ସ୍ୱର୍ଗର ସପ୍ତପୁରକୁ କବି ବ୍ରହ୍ମ, ତାଳୁକା, ଚକ୍ଷୁ, କର୍ଣ୍ଣ, ନାସା, ଗଂଡସ୍ଥଳ, କପୋଳ ମଧ୍ୟରେ ସୂଚିତ କରିଛନ୍ତି । ପରିଶେଷରେ କବି କହିଛନ୍ତି—

> "ଏକୋଇଶ ପୁର ପିଣ୍ଡବ୍ରହ୍ମାଣ୍ଡ ଯେ ସବ
> ଜ୍ୟୋତି ମଣ୍ଡଳର ମଧ୍ୟେ ବିଜେ ନରହରି ।" (ତୃତୀୟ ଅଧ୍ୟାୟ)

ଅଚ୍ୟୁତାନନ୍ଦ 'ପରମ ରହସ୍ୟ' ନାମକ ଏକ ରଚନାରେ ରସାମୃତସିନ୍ଧୁର ବିଷୟବସ୍ତୁକୁ ବିଶଦଭାବରେ ବର୍ଣ୍ଣନା କରି ଚଉଷଠୀ ଦଳକୁ ବ୍ରହ୍ମାଣ୍ଡ ଓ ବ୍ରହ୍ମାଦିଙ୍କର ଆଶ୍ରୟସ୍ଥଳ, ଷୋଳ ଦଳକୁ ଷୋଳ ବୈକୁଣ୍ଠ, ଅଷ୍ଟଦଳକୁ ଅଷ୍ଟପାଟବଂଶୀଙ୍କର ସ୍ଥାନ, ଷଡ଼ଦଳକୁ ଗୋପାଳ ମୂର୍ତ୍ତି ଦର୍ଶନ ସ୍ଥାନ, ଦ୍ୱିଦଳକୁ ରାଧାକୃଷ୍ଣ ମିଳନସ୍ଥାନ ଓ ଏକଦଳକୁ ସଚ୍ଚିଦାନନ୍ଦଙ୍କ ମନ୍ଦିର ବୋଲି କହିଛନ୍ତି । ଶରୀର ମଧ୍ୟରେ ରାଧାକୃଷ୍ଣ ଦର୍ଶନ କରି ହୃଦୟରେ ରାଧାକୃଷ୍ଣ ଭାବ ପୋଷଣ କରିବା ସର୍ବଶ୍ରେଷ୍ଠ ସାଧନ ବୋଲି ସେ ଅଭିହିତ କରିଛନ୍ତି । ଅଚ୍ୟୁତାନନ୍ଦଙ୍କ ନାମରେ ମିଳୁଥିବା 'ଛୟାଳିଶ ପଟଳ'ରେ ମଧ୍ୟ ପିଣ୍ଡ ବ୍ରହ୍ମାଣ୍ଡବାଦର ବିଶଦ ବର୍ଣ୍ଣନା ଦିଆଯାଇଛି । ପିଣ୍ଡ ମଧ୍ୟରେ ସମଗ୍ର ବ୍ରହ୍ମାଣ୍ଡକୁ ଦର୍ଶନ କରିବା ନିମନ୍ତେ ଜୀବକୁ ଦିବ୍ୟ ଦର୍ଶନ ଦିଆଯାଇ ଏଥିରେ କୁହାଯାଇଛି—

> "ଏ ଦେହ ମଧ୍ୟେ ଅଛି ସବୁ । ମିଛେ ତୁ ଏଣ୍ଡ ତେଣ୍ଡ ଭାବୁ ॥
> ତୋ ପିଣ୍ଡ କର ତିନିଭାଗ । ପାତାଳ ମର୍ତ୍ତ୍ୟ ପୁଣି ସ୍ୱର୍ଗ ॥
> ପାଦରୁ କଟିର ପ୍ରମାଣ । ପାତାଳ ବୋଲି ମନେ ଘେନ ॥
> କଟିରୁ କଣ୍ଠ ଅଟେ ମର୍ତ୍ତ୍ୟ । କଣ୍ଠରୁ ଶାଖାଟି ଏମନ୍ତ ॥
> ସ୍ୱର୍ଗ ନାମରେ ଶୋଭାପାଏ । ପିଣ୍ଡ ଏ ରୂପେ ଭେଦ ହୁଏ ॥
>
> (ଦ୍ୱିତୀୟ ଭାଗ - ପୃ ୯୩)

ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ଏହି ଏକୋଇଶପୁର ପରିକଳ୍ପନା ପଞ୍ଚସଖା ସାହିତ୍ୟ ମଧ୍ୟରେ ବହୁବାର ଦେଖିବାକୁ ମିଳିଥାଏ । ସନ୍ଥ କବିମାନେ ବାରମ୍ବାର ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ସ୍ଥିତିକୁ ଉଦ୍‌ଘୋଷଣା କରି ଯାଇଛନ୍ତି । ତେଣୁ • ଅନୁରୂପ ଭାବେ ଏଥିରେ କୁହାଯାଇଛି—

"ପିଣ୍ଡରେ ନଥିବ ଯାହା ବ୍ରହ୍ମାଣ୍ଡରେ ନାହିଁ
ଏଣୁ ପିଣ୍ଡ ବ୍ରହ୍ମାଣ୍ଡକୁ ଏକ କରୁଥାଇ ।" (ତତ୍ତ୍ୱବୋଧିନୀ, ପୃ ୧୭)

ପୁନଶ୍ଚ ଏହି ଗ୍ରନ୍ଥରେ କୁହାଯାଇଛି—

"ପଞ୍ଚଭୂତ ନିଜ ନିଜ ଗୁଣେ ଏହି ପରି
ପିଣ୍ଡ ବ୍ରହ୍ମାଣ୍ଡ ଭିତରେ ରହିଛନ୍ତି ପୂରି ।

X X X

ବ୍ରହ୍ମା ବିଷ୍ଣୁ ଶିବ ଏହି ତିନିଜଣ ମିଳି
ପିଣ୍ଡରେ ରହିଅଛନ୍ତି ତିନିରୂପ ଧରି ।" (ପୃ ୧୮-୧୯)

— "ଏ ପିଣ୍ଡେ ସକଳ ବ୍ରହ୍ମାଣ୍ଡ । ପୂରି ରହିଛି ଆଦିଖଣ୍ଡ ॥
ଯେତେ ଲକ୍ଷଣ ଭୂତ ଦେହେ । ପ୍ରାଣୀ ଶରୀର ସବୁ ବହେ ॥
ଯାହା ତୁ ଦେଖୁଛୁ ନେତ୍ରରେ । ସେ ସବୁ ଏହାର ମଧ୍ୟରେ ॥

(ତତ୍ତ୍ୱବୋଧିନୀ, ପୃ ୧୨)

ପଞ୍ଚସଖା ଯୁଗର ଅନ୍ୟତମ ସାଧକ କବି ଯଶୋବନ୍ତ ଦାସ ମଧ୍ୟ ତାଙ୍କର • ରଚନା ମଧ୍ୟରେ ପିଣ୍ଡବ୍ରହ୍ମାଣ୍ଡବାଦର ବର୍ଣ୍ଣନା ପ୍ରଦାନ କରିଅଛନ୍ତି । କବି ଶରୀର ମଧ୍ୟରେ ଦେବତାମାନଙ୍କର ଅବସ୍ଥିତି ସମ୍ପର୍କରେ ସୂଚନା ଦେଇ କହିଛନ୍ତି—

"ବ୍ରହ୍ମା ଯେ ବସିଲେ ନାଭିରେ । ବିଷ୍ଣୁ ରହିଲେ ହୃଦସ୍ଥରେ ॥
କଣ୍ଠେ ରହିଲେ ସଦାଶିବ । ଲଲାଟେ ନିରଞ୍ଜନ ଦେବ ॥
କୃଷ୍ଣ ଅଂଶରୁ କାମ ଜାଣ । ରହିଲେ ଲିଙ୍ଗ ଚକ୍ରେ ପୁଣ
ରୁଦ୍ର ଅଂଶରୁ ପ୍ରକାଶ । ମୂଳ କମଳେ ସେ ଗଣେଶ ॥
ବ୍ରହ୍ମାଣ୍ଡ ଦେଖି ନରହରି । ଧର୍ମ ସ୍ୱରୂପେ ଅବତରି ॥

(ପ୍ରେମଭକ୍ତି ବ୍ରହ୍ମଗୀତା, ପୃ-୨୯)

କବି ଅନନ୍ତ ଦାସ ମଧ୍ୟ 'କଳିଭାଗବତ'' ନାମକ ଏକ ରଚନା ମଧ୍ୟରେ ପିଣ୍ଡ ଓ ବ୍ରହ୍ମାଣ୍ଡକୁ ଏକ ଭାବରେ ଗ୍ରହଣ କରି ଲେଖିଛନ୍ତି—

''ପିଣ୍ଡ ବୋଲିଣ ଯାହା କହି । ସେହିଟି ବ୍ରହ୍ମାଣ୍ଡ ଅଟଇ ।
ଯାହାକୁ ବୋଲନ୍ତି ବ୍ରହ୍ମାଣ୍ଡ । ସେହି ହୋଇଛି ଜାଣ ପିଣ୍ଡ ॥
ପିଂଡ଼ ବ୍ରହ୍ମାଂଡ଼ ଏକ ମତ । ଏକର ନଥାଇ ବହୁତ ॥'' (ପୃ ୧୬)

ପଞ୍ଚସଖାଯୁଗର କିଞ୍ଚିତ୍ ପରବର୍ତ୍ତୀକାଳରେ କବିଚନ୍ଦ୍ରମଣି ଦାସ ତାଙ୍କର 'ସୁଧାସାର ଗୀତା'ରେ ପିଂଡ ମଧ୍ୟରେ ବ୍ରହ୍ମାଣ୍ଡର ସକଳବସ୍ତୁକୁ ରହିଥିବାର ବିଶଦ ବର୍ଣ୍ଣନା ଦେଇଛନ୍ତି । ତାଙ୍କ ମତରେ—

''ଯେଉଁ ପରକାର ଚଉଦ ବ୍ରହ୍ମାଣ୍ଡ ସେହିପରି ଗୋଟି ଏହି
ରାଜା କୋଟୁଆଳ ମନ୍ତ୍ରୀ ଅମାନତ୍ୟ ସମସ୍ତେ ଅଛନ୍ତି ତହିଁ ।''

(ଷଷ୍ଠ ବୋଲି)

ପୁଣି କବି ଅନ୍ୟତ୍ର ଶରୀରର ଚକ୍ର ମଧ୍ୟରେ ବିଭିନ୍ନ ଦେବତାମାନଙ୍କର ଅବସ୍ଥିତିକୁ ସୁଚିତ କରି ଜୀବ କିପରି ସାଧନା ବଳରେ ଅଜର ଓ ଅମର ହୋଇ-ପାରିବ, ସେ ପଥ ନିର୍ଦ୍ଦେଶିତ କରିଛନ୍ତି । ମନୁଷ୍ୟ ଶରୀରର ଜିହ୍ୱାରେ ସରସ୍ୱତୀ, ଦୁଇ କର୍ଣ୍ଣରେ ଗଙ୍ଗା ଓ ଯମୁନା, ବେନି ଚକ୍ଷୁରେ ଚନ୍ଦ୍ରସୂର୍ଯ୍ୟ ଅବସ୍ଥାନ କରିଥିବା ପ୍ରକାଶ କରିଛନ୍ତି । (ନବମ ବୋଲି)

ଏହି ଯୁଗର ଅନ୍ୟତମ ବିଶିଷ୍ଟ ସନ୍ଥ ସାଧକ କବି ଚୈତନ୍ୟ ଦାସ ତାଙ୍କର 'ବିଷ୍ଣୁଗର୍ଭ ପୁରାଣ' ଓ ନିର୍ଗୁଣ ମାହାତ୍ମ୍ୟ' ଗ୍ରନ୍ଥରେ ପିଣ୍ଡବ୍ରହ୍ମାଣ୍ଡବାଦର ବହୁ ତାତ୍ତ୍ୱିକ ବର୍ଣ୍ଣନା ପ୍ରଦାନ କରିଅଛନ୍ତି । ସେ ସବୁକୁ ଏଠାରେ ନିର୍ଦ୍ଦେଶ କରିବା ସମ୍ଭବ ନୁହେଁ । ତେଣୁ ତନ୍ମଧ୍ୟରୁ ଅଳ୍ପ କେତୋଟି ଉଦାହରଣ ଗ୍ରହଣ କରି ପିଣ୍ଡବ୍ରହ୍ମାଣ୍ଡ-ବାଦକୁ ଏଠାରେ ସୁଚିତ କରାଯାଉଛି । ଶରୀର ମଧ୍ୟରେ ବ୍ରହ୍ମାଂଡ଼ର ସ୍ଥିତିକୁ ସନ୍ଧାନ କରି କବି କହିଛନ୍ତି—

ଚଉଦ ବ୍ରହ୍ମାଣ୍ଡରେ ଯେତେ । କାୟା ମଧ୍ୟରେ ଅଛି ତେତେ ॥
ତିନି ଭୁବନ ନବଖଣ୍ଡ । ଆଉର ଚଉଦ ବ୍ରହ୍ମାଂଡ଼ ॥
କୀଟ ପତଙ୍ଗ ଆଦି ଯେତେ । ସ୍ଥାବର ଜଙ୍ଗମ ସହିତେ ॥
ତାରା ମଂଡଳ ରବି ଇନ୍ଦୁ । ମେଘ ପବନ ସାତସିନ୍ଧୁ ॥

ବିଷ୍ଣୁ ଭୁବନ ବ୍ରହ୍ମପୁର । ଆଦି ଅନାଦି ବିଶ୍ୱେଶ୍ୱର ॥
ତେତିଶ କୋଟି ଦେବକୁଳ । ବରୁଣ ଦଶଦିଗପାଳ ॥
ସାମ ଋକ ଯଜୁ ଅଥର୍ବ । ଅଛନ୍ତି ଘଟେ ବେଦ ସର୍ବ ॥
ଆବର ଅଷ୍ଟ କୁଳଗିରି । ମେରୁ ମନ୍ଦର ଆଦି କରି ॥
ଅନାଦି ପ୍ରଭୁ ନିରାକାର । ସ୍ୱୟଂ ଅଛନ୍ତି ଏ ଶରୀର ॥

(ନିର୍ଗୁଣ ମାହାତ୍ମ୍ୟ, ଅଷ୍ଟମ ଅଧ୍ୟାୟ)

"ମନ୍ମଥ ଚନ୍ଦ୍ରିକା"ର କବି ବ୍ରଜ ଶ୍ରୀବଥା ଦାସ ମଧ୍ୟ ପିଂଡବ୍ରହ୍ମାଂଡବାଦର ଉଲ୍ଲେଖ କରିଅଛନ୍ତି । ଶରୀର ମଧ୍ୟରେ ଭଗବାନ୍‌ଙ୍କୁ ଚହ୍ନିବା ପାଇଁ ସେ ମନକୁ ଆହ୍ୱାନ କରି କହିଛନ୍ତି—

'ତୋହର ଦେହରେ ଶୁଦ୍ଧ ଚହ୍ନିଜନା ମନ
ଗୁପତେ ଅଛନ୍ତି ହରି ତୋ ଘଟ ମଧ୍ୟେଣ ।'

ପୁନଶ୍ଚ ପିଂଡ଼ ମଧ୍ୟରେ ବ୍ରହ୍ମାଂଡର ସ୍ଥିତି ସମ୍ପର୍କରେ ସେ କହିଛନ୍ତି—

"ପିଂଡରେ ବ୍ରହ୍ମାଂଡ ଅଂଡ ବ୍ରହ୍ମାଂଡ଼ ଭିତରେ
ଅଂଡ ପ୍ରାୟେ କଥାଗୋଟି ବୁଝିବ ମନରେ ।" (ପୃ - ୬୪)

ଏହି କାଳର ଅନ୍ୟତମ ସନ୍ଥ ସାଧକ କବି ଦ୍ୱାରିକା ଦାସ ତାଙ୍କର 'ପରତେଗୀତା'ରେ ବ୍ରହ୍ମାଣ୍ଡ ନିର୍ମାଣକୁ ଏକ ରୂପକ ମଧ୍ୟରେ ଉଲ୍ଲେଖ କରିଛନ୍ତି—

"ବ୍ରହ୍ମାଂଡ ଭିତରେ ଯେତେ ଯାତନା
ହାଂଡ଼ି ଭିତରେ ଏସବୁ ଆପନା ।" (ଅଷ୍ଟବିଂଶ ଅଧ୍ୟାୟ ପୃ ୬୧)

ପିଂଡ ବ୍ରହ୍ମାଂଡ ତତ୍ତ୍ୱର ବର୍ଣ୍ଣନା ପ୍ରସଙ୍ଗରେ ସେ କହିଛନ୍ତି —

"ସର୍ବ କ୍ଷେତ୍ରସାର ଶରୀର ଏହି
ସବୁ ଦେବ ସାର ବିଷ୍ଣୁ ଅଟଇ । ୬ ।

× × ×

ଏମନ୍ତ କ୍ଷେତ୍ର ଏ ଦେହ ଅଟଇ
କୁରୁକ୍ଷେତ୍ର ଆଦି କେଉଁ ଫଳେ ପାଇ । ୧୨ ।

କୋଟିଏ ତୀର୍ଥ ଏ ଦେହ ଭିତରେ
ଲୋଡ଼ିଲେ ପାଇଅଛୁ ନିକଟରେ । ୧୩ ।

କୁପୁରୁଷମାନେ ଗୁଣ୍ଡି ଏହାକୁ
ଯାଆନ୍ତି କ୍ଷେତ୍ର ପାଇଁ ସେ ଦୂରକୁ । ୧୪ ।

ସବୁ ଭୂମିକ୍ଷେତ୍ର ଲୋପ୍ୟ ଦେହରେ
ବୁଝି ନପାରନ୍ତି ପଶୁ ବୁଦ୍ଧିରେ । ୧୫ । (ପୃ.୫)

'ରାଧା ରସାମୃତ ଗୀତା'ର ରଚୟିତା କବି ଶିବ ଦାସ ମଧ୍ୟ ଏହି ପିଂଡ ବ୍ରହ୍ମାଂଡବାଦର ଉଲ୍ଲେଖ କରିଅଛନ୍ତି । ପିଂଡ ମଧ୍ୟରେ ବ୍ରହ୍ମାଂଡ଼ର ସକଳବସ୍ତୁକୁ ଗୁଂଡ କରି ସେ କହିଛଂନ୍ତି—

'ଭକ୍ତିଯୋଗ ଜ୍ଞାନ ଯୋଗ ପିଣ୍ଡ ଯେ ବ୍ରହ୍ମାଣ୍ଡ
ବିଚାରି ଲୋଡ଼ିଲେ ସବୁ ଏହିଠାରେ କୁଣ୍ଡ ।'

(ସପ୍ତମ ଅଧ୍ୟାୟ, ପୃ ୪୨)

ପିଣ୍ଡ ମଧ୍ୟରେ ସମସ୍ତ ଭୁବନକୁ ନିର୍ଦ୍ଦେଶ କରି ସେ କହିଛନ୍ତି—

'କଟୀଠାରୁ ପାଦଯାଏ ସପତ ପାତାଳ
ନାଭିଠାରୁ କଣ୍ଠଯାଏ ମର୍ତ୍ତ୍ୟ ଯେ ମଂଡଳ ।
ତଳପାଦକୁ କରିଛାଦେ ସୁତଳ ଭୁବନ
ଉପର ପାପୁଲି ଯେ ତ ତଳ ବୋଲି ଜାଣ ।
ଜଙ୍ଘକୁ ଯେ ସମତଳ ବୋଲି କହୁଅଛୁ
ରସାତଳ ବୋଲି ପିଣ୍ଡି ନାମ ବୋଲାଇଛୁ ।
ମହାତଳ ବୋଲିଣ ଯେ ଗୁହ୍ୟଦ୍ୱାର କହି
ଅତଳ ବୋଲିଣ ଯେ ଇନ୍ଦ୍ରି ଅଛି ହୋଇ ।'

ଦେବାନନ୍ଦ ଦାସଙ୍କ 'ବୈଚନ୍ଦ୍ର ଗୀତା'ରେ ସାଧକ ପିଂଡ ମଧ୍ୟରେ ବ୍ରହ୍ମାଂଡ ଦର୍ଶନ କରିବା କଥା ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ—

ବ୍ରହ୍ମାଂଡ ଅଛି ତୋ ଉଦର
ଜ୍ଞାନ କ ତୋତେ ଅଗୋଚର ।

ସକଳ ବୃକ୍ଷ ଠାବ କଲେ
ପିଂଡ ବ୍ରହ୍ମାଂଡ଼ ମେ ଦେଖିଲେ ।

ଏମନ୍ତେ ସମାଧି ଭଜନ୍
ପବନ ପାଲଟି ବନ୍ଧନ ।'

ଏହି ଭଳି ଭାବରେ ଜ୍ଞାନମିଶ୍ରା ଭକ୍ତି ସାଧକମାନେ ତାଙ୍କର ରଚିତ ବିଭିନ୍ନ ଗ୍ରନ୍ଥ ମଧ୍ୟରେ ପିଂଡ ବ୍ରହ୍ମାଂଡବାଦର ତାତ୍ତ୍ୱିକ ବ୍ୟାଖ୍ୟା କରିଛନ୍ତି । ଏହି ଭକ୍ତି ମାର୍ଗର କବିମାନେ ଦେହ ମଧ୍ୟରେ ବ୍ରହ୍ମାଂଡର ଅବସ୍ଥିତିକୁ ଉପଲବ୍ଧି କରି ଯୋଗ ମାଧ୍ୟମରେ ବ୍ରହ୍ମ ଦର୍ଶନ କରିବାରେ ବ୍ରତୀ ଥିଲେ । ଏହାର ପରବର୍ତ୍ତୀ କାଳରେ ଓଡ଼ିଶାର ଅସଂଖ୍ୟ ଭକ୍ତକବି ଏହି ପିଂଡବ୍ରହ୍ମାଂଡ ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ ହୋଇ ଦେହ ମଧ୍ୟରେ ଦେବତା ଦର୍ଶନ କରି ମୁକ୍ତିଲାଭ କରିବାର ବାଣୀକୁ ତାଙ୍କର ଭଜନ ଜଣାଣମାନଙ୍କରେ ପ୍ରଚାର କରିଛନ୍ତି ।



# ତୃତୀୟ ପରିଚ୍ଛେଦ
# ଶୂନ୍ୟ ତତ୍ତ୍ୱ

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଶୂନ୍ୟବାଦର ବହୁଳ ବର୍ଣ୍ଣନା ଦେଖି ବହୁ ସମାଲୋଚକ ଏହାକୁ ବୌଦ୍ଧଧର୍ମର ଶୂନ୍ୟବାଦ ଏବଂ ଜ୍ଞାନମିଶ୍ରା ଭକ୍ତ ସାଧକଙ୍କୁ ପ୍ରଚ୍ଛନ୍ନ ବୌଦ୍ଧ ଆଖ୍ୟା ଦେଇଛନ୍ତି । ଏହି ଉକ୍ତିର ଆଂଶିକ ସତ୍ୟତା ଥିଲେ ମଧ୍ୟ ଏହାକୁ ସଂପୂର୍ଣ୍ଣ ସତ୍ୟ ବୋଲି କୁହାଯିବା ଅନୁଚିତ୍ । ବୌଦ୍ଧଧର୍ମରେ ଶୂନ୍ୟବାଦ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି, ମାତ୍ର ଏହା ବୌଦ୍ଧଧର୍ମର ମୌଳିକ କଳ୍ପନା ନୁହେଁ କିମ୍ବା ବୌଦ୍ଧଧର୍ମର ଶୂନ୍ୟବାଦ ସିଧାସଳଖ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟକୁ ମଧ୍ୟ ଆସିନାହିଁ । ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଯେଉଁ ଶୂନ୍ୟର ବର୍ଣ୍ଣନା କରାଯାଇଛି ତାହା ବେଦାନ୍ତ ଚିନ୍ତାଧାରାରେ ପରିପୁଷ୍ଟ, ବୌଦ୍ଧଧର୍ମର ଶୂନ୍ୟବାଦ ସହିତ ଏହାର ସାମ୍ୟ ମାତ୍ର ରହିଛି । ତେଣୁ ଏଠାରେ ଶୂନ୍ୟ କଳ୍ପନାର ବିକାଶ ଧାରାକୁ ଉଲ୍ଲେଖ କଲେ କଥାଟି ସ୍ପଷ୍ଟ ହୋଇଯିବ ।

ଶୂନ୍ୟଚିନ୍ତା ବହୁ ପ୍ରାଚୀନ, ବୈଦିକ ଯୁଗରୁ ମଧ୍ୟ ଏହି ଶୂନ୍ୟ ଚିନ୍ତାର ଆଭାସ ମିଳିଥାଏ, ଋଗ୍ ବେଦର ନାସଦୀୟ ସୂକ୍ତରେ ଅଛି--

ନାସଦାସୀନ୍ନୋ ସଦାସୀତ୍ତଦାନୀଂ ନାସୀଦ୍ରଜୋ
ନୋ ବ୍ୟୋମା ପରୋଯତ୍, କିମାବରୀବଃ କୁହ
କସ୍ୟ ଶର୍ମନ୍ନମ୍ଭଃ କିମାସୀଦ ଗହନଂ ଗମ୍ଭୀର .........

ଅର୍ଥାତ୍ ପ୍ରଥମେ କିଛି ନଥିଲା । ଆଦିକାଳରେ ସତ୍ ବା ଅସତ୍ କିଛି ନଥିଲା । ବ୍ୟୋମ ନଥିଲା । ସୃଷ୍ଟିର ଆଧାର କିଛି ନଥିଲା । ଅପ୍ରତିହିତ ଅନ୍ଧକାରର କିଛି ଆବରଣ ନଥିଲା । ଶୂନ୍ୟରୁ ସୃଷ୍ଟି କଳ୍ପନା ମୂଳରେ ଥିବା ଏହି ବୈଦିକ ଚିନ୍ତାଧାରା

ପରବର୍ତ୍ତୀ କାଳରେ କ୍ରମବିକଶିତ ହୋଇ ଭିନ୍ନ ଭିନ୍ନ ରୂପ ପରିଗ୍ରହ କରିଛି । ଉପନିଷଦ ଯୁଗରେ ଏହି ଶୂନ୍ୟକୁ ଏକ ସତ୍ତାବିଶିଷ୍ଟ ଏବଂ ଏକ ଓ ଅଦ୍ୱିତୀୟ ରୂପେ ବର୍ଣ୍ଣନା କରାଯାଇଛି । ଛାନ୍ଦୋଗ୍ୟ ଉପନିଷଦରେ ଏହାର ସୂଚନା ଦେଖି-ବାକୁ ମିଳିଥାଏ ।

ଯଥା: ସଦେବ ସୋମ୍ୟ ଇଦମଗ୍ରେ ଆସୀଦେକମେବା ଦ୍ୱିତୀୟମ୍
ତଦ୍ଧୈକେ ଆହୁରସଦେବେଦମଗ୍ର ଆସୀଦେକମଦ୍ୱିତୀୟମ୍,
ତସ୍ମାଦସତଃ ସଜ୍ଜାୟତ (୬।୨।୧)

କୁତସ୍ତୁ ଖଲୁ ସୌମ୍ୟୈବଂ ସ୍ୟାଦିତି ହୋବାଚ
କଥମଃ ସତଃ ସଜ୍ଜାୟେତେତି
ସତ୍ତ୍ୱେବ ସୋମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ (୬।୨।୨)

ଅର୍ଥାତ ସୃଷ୍ଟି ପୂର୍ବରୁ ଏକ ଅଦ୍ୱିତୀୟ ସତ୍ ଥିଲା । କେତେକ କୁହନ୍ତି— ଏକ ଅଦ୍ୱିତୀୟ ଅସତ୍ ସୃଷ୍ଟି ପୂର୍ବରୁ ଥିଲା ଏବଂ ଏଥିରୁ ସୃଷ୍ଟି ହୋଇଛି । ପ୍ରଶ୍ନ ହୋଇଥିଲା—ଅସତ୍‌ରୁ କିପରି ସତ୍ ସୃଷ୍ଟି କିପରି ସମ୍ଭବ ହେଲା । ଉତ୍ତର ହୋଇଥିଲା— ସୃଷ୍ଟି ପୂର୍ବରୁ ଏକ ଅଦ୍ୱିତୀୟ ସତ୍ତା ବିଶିଷ୍ଟ ଅସତ୍ ଥିଲା ।

ଏଠାରେ ଅସତ୍‌ର ଅର୍ଥ ହେଉଛି ଶୂନ୍ୟ । କିନ୍ତୁ ତାହା ସତ୍ତାଯୁକ୍ତ ଶୂନ୍ୟଅଟେ ବୋଲି ଏହି ଶ୍ଳୋକରେ ସଙ୍କେତିତ ହୋଇଛି । ଅଥର୍ବ ବେଦରେ ସ୍କମ୍ଭ ସୁକ୍ତରେ ଯେଉଁ ଉଚ୍ଛିଷ୍ଟଙ୍କର ବର୍ଣ୍ଣନା କରାଯାଇଛି, ସେ ହେଉଛନ୍ତି ନିର୍ବିଶେଷ, ନିର୍ଗୁଣ ତଥା ଶୂନ୍ୟବ୍ରହ୍ମ । ଉଚ୍ଛିଷ୍ଟର ଅର୍ଥ ହେଉଛି । ଅବଶେଷ ଦୃଶ୍ୟମାନ ଜଗତର ସମସ୍ତ ବସ୍ତୁକୁ ନେତିନେତି ନ୍ୟାୟରେ ନିଷେଧ କଲାପରେ ଯାହାରହେ ସେ ହିଁ ହେଉଛନ୍ତି ଉଚ୍ଛିଷ୍ଟ ବା ବ୍ରହ୍ମ । ଉପନିଷଦମାନଙ୍କରେ ବ୍ରହ୍ମଙ୍କର ଯେଉଁ ନେତିବାଚକ ନିର୍ଗୁଣ ବା ନିର୍ବିଶେଷ ରୂପର ବର୍ଣ୍ଣନା କରାଯାଇଛି ଏହା ପୂର୍ଣ୍ଣତଃ ଶୂନ୍ୟବାଚକ । ନିର୍ଗୁଣ ବ୍ରହ୍ମଙ୍କ ସମ୍ପର୍କରେ କଠୋପନିଷଦରେ କୁହାଯାଇଛି—

ଅଶବ୍ଦମସ୍ପର୍ଶମରୂପମବ୍ୟୟଂ ତାଥାରସନ୍ନିତ୍ୟମଗନ୍ଧବଚ୍ଚଯତ୍
ଅନାଦ୍ୟନନ୍ତମ୍ମହତଃ ପରଂ ଧ୍ରୁବଂ ନିଚାଚ୍ୟ ତନ୍ମୃତ୍ୟୁମୁଖାତ୍ ପ୍ରମୁଚ୍ୟତେ
(୩।୧୫)

ମୁଣ୍ଡକ ଉପନିଷଦରେ ଠିକ୍ ସେହିପରି କୁହାଯାଇଛି । ବ୍ରହ୍ମ ହେଉଛନ୍ତି ଅଦୃଶ୍ୟ, ଅଗ୍ରାହ୍ୟ, ଅଗୋତ୍ର, ଅବର୍ଣ୍ଣ, ଅଚକ୍ଷୁ ଓ ଅକର୍ଣ୍ଣ । ଅପାଦଓ ଅପାଣି ତଥାନିତ୍ୟ । ଯଥା :—

ଯତ୍ତଦଦ୍ରେଶ୍ୟମଗ୍ରାହ୍ୟମଗୋତ୍ରମବର୍ଣ୍ଣମଚକ୍ଷୁଃ ଶ୍ରୋତ୍ରଂ
ତଦପାଣି ପାଦଂ ନିତ୍ୟମ୍

( ୧।୬ ମୁଣ୍ଡକ )

ବୃହଦାରଣ୍ୟକ ଉପନିଷଦରେ କୁହାଯାଇଛି—

ସେ (ବ୍ରହ୍ମ) ସ୍ଥୂଳ ନୁହନ୍ତି, ସୂକ୍ଷ୍ମ ନୁହନ୍ତି, ଲଘୁ ନୁହନ୍ତି, ଦୀର୍ଘ ନୁହନ୍ତି, ଲାଲରଙ୍ଗ ନୁହନ୍ତି, ଅନ୍ଧକାରମୟ ନୁହନ୍ତି, ବାୟୁ ବା ଆକାଶ ନୁହନ୍ତି, ମସୃଣ ନୁହନ୍ତି ବା ଛାୟାମୟ ନୁହନ୍ତି । ସେ ରଙ୍ଗ ରହିତ, ଗନ୍ଧ ରହିତ, ଯାହାଙ୍କୁ ନେତ୍ର, କର୍ଣ୍ଣବାଣୀ ମନତେଜ ପ୍ରାଣମୁଖ ମାତ୍ରାଆଦି କିଛି କୁହାଯାଇ ପାରିବ ନାହିଁ ।

( ୩।୮।୮ )

ତୈତ୍ତିରୀୟ ଉପନିଷଦରେ କୁହାଯାଇଛି— ସୃଷ୍ଟି ଆରମ୍ଭ ପୂର୍ବରୁ ଅସତ୍ତ୍ୱ ( ଅର୍ଥାତ ସତ୍ତ୍ୱବିହୀନ ଶୂନ୍ୟ) ବିଦ୍ୟମାନ ଥିଲା । ସେହି ଅସତ୍ତ୍ୱରୁ ସତ୍ତ୍ୱ ( ସତ୍ତ୍ୱବିଶିଷ୍ଟ ଜଗତ ) ର ସୃଷ୍ଟି ହେଲା । ପରମାତ୍ମା ସେହି ଅସତ୍ତ୍ୱରୁ ନିଜକୁ ସତ୍ତ୍ୱ ରୂପରେ ପ୍ରକଟିତ କରିଛନ୍ତି । ସପ୍ତମ ଅନୁବାକ୍‌ର ପ୍ରଥମ ଶ୍ଳୋକରେ ଏହାର ଉଲ୍ଲେଖ ଏହିପରି ଦେଖିବାକୁ ମିଳେ । ଯଥା—

ଅସଦ୍ୱା ଇଦମଗ୍ର ଆସୀତ୍ । ତତୋବୈ ସଦ୍‌ଜାୟତ,
ତଦାତ୍ମାନଂ ସ୍ୱୟମକୁରୁତ ।

ମନୁସ୍ମୃତିର ପ୍ରଥମ ଅଧ୍ୟାୟରେ ଉଲ୍ଲେଖ ଅଛି—

ଆସୀଦିଦଂ ତମୋଭୂତ ପ୍ରଜ୍ଞାତମଲକ୍ଷଣମ୍
ଅପ୍ରତର୍କ୍ୟମବିଜ୍ଞେୟମ୍ ପ୍ରସୁପ୍ତମିବସର୍ବତଃ-୫
ତତଃ ସ୍ୱୟଂଭୂର୍ଭଗବାନବ୍ୟକ୍ତୋ ବ୍ୟଞ୍ଜୟନ୍ନିଦମ୍
ମହାଭୂତାଦି ବୃତ୍ତୌଜାଃ ପ୍ରାଦୁରାସୀତ୍ତମୋନୁଦଃ ।୬।

ଅର୍ଥାତ ଏହି ବିଶ୍ୱ ପ୍ରଥମେ ତମଃରେ ଲୀନ ହୋଇଥିଲା । ଏଣୁ ତାହା ଅଦୃଶ୍ୟଥିଲା ଏବଂ ତାହାର କଳ୍ପନା ଯୋଗ୍ୟ ରୂପ ମଧ୍ୟ ନଥିଲା । ଏହା ପ୍ରଗାଢ଼ ନିଦ୍ରାରେ ସୁପ୍ତ ସଦୃଶ ହୋଇ ଅବିଜ୍ଞେୟ ଓ ଅପ୍ରତର୍କ୍ୟ ଥିଲା । ଅବ୍ୟକ୍ତ ସ୍ୱୟଂଭୂ ଭଗବାନ ଏହି ତମକୁ ଦୂର କରି ମହାଭୂତକୁ ପ୍ରକଟ କଲେ ଏବଂ ସ୍ୱୟଂ ପ୍ରକଟ ହେଲେ ।

ଉପନିଷଦମାନଙ୍କରେ ଯେଉଁ ଅସଦ୍ ବା ସତ୍ତ୍ୱବିହୀନ ଶୂନ୍ୟବ୍ରହ୍ମଙ୍କର ଉଲ୍ଲେଖ ଦେଖିବାକୁ ମିଳେ ତାହାଙ୍କର ନିବାସ ସ୍ଥଳ ମଧ୍ୟ ଶୂନ୍ୟପୁର । ପଞ୍ଚସଖା

ଆଗମ ଅନ୍ତର୍ଭୁକ୍ତ ପୁରୁଷୋତ୍ତମ ତାପିନୀ ବା ପୁରୁଷ ବୋଧିନୀ ସୁକ୍ତରେ ଏହି ଶୂନ୍ୟମଣ୍ଡଳର ବର୍ଣ୍ଣନା ମଧ୍ୟ ଦେଖିବାକୁ ମିଳିଥାଏ । ଯଥା—

ଅଥଶୂନ୍ୟ ମଣ୍ଡଳେ ଭଗବନ୍ତମେନ ବୈକୁଣ୍ଠମିତ
ସାଯୁଜ୍ୟକ୍ତଭକ୍ତ ପଦ୍ମାସନାସୀନଃ କୃଷ୍ଣଧ୍ୟାନ ପରାୟଣଃ

ଏହି ଶୂନ୍ୟମଣ୍ଡଳ ବା ଶୂନ୍ୟପୁରର ତିନୋଟି ସ୍ତର ଥିବା ବିଷୟ ବିଷ୍ଣୁପୁରାଣରେ ଦେଖିବାକୁ ମିଳିଥାଏ । ଯଥା—

କୃତାକୃତଭୟୋର୍ମଧ୍ୟେ ମହର୍ଲୋକଃ ଇତିସ୍ମୃତଃ
ଶୂନ୍ୟଂ ଭବତି କଳ୍ପାନ୍ତେ ଯୋହତ୍ୟନ୍ତଂ ନ ବିନଶ୍ୟତି ( ୭।୬।୧୦ )

ଏହାର ଅର୍ଥ ହେଉଛି ଭୂଃ , ଭୁବଃ ଓ ସ୍ୱଃ ଏହି ତିନୋଟି ଲୋକ ହେଉଛି କୃତ ଏବଂ ଜନ, ତପଃ ଓ ସତ୍ୟ ଏହି ତିନୋଟି ଲୋକ ହେଉଛି ଅକୃତ । ଏହି କୃତ ଲୋକ ଓ ଅକୃତ ଲୋକର ମଧ୍ୟସ୍ଥଳରେ ମହଃଲୋକ ଅବସ୍ଥିତ । ମହଃଲୋକ ଠାରୁ ପ୍ରତିକଳ୍ପରେ ଶୂନ୍ୟ ବିଦ୍ୟମାନ । ଅର୍ଥାତ ମହଃ ଲୋକପରେ ଶୂନ୍ୟର ପ୍ରଥମ ସ୍ତର ଆରମ୍ଭ ଏବଂ ସେଠାରେ ଜନଲୋକ ଅବସ୍ଥିତ । ତପଃ ଲୋକପରେ ଶୂନ୍ୟର ତୃତୀୟ ସ୍ତର ଆରମ୍ଭ ଏବଂ ସେଠାରେ ସତ୍ୟଲୋକ ଅବସ୍ଥିତ । ଏହାପରେ ଶୂନ୍ୟର ୪ର୍ଥ ସ୍ତର ବା ସର୍ବଶୂନ୍ୟଲୋକ ଅବସ୍ଥିତ ଯାହାର କେବେ ବିନାଶ ହୁଏ ନାହିଁ । ଶୂନ୍ୟମଣ୍ଡଳର ୪ଟି ସ୍ତର କଳ୍ପନା ବୌଦ୍ଧଧର୍ମରୁ ବୈଷ୍ଣବଧର୍ମକୁ ଆସିନାହିଁ ବରଂ ଏହା ଏକ ବୈଦିକ ଚିନ୍ତାଧାରା, ବୃହଦାରଣ୍ୟକ ଉପନିଷଦରେ କୁହାଯାଇଛି— ଗାୟତ୍ରୀମନ୍ତ୍ରର ପ୍ରଥମ ତିନିପାଦ ହେଉଛି ଭୂଃ, ଭୁବଃ ଓ ସ୍ୱଃ । ଏହା ଦୃଶ୍ୟମାନ୍ ଜଗତ୍‌ତ୍ରୟ ଏବଂ ଏହା ହେଉଛି ରଜ । ଏହାପରେ ଯାହା, ତାହାହେଉଛି ଗାୟତ୍ରୀଙ୍କର ଚତୁର୍ଥ ପଦ ପରୋରଜ ଏବଂ ତୁରୀୟାବସ୍ଥା ( ପଞ୍ଚମ ଅଧ୍ୟାୟ, ଚତୁର୍ଦ୍ଦଶ ବ୍ରାହ୍ମଣ ୭ ପଦ ) ଗାୟତ୍ରୀଙ୍କର ଚତୁର୍ଥପଦ ବା ତୁରୀୟ ଦର୍ଶନ ପଦ ସମସ୍ତ ଲୋକର ଊର୍ଦ୍ଧ୍ୱରେ । ( ୫।୧୪।୮ )

ନିର୍ବାଣ ତନ୍ତ୍ରରେ କୁହାଯାଇଛି ସହସ୍ରାର ହେଉଛି, ତୁରୀୟ ନାମକ ଜ୍ଞାନଭୂମିର ସ୍ଥାନ । ଏଥିରେ କୁହାଯାଇଛି ସାଲୋକ୍ୟ ମୁକ୍ତିର ସ୍ଥାନ, ଜନଲୋକ ସାରୂପ୍ୟ ମୁକ୍ତିର ସ୍ଥାନ, ତପଃଲୋକ ସାଯୁଜ୍ୟ ମୁକ୍ତିର ସ୍ଥାନ ଏବଂ ସତ୍ୟଲୋକ ବା ତୁରୀୟନାମକ ଜ୍ଞାନଭୂମି ହେଉଛି ନିର୍ବାଣ ସ୍ଥାନ । ଏହା ସର୍ବୋଚ୍ଚ ଲୋକ । ବିଷ୍ଣୁ-ପୁରାଣ ଅନୁଯାୟୀ ଏହା ହେଉଛି ଶୂନ୍ୟର ଚତୁର୍ଥସ୍ତର ଯାହା ଉପରକୁ ଆଉ କିଛି ନାହିଁ ଏବଂ ଯାହାର ବିନାଶ କେବେ ହୁଏନାହିଁ ।

ବୈଦିକ ଚନ୍ଦ୍ରାଧାରରେ ଶୂନ୍ୟରୁ କପରି ସୃଷ୍ଟି ହୋଇଛି, ଶୂନ୍ୟର ଉପର ସ୍ତରେଟି ସ୍ତର ଅଛି ଏବଂ ଶୂନ୍ୟର ଚତୁର୍ଥ ସ୍ତର ଉପରି ନିର୍ବାଣର ସ୍ଥାନ ଓ ସେଠାରେ ଉପର କୃଷ୍ଣ ବିରାଜିତ ତାହା ବର୍ଣ୍ଣିତ ହେବାପୂର୍ବରୁ ଶୂନ୍ୟପୁରୁଷ ବା ନିର୍ଗୁଣପୁରୁଷ କଳ୍ପନା କରି ବୈଦିକ ସମୟରେ ବହୁଶ୍ରୁତ ନୁହେଁ ତାହା ଅରୂପ, ନିର୍ଗୁଣ ବ୍ରହ୍ମ ବର୍ଣ୍ଣନାରେ ସୂଚିତ କରାଯାଇଛି । ପତଞ୍ଜଳିଙ୍କର ଯୋଗଦର୍ଶନରେ ବର୍ଣ୍ଣିତ ହୋଇଥିବା ସାଧନାର ଶେଷ ଦୁଇଟି ସ୍ତର - ସମାଧି ଓ କୈବଲ୍ୟ ଏହି ଶୂନ୍ୟତାର ଉପଲବ୍ଧି କରାଇଥାଏ । ଯଥା—

ତଦେବାର୍ଥ ମାତ୍ର ନିର୍ଭାସଂ ସ୍ୱରୂପ ଶୂନ୍ୟମିବ ସାମାଧି

( ବିଭୂତି ପାଦେ ୩ )

ପୁରୁଷାର୍ଥ ଶୂନ୍ୟାନାଂ ପ୍ରତିପ୍ରସବଃ କୈବଲ୍ୟଂ

( କୈବଲ୍ୟ ପାଦ ୩୪ )

ସମାଧି ଅବସ୍ଥାରେ ସାଧକ ନିଜ ସ୍ୱରୂପର ଶୂନ୍ୟତାକୁ ଅନୁଭବ କରିଥାଏ ଏବଂ କୈବଲ୍ୟାବସ୍ଥାରେ ପୁରୁଷାର୍ଥଶୂନ୍ୟତା ବା ଗୁଣଶୂନ୍ୟତା ବା ନିର୍ଗୁଣାବସ୍ଥାକୁ ଅନୁଭବ କରିଥାଏ । ସାଂଖ୍ୟ ଦର୍ଶନର ନିର୍ଗୁଣ ପୁରୁଷ ଓ ଯୋଗ ଦର୍ଶନର ନିର୍ଗୁଣପୁରୁଷ ମଧ୍ୟରେ ବସ୍ତୁତଃ ପାର୍ଥକ୍ୟ କିଛିନାହିଁ । ବେଦାନ୍ତର ନିର୍ଗୁଣବ୍ରହ୍ମକୁ ଉପଲବ୍ଧି କରି ଯେଉଁ ବ୍ରାହ୍ମୀସ୍ଥିତି ଅବସ୍ଥା ଆସିଥାଏ ତାହା ଏହି ନିର୍ଗୁଣ ପୁରୁଷାବସ୍ଥା ମାତ୍ର ।

ପରବର୍ତ୍ତୀ ବୌଦ୍ଧଧର୍ମର ମହାଯାନ ଶାଖା ଓ ସହଜଯାନ ଶାଖାରେ ଯେଉଁ ଶୂନ୍ୟବାଦ ବର୍ଣ୍ଣିତ ହୋଇଛି ତାହା ବୁଦ୍ଧଙ୍କ କଥିତ ସର୍ବଂ ଅନିତ୍ୟଂ, ସର୍ବଂ ଅନାତ୍ମଂ, ସର୍ବଂ ଅସତ୍ୟଂ ନୁହେଁ । ଏହିଶୂନ୍ୟ ଶୂନ୍ୟ ନୁହେଁ, କିମ୍ବା ଅଶୂନ୍ୟନୁହେଁ । ନାଗାର୍ଜ୍ଜୁନଙ୍କର ମାଧ୍ୟମିକ କାରିକାରେ ଶୂନ୍ୟ ସମ୍ପର୍କରେ କୁହାଯାଇଛି ।

"ଅବାଚ୍ୟୋହ୍ୟନକ୍ଷରଃ ସର୍ବଶୂନ୍ୟଃ ଶାନ୍ତୋହିନିର୍ମଳଃ ।"

ଅର୍ଥାତ ଏହାକୁ ବାକ୍ୟଦ୍ୱାରା ବା କୌଣସି ଅକ୍ଷର ଦ୍ୱାରା ପ୍ରକାଶ କରାଯାଇପାରେ ନାହିଁ । ଏହା ସର୍ବଶୂନ୍ୟ, ଶାନ୍ତ ଓ ନିର୍ମଳ ।

ସହଜାମ୍ନାୟ ପଞ୍ଜିକାରେ କୁହାଯାଇଛି ଏହି ଶୂନ୍ୟ ଏକ ଅନିର୍ବଚନୀୟ ତତ୍ତ୍ୱ—

ସାବସ୍ଥା କାପ୍ୟବକ୍ତେବ୍ୟା ମାଦୃଶା ଶୂନ୍ୟତୋଚ୍ୟତେ
ନ ପୁନର୍ଲୌକିକାଦେବ ନାସ୍ତିକ୍ୟାର୍ଥାନୁପାତିନୀ ।"

ଅର୍ଥାତ ଶୂନ୍ୟାବସ୍ଥା ଅବକ୍ତେସ୍ଯ ଓ ଅନିର୍ବଚନୀୟ । ଏହା ନାସ୍ତି ବା ଅଭାବବୋଧକ ନୁହେଁ ।

ଶୂନ୍ୟବାଦୀ ବୌଦ୍ଧମାନଙ୍କ ମତରେ ଶୂନ୍ୟ ହେଉଛି ଏକ ଅଦ୍ୱୈତ ପରମାର୍ଥତତ୍ତ୍ୱ ଏବଂ ଏହା ହେଉଛି ତଥତା ବା ତଥାଗତ । ଏହାର ଅପ୍ରାପ୍ତିରେ ଆତ୍ମକଲ୍ୟାଣ କିମ୍ବା ପରକଲ୍ୟାଣ ସମ୍ଭବପର ନୁହେଁ ।

ସମ୍ୟକ୍ ସଂବୋଧି ବିନା ଏହି ଅଦ୍ୱୈତ ତତ୍ତ୍ୱର ଉପଲବ୍ଧି ସମ୍ଭବପର ନୁହେଁ । ଜ୍ଞାନ, ଶୀଳ, କ୍ଷାନ୍ତି, ବୀର୍ଯ୍ୟ, ସମାଧି ଓ ପ୍ରଜ୍ଞା ଆଦି ଷଟ୍ ପରମିତାର ଉପଲବ୍ଧିରେ ସମ୍ୟକ୍ ସଂବୋଧିର ବିକାଶ ଘଟିଥାଏ । ଏହା ମଧ୍ୟରୁ ଜ୍ଞାନ, ଶୀଳ ଓ ଶାନ୍ତିର ଅନବରତ ଅନୁସରଣ ଦ୍ୱାରା ପୁଣ୍ୟ ସଂସାରର ପ୍ରାପ୍ତି ଏବଂ ବୀର୍ଯ୍ୟ ଓ ସମାଧିର ସତତ ଅଭ୍ୟାସଦ୍ୱାରା ଜ୍ଞାନ ସଂସାରର ପ୍ରାପ୍ତି ହୋଇଥାଏ ।

ଶୂନ୍ୟ ପରିକଳ୍ପନା ଯୋଗ ଓ ତନ୍ତ୍ର ସହିତ ସଦାସର୍ବଦା ସମନ୍ୱିତ । ପୂର୍ବରୁ କୁହାଯାଇଛି ଯୋଗ ଓ ତନ୍ତ୍ରଶାସ୍ତ୍ରରେ ଶରୀର ମଧ୍ୟସ୍ଥ ଯେଉଁ ଷଡ଼ଚକ୍ରର ବର୍ଣ୍ଣନା କରାଯାଇଛି ତାହାର ଶେଷଚକ୍ର ବା ଷଷ୍ଠଚକ୍ର ହେଉଛି ସହସ୍ରାର ଚକ୍ର । ଏହା ଶୂନ୍ୟଚକ୍ର ବା ଶୂନ୍ୟାନୁଭୂତିର ସ୍ଥାନ । ବୌଦ୍ଧଧର୍ମର ଯୋଗାଚାର ଓ ମାଧ୍ୟମିକ ଶାଖାନ୍ତର୍ଭୁକ୍ତ ବୌଦ୍ଧ ଏହି ଶେଷ ଚକ୍ରଟିକୁ ଉଷ୍ଣୀଶ ଚକ୍ର ବା ଚତୁଃଷଷ୍ଠୀ ଦଳଚକ୍ର କହି ଏହାକୁ ନୈରାତ୍ମଦେବୀ ବା ଶୂନ୍ୟର ବିହାରସ୍ଥଳ କହିଛନ୍ତି । ଯୋଗୀ ( ଉଭୟ ହିନ୍ଦୁ ଓ ବୌଦ୍ଧ ) ସାଧନାବଳରେ ଏହି ଚକ୍ରରେ ଉପନୀତ ହେଲେ, ତାଙ୍କର ସୁଖଦୁଃଖ, ରାଗ, ଦ୍ୱେଷ, ହର୍ଷ, ଶୋକ, କ୍ଷୁଧା ପିପାସା ରହେନାହିଁ । ତାହାର ସମସ୍ତ ଦ୍ୱନ୍ଦ୍ୱଭାବ ଦୂରହୋଇ କେବଳ ଆତ୍ମାନୁଭୂତ ହୋଇଥାଏ । ଶୂନ୍ୟବାଦୀ ବୌଦ୍ଧଙ୍କ ମତରେ ଆତ୍ମା ହେଉଛି ଶୂନ୍ୟତା ସୂଚକ । ତେଣୁ ଏହାର ଉପଲବ୍ଧି ହେଉଛି ତଥତା ବା thatness ର ଉପଲବ୍ଧି । ଏହି ଶୂନ୍ୟାବସ୍ଥାର ଉପଲବଧି ମନବଚନର ଗୋଚର ନୁହେଁ । ଏହା ଅନିର୍ବଚନୀୟ । ହିନ୍ଦୁ ଯୋଗଶାସ୍ତ୍ରରେ ଏହାକୁ ମୋକ୍ଷାବସ୍ଥା କୁହାଗଲାବେଳେ ବୌଦ୍ଧ ଯୋଗ ଶାସ୍ତ୍ରରେ ଏହାକୁ ନିର୍ବାଣାବସ୍ଥା କୁହାଯାଇଛି । ସୁତରାଂ ବୌଦ୍ଧ ଧର୍ମର ଶୂନ୍ୟ, ନିର୍ବାଣ ଏସବୁ କେବଳ ତନ୍ତ୍ର ଉପନିଷଦ ଓ ଯୋଗଶାସ୍ତ୍ର ବର୍ଣ୍ଣିତ ବ୍ରହ୍ମ, ବ୍ରାହ୍ମଣ ସ୍ଥିତି ଓ ମୋକ୍ଷାବସ୍ଥାର ନାମାନ୍ତର ମାତ୍ର । ତେଣୁ ବ୍ରହ୍ମ ଓ ଶୂନ୍ୟ ମଧ୍ୟରେ ପାର୍ଥକ୍ୟ ବସ୍ତୁତଃ କିଛିନାହିଁ କହିଲେ ଚଳେ ।

ବୌଦ୍ଧଧର୍ମର ମହାଯାନ ଶାଖାରେ ଶୂନ୍ୟତତ୍ତ୍ୱର ଉପସ୍ଥାପନା ତାନ୍ତ୍ରିକ ଓ ଉପନିଷଦୀୟ ଚିନ୍ତାଧାରାର ନିକଟବର୍ତ୍ତୀ ହୋଇଥିବାରୁ ଏକ ସମୟରେ

ବୌଦ୍ଧଧର୍ମ ଓ ବ୍ରାହ୍ମଣ୍ୟ ଧର୍ମ ମଧ୍ୟରେ ଥିବା ଦୂରତ୍ୱର ହ୍ରାସ ଘଟିଥିଲା । ଡଃ କରୁଣାକର କର ଏହାକୁ ଲକ୍ଷ୍ୟ କରି ଲେଖିଛନ୍ତି—

"ବଜ୍ରଯାନର ନିର୍ବାଣରେ ବ୍ରହ୍ମଙ୍କର ସଚ୍ଚିଦାନନ୍ଦମୟତ୍ୱ ଅର୍ପିତ ହୋଇଅଛି । ବ୍ରହ୍ମଙ୍କପରି ନିର୍ବାଣ ମଧ୍ୟ ଅନିର୍ବଚନୀୟ ଜ୍ଞାନସ୍ୱରୂପ ଓ ଆନନ୍ଦମୟ । ତେଣୁ ନିର୍ଗୁଣ ବ୍ରହ୍ମ ଓ ଶୂନ୍ୟ ଏବଂ ନିର୍ବାଣ ଓ ମୁକ୍ତି ମଧ୍ୟରେ ଭେଦ କ୍ରମେ କ୍ରମେ ତିରୋହିତ ହୋଇଥିଲା । ସନାତନ ଧର୍ମର ଦେବଦେବୀ ମଧ୍ୟ ବଜ୍ରଯାନରେ ସ୍ଥାନ ଲାଭ କରିଥିଲେ । କ୍ରମେ କ୍ରମେ ସନାତନଧର୍ମ ଓ ବୌଦ୍ଧଧର୍ମ ଏକାକାର ହେବାକୁ ବସିଲା ।"

( ଅଷ୍ଟର୍ଶ ଚର୍ଯ୍ୟାଚୟ ପୃ ୧୯୭ )

ଖ୍ରୀଷ୍ଟୀୟ ୮ମ ୯ମ ଶତାବ୍ଦୀ ବେଳକୁ ଶଙ୍କରାଚାର୍ଯ୍ୟ ଭାରତ ବକ୍ଷରୁ ବୌଦ୍ଧଧର୍ମର ବିଲୋପ ଘଟାଇ ସନାତନ ଧର୍ମର ପୁନଃ ପ୍ରତିଷ୍ଠା ପାଇଁ ଚେଷ୍ଟା କରିଥିଲେ । ଶଙ୍କରାଚାର୍ଯ୍ୟ ଯେଉଁ ଅଦ୍ୱୈତ ବେଦାନ୍ତ ଦର୍ଶନ ପ୍ରଚାର କରିଥିଲେ ସେଥିରେ ବୌଦ୍ଧଧର୍ମର ଶୂନ୍ୟବାଦ ସହିତ ଅନେକ ସାମ୍ୟ ଥିବାରୁ ଶଙ୍କରଙ୍କୁ ପ୍ରଚ୍ଛନ୍ନ ବୌଦ୍ଧ କୁହାଯାଇଥାଏ । ପଦ୍ମପୁରାଣରେ ଉଲ୍ଲେଖ ଅଛି—

ମାୟାବାଦମସଚ୍ଛାସ୍ତ୍ରଂ ପ୍ରଚ୍ଛନ୍ନଂ ବୌଦ୍ଧମେବଚ
ମୟୈବ କଥିତଂ ଦେବୀ କଳୌ ବ୍ରାହ୍ମଣ ରୂପିଣ ।

ଶଙ୍କର ଜଗତ୍‌କୁ ମିଥ୍ୟା କହିବାକୁ ଯାଇ ଜଗତ୍‌କୁ ମାୟା ନାମରେ ଆଖ୍ୟାୟିତ କରିଛନ୍ତି । ଏହି ମାୟା ସହିତ ବୌଦ୍ଧଧର୍ମର ଜଗତ୍ ଶୂନ୍ୟ କଳ୍ପନାର ନୈକଟ୍ୟ ରହିଛି । ମାଧ୍ୟମିକ ସମ୍ପ୍ରଦାୟର ବୌଦ୍ଧ ବ୍ୟବହାରିକ ଓ ପାରମାର୍ଥିକ ଏହିପରି ଦୁଇଟି ସତ୍ୟକୁ ସ୍ୱୀକାର କରିଛନ୍ତି । ବ୍ୟବହାରିକ ସତ୍ୟ ଦୃଷ୍ଟିରୁ ଜଗତ୍ ସେମାନଙ୍କ ଦୃଷ୍ଟିରେ କାଳ୍ପନିକ ଓ ଅସତ୍ୟ ରୂପେ ପ୍ରତିପାଦିତ । ପାରମାର୍ଥିକ ଦୃଷ୍ଟିରୁ ଜଗତ୍ ହେଉଛି ନାନାତ୍ମକ ।

ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ ବେଦାନ୍ତରେ ଠିକ୍ ଏହିପରି ୨ଟି ସତ୍ୟର ଉପସ୍ଥାପନା କରାଯାଇଛି । ଶଙ୍କରଙ୍କ ବର୍ଣ୍ଣିତ ନିର୍ଗୁଣ, ନିର୍ବିଶେଷ ବ୍ରହ୍ମ ଓ ମାଧ୍ୟମିକ ବୌଦ୍ଧଙ୍କର ଶୂନ୍ୟ ମଧ୍ୟରେ ବସ୍ତୁତଃ କିଛି ପାର୍ଥକ୍ୟ ଥିଲାପରି ମନେହୁଏନାହିଁ । ଶଙ୍କରଙ୍କ ପୂର୍ବରୁ ଆଚାର୍ଯ୍ୟ ଗୌଡ଼ପାଦ ଠିକ୍ ଏହିଭଳି ଦାର୍ଶନିକ ମତବାଦ ପ୍ରଚାର କରିଥିଲେ । ଶଙ୍କର ତାହାର ପୁନରାବୃତ୍ତି କରିଛନ୍ତି ।

ଶଙ୍କରଙ୍କର ବୌଦ୍ଧଧର୍ମ ବହିଷ୍କାର ଉଦ୍ୟମ ଓ ଅଦ୍ୱୈତ ବେଦାନ୍ତ ଦର୍ଶନ ପ୍ରତିଷ୍ଠା ଫଳରେ ଅନେକ ବୌଦ୍ଧ ନିଜ ମନାନୁକୂଳ ଏହି ଧର୍ମକୁ ଗ୍ରହଣ କରି ନେଇଥିଲେ । ଶଙ୍କରଙ୍କର ପ୍ରଚେଷ୍ଟାରେ ସନାତନ ଧର୍ମର ପୁନଃ ପ୍ରତିଷ୍ଠା ହୋଇଥିଲା ଏବଂ ସନାତନ ଧର୍ମର ଶୈବଶାଖା ଓ ବୈଷ୍ଣବଶାଖା ଏହିପରି ଦୁଇଟି ଶାଖା ଭାରତ ବର୍ଷରେ ପୁନଶ୍ଚ ପଲ୍ଲବିତ ହୋଇଉଠିଥିଲା ଏବଂ ଏହା ତାନ୍ତ୍ରିକ ଚିନ୍ତାଧାରାରେ ପରିପୁଷ୍ଟ ହୋଇ ନୂତନ ଦାର୍ଶନିକ ରୂପ ନେଇଥିଲେ । ତାନ୍ତ୍ରିକ ଚିନ୍ତାଧାରାରେ ପରିପୁଷ୍ଟ ଶୈବ ଶାଖାରୁ ନାଥ ସମ୍ପ୍ରଦାୟର ଉଦ୍ଭବ ହୋଇଥିଲା । ଦ୍ୱାଦଶ ଶତାବ୍ଦୀ ବେଳକୁ ଏହି ନାଥ ସଂପ୍ରଦାୟର ଯୋଗସାଧନା ମୂଳକ ବା କାୟାସାଧନା ମୂଳକ ଧର୍ମ ଓଡ଼ିଶାରେ ପ୍ରଚଳିତ ଓ ପ୍ରସାରିତ ହେବାକୁ ଲାଗିଥିଲା । ଏହା ପୂର୍ବରୁ କୁହାଯାଇଛି । ନାଥ ସମ୍ପ୍ରଦାୟରେ ଶୂନ୍ୟବାଦ ମହତ୍ତ୍ୱପୂର୍ଣ୍ଣ ରୂପେ ଗୃହୀତ ହୋଇଥିଲା । ଯୋଗଶାସ୍ତ୍ର ଅନୁଯାୟୀ ବ୍ରହ୍ମରନ୍ଧ୍ର ହୋଇଛି ଶୂନ୍ୟସ୍ଥାନ । ଏଠାରେ ସାଧକ ନିଜେ ସ୍ୱରୂପ ଶୂନ୍ୟ ନିର୍ଗୁଣ ଭବନରେ ପ୍ରତିଷ୍ଠିତ ହୋଇ ନିର୍ଗୁଣ ନିରାକାର ବ୍ରହ୍ମଙ୍କୁ ସାକ୍ଷାତ କରିବା ସହିତ ଅନିର୍ବଚନୀୟ ମୋକ୍ଷ ଲାଭ କରିଥାଏ । ନାଥ ସମ୍ପ୍ରଦାୟର ଗ୍ରନ୍ଥ ଗୋରେଖ ବାଣୀରେ ଏହି ନିର୍ବାଣକୁ ସୁନିଫଳ ବା ଶୂନ୍ୟ-ଫଳ ଏବଂ ବ୍ରହ୍ମଙ୍କୁ ଶୂନ୍ୟରୂପେ ବର୍ଣ୍ଣନା କରାଯାଇଥିବାର ଦେଖାଯାଇଥାଏ ।

ଯଥା— ଉତରଖଣ୍ଡ ଜାଇଓ୍ୱା ସୁନିଫଲ ଖାଇଓ୍ୱା
ବ୍ରହ୍ମ ଅଗନି ପହିରଓ୍ୱା ଚୀରଂ
ନିର୍ଝର ଝରଣେ ଅମୃତପୀଓ୍ୱା
ୟୁଁ ମନ ହୁଓ୍ୱା ଧୀରଂ (ମୋ ବା ପୃ ୨୪)

ପୁନଶ୍ଚ ସୁନି ନ ମାଇ ସୁନି ନ ବାପ
ସୁନି ନିରଞ୍ଜନ ଆପେ ଆପ
ସୁନି କୈ ପରଚୈ ଭୟା ସଧୀର
ନିହଚଲ ଜୋଗୀ ଗହର ଗମ୍ଭୀର ।

ଓଡ଼ିଶାରେ ନାଥ ସମ୍ପ୍ରଦାୟର କାୟାସାଧନା ବା ଯୋଗସାଧନା ବିଶେଷ ଆଦୃତ ହୋଇ ଗୃହୀତ ହୋଇଥିଲା । ଡଃ ବଂଶୀଧର ମହାନ୍ତି "ଓଡ଼ିଶାର ନାଥ ସମ୍ପ୍ରଦାୟ ଓ ନାଥ ସାହିତ୍ୟ" ଗ୍ରନ୍ଥରେ ଏହା ପ୍ରମାଣିତ କରିଛନ୍ତି ଏବଂ ସେ ଏ ପ୍ରସଙ୍ଗରେ ଶିଶୁବେଦ, ଅମରକୋଷ ଗୀତା ଓ ଗୋରେଖ ସଂହିତା ପ୍ରଭୃତି ଓଡ଼ିଆ ନାଥ ସାହିତ୍ୟର ଆଲୋଚନା କରି ଏହାର ପ୍ରତିପାଦନ କରିଛନ୍ତି । ଉକ୍ତ ମହାନ୍ତିଙ୍କ ଦ୍ୱାରା ସଂଗୃହୀତ ଶିଶୁବେଦରେ ଶୂନ୍ୟ ସମାଧିର ଉଲ୍ଲେଖ ଦେଖିବାକୁ ମିଳିଥାଏ ।

ଯଥା— ମନକୁ ମନ ଦେଇ ଚହ୍ନିଲେ ପଲ୍ଲବନ ହୁଅଇଁ
ଯେହ୍ନାକୁ ଶୂନ୍ୟପ୍ରାଣ ସମାଦ ବୋଲି

"ଗୋରେଖ ବୋଧ" ଓ "କବିର ଓ ଗୋରେଖ ସମ୍ବାଦ" ନାମକ ଦୁଇଟି ରଚନାରେ ଥିବା ଶୂନ୍ୟ ବର୍ଣ୍ଣନାମୂଳକ କେତେଗୋଟି ପଦର ଉଦ୍ଧାର ଏଠାରେ କରାଯାଇପାରେ । ଏଗୁଡ଼ିକ ଓଡ଼ିଶାରୁ ସଂଗୃହୀତ ବୋଲି ଡକ୍ଟର ମହାନ୍ତି ଉଲ୍ଲେଖ କରିଛନ୍ତି । ଯଥା—

ହୃରଦା ନହୋନ୍ତି ତବ ସୁନ ଚହ୍ନନ୍ତା ମନ
ନାଭି ନହେ ନ୍ତି ତବ ନରାକାର ହୋନ୍ତା ପବନ

ଗୋରେଖ ବୋଧ

ଅବଧୂ କାହାଂଥା ସୁନା କାହାଂସେ ଆଂଇ
କାଣ୍ଠା ବୋଲିଣ କାହାଂ ସମାଇଂ
କାଇଆ ସୁନ୍ୟ କାହାର ବିଗୁର
କାହାଁ ମାଲି ଉଲକ ପାରଉପର ।

କବିର— ସ୍ୱାମୀ ସୁନ୍ୟ ଧରନ୍ତି, ସୁନ୍ୟ ଆକାଶ
ସୁନ୍ୟ ପଞ୍ଚତେ କାବାସ, କହନ୍ତବ ହାମ ସୁନ୍ୟ ସନେହ
ସୁନ୍ୟ ନହନ ସେହନ ସେହ୍ନ ପଏଦେଖି । ୬୬ ।

ଓଡ଼ିଆରେ ରଚିତ 'ଗୋରେଖ ସଂହିତା'ରେ ବ୍ରହ୍ମଙ୍କୁ ଶୂନ୍ୟପୁରୁଷ ରୂପେ ବର୍ଣ୍ଣନା କରାଯାଇ ଥିବାର ଦେଖାଯାଇଥାଏ । ଯଥା—

ବ୍ରହ୍ମରନ୍ଧ୍ର ଘଉବାଟେ ପବନର ଭେଟ
ଶୁଷୁମ୍ନା ଦ୍ୱାର କହି ଗୋଲହାଟ
ଅମନ ମହରେ ଯେ ପରମହଂସ ଥାଇ
ଅଜପା ଜପିଲେ ତାହାଙ୍କ ଭେଟ ପାଇ
ଶୂନ୍ୟରେ ରହିଛୁ ହଂସ ରୂପରେଖ ନାହିଁ
ନାସାଗ୍ରେ ଚାହିଁଲେ ସେଜିଘରେ ଦେଖାଦେଇ । ୧୫୪ ।

ଅଲେଖ ପୁରୁଷ ରେଖ ରୂପନାହିଁ
ଶୂନ୍ୟରେ ଆସଇ ପୁଣ ଶୂନ୍ୟରେ ସେ ଯାଇଁ ।

ମଲ୍ଲିକା ଗୋରେଙ୍କ ସମ୍ବାଦ ଛଳରେ ଲିଖିତ ଅଷ୍ଟାଙ୍ଗ ଯୋଗଧାରଣା ଗ୍ରନ୍ଥର ବର୍ଣ୍ଣନାନୁଯାୟୀ ମୂଳଶୂନ୍ୟରୁ ଓଁକାର ଓ ଓଁକାରରୁ ରାମନାମ ପ୍ରକାଶିତ ହେଲା । ଯଥା—

ଓଁକାର୍ ଉତ୍ପତ୍ତି କହ ଶୋଳାହୋନ୍ତି ମୂଳ ଶୂନ୍ୟପୁରୁ ବାହାରିଲା
ବର୍ଣ୍ଣ ଦେଖିକରି ସେହି ମୂଳେ ମଣି ରାମନାମ ପଦ ପ୍ରକାଶିଲା

ଓଡ଼ିଶାରେ ଯୋଗସାଧନା ପରମ୍ପରା ଅତି ପ୍ରାଚୀନ ହେତୁ ଯୋଗସାଧନା ସହିତ ସମ୍ପର୍କିତ ଶୂନ୍ୟବାଦ ମଧ୍ୟ ଓଡ଼ିଶାର ଏକ ପ୍ରାଚୀନ ଦାର୍ଶନିକ ଚିନ୍ତାଧାରାର ଅନ୍ତର୍ଭୁକ୍ତ ଥିଲା । ତେଣୁ ଓଡ଼ିଶାରେ ଏହି ଶୂନ୍ୟବାଦରୁ ମହାଯାନ ଓ ସହଜଯାନର ସୃଷ୍ଟି ସମ୍ଭବପର ହୋଇଥିଲା । ଡଃ କରୁଣାକର କରଙ୍କ ଭାଷାରେ—

"ପୂର୍ବରୁ କୁହାଯାଇଛି ମହାଯାନରେ ଶୂନ୍ୟବାଦ ପ୍ରଥମରୁ ଓଡ଼ିଶାର୍ ପ୍ରଚଳିତ ହୋଇଥିଲା । କାଳକ୍ରମରେ ସେହି ଶୂନ୍ୟବାଦ ଓଡ଼ିଶାରେ ବଜ୍ରଯାନ ଓ ସହଜଯାନରେ ପରିଣତ ହୋଇଥିଲା । ଅଦ୍ୟାବଧି ସେହି ଶୂନ୍ୟବାଦ ଓଡ଼ିଶାରୁ ଲୋପ ପାଇନାହିଁ । ସେହି ଶୂନ୍ୟବାଦ ରୂପାନ୍ତର ଧରି ଶୂନ୍ୟ, ନିର୍ଗୁଣ, ବ୍ରହ୍ମ, ଅଲେଖ, ନିରଞ୍ଜନ, ନିରାକାର, ଅଣାକାର ପ୍ରଭୃତି ନାମରେ ଆବହମାନ କାଳରୁ ଓଡ଼ିଶାରେ ଭିନ୍ନ ଭିନ୍ନ ସଂପ୍ରଦାୟରେ ଚଳି ଆସୁଅଛି । ୧୪ଶ ଶତାବ୍ଦୀରୁ ସାରଳା ଦାସଙ୍କଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ମଧ୍ୟ ସେହି ଶୂନ୍ୟବାଦର ପ୍ରଭାବ ଦେଖିବାକୁ ମିଳେ ।"

(ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ ପୃ ୨୧୭)

ତେଣୁ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଦେଖିବାକୁ ମିଳୁଥିବା ଶୂନ୍ୟବାଦ, ବୌଦ୍ଧଧର୍ମର ଶୂନ୍ୟବାଦ ଯେ ନୁହେଁ ଏହା ଏଥିରୁ ସ୍ପଷ୍ଟ ପ୍ରତିପାଦିତ । ଏହି ଶୂନ୍ୟବାଦର ମୂଳ ଉତ୍ସ ହେଉଛି ଉପନିଷଦୀୟ ବ୍ରହ୍ମତତ୍ତ୍ୱ, ସୃଷ୍ଟିତତ୍ତ୍ୱ ଓ ଯୋଗଦର୍ଶନର ସହସ୍ରଦଳ ଚକ୍ରସ୍ଥିତ ଶୂନ୍ୟସ୍ଥାନ ଓ ସାଧକର ଶୂନ୍ୟାନୁଭୂତି । ଏଥିରେ ହିନ୍ଦୁତନ୍ତ୍ରର ଚିନ୍ତାଧାରାର ଅନେକ ସମ୍ମିଶ୍ରଣ ମଧ୍ୟ ରହିଛି । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ବର୍ଣ୍ଣିତ ଶୂନ୍ୟତତ୍ତ୍ୱର ବିଭିନ୍ନ ଦିଗ ପ୍ରତି ଦୃଷ୍ଟିପାତ କଲେ ଏହି ସତ୍ୟ ଅଧିକ ପ୍ରାଂଜଳ ହୋଇ ଉଠିଥାଏ ।

## ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ବର୍ଣ୍ଣିତ ଶୂନ୍ୟର ବିଭିନ୍ନ ଦିଗ—

ଶୂନ୍ୟ—ବ୍ରହ୍ମଙ୍କର ସ୍ୱରୂପ—

ବ୍ରହ୍ମଙ୍କର ନିର୍ଗୁଣ ରୂପକୁ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ଶୂନ୍ୟ, ନିରଂଜନ, ଅଲେଖ, ନିରାକାର ଆଦି ଆଖ୍ୟା ଦିଆଯାଇଛି ।

ବଳରାମ ଦାସ ବିରାଟ ଗୀତାରେ ଲେଖିଛଂତି :-

ଶୂନ୍ୟ ପୁରୁଷ ଶୂନ୍ୟ ଦେହୀ । ଶୂନ୍ୟରେ ବ୍ରହ୍ମ ସିନା ଥାଇ ।

ପୁନଶ୍ଚ ବ୍ରହ୍ମାଣ୍ଡ ଭୂଗୋଳରେ ସେ ଲେଖିଛନ୍ତି—

ଯେ କାଳେ ଶୂନ୍ୟ ମୋର ରୂପ । ଏମନ୍ତେ ଗଲା କୋଟି କଳ୍ପ
ବ୍ରହ୍ମାଣ୍ଡ ମୋର ଗର୍ଭେ ହୋଇ । ରହିଲି ବ୍ରହ୍ମରୂପ ହୋଇ ।

ଅନୁରୂପ ଭାବରେ ଯଶୋବନ୍ତ ଦାସ ପ୍ରେମଭକ୍ତି ବ୍ରହ୍ମ ଗୀତାରେ ଲେଖିଛନ୍ତି—

ଯେ ଶୂନ୍ୟ ପରେ ଜ୍ୟୋତି ଜାଣ । ଗଗନ ଯେସନ୍ତେ ସର୍ବଶୂନ୍ୟ
ସେ ଶୂନ୍ୟ ପରେ ଜ୍ୟୋତି ଜାଣ । ତାପରେ ମହାଶୂନ୍ୟ ପୁଣ
ସେ ଶୂନ୍ୟ ଉପରେ ଚେତନା । ଚେତନା ମଧ୍ୟେ ମୋର ଠଣା
ଅଣ ଅକ୍ଷରେ ନିରାକାରେ । ବୁଦବୁଦ ପ୍ରାୟେ ମୁଁ ଶୂନ୍ୟରେ
ହେତୁ ଆସନ ଦୃଢ଼େ ଧରି । ମୁଁ ଥିଲି ଏକାନ୍ତେ ସେ ପୁରି । ୯୫ ।

ଜଗନ୍ନାଥ ଦାସ ମଧ୍ୟ ତୁଳାଭିଣାରେ ଲେଖିଛନ୍ତି—

ଅବ୍ୟକ୍ତ ଶୂନ୍ୟ ବ୍ରହ୍ମଜ୍ୟୋତି । ତା ତହୁଁ ବିନ୍ଦୁ ଉତପତି ।

ଅଚ୍ୟୁତାନନ୍ଦ ବ୍ରହ୍ମଗୀତାରେ ବ୍ରହ୍ମଙ୍କୁ ଆକାର ବିକାରହୀନ ନିର୍ଗୁଣ ପରମ ଈଶ୍ୱର ରୂପେ ବର୍ଣ୍ଣନା କରିଛନ୍ତି ।

ଶିଶୁ ଅନନ୍ତ ହେତୁ ଉଦୟ ଭାଗବତରେ ଲେଖିଛନ୍ତି—

ସ୍ୱେ ଶୂନ୍ୟ ବ୍ରହ୍ମର ବପୁର
ତୋର ଦେହରେ ହେତୁକର । (୩ୟ ଅଧ୍ୟାୟ)

ଅଚ୍ୟୁତାନନ୍ଦ ଦାସଙ୍କ ରଚନାରେ ସର୍ବତ୍ର ଶୂନ୍ୟବ୍ରହ୍ମଙ୍କର ବର୍ଣ୍ଣନା ପରିଦୃଷ୍ଟ ହୋଇଥାଏ । ତାଙ୍କଦ୍ୱାରା ରଚିତ 'ଶୂନ୍ୟସଂହିତା'ରେ ୭ମ ଅଧ୍ୟାୟରେ ଶୂନ୍ୟ-ପୁରୁଷ ରୂପୀ ବ୍ରହ୍ମଙ୍କର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳିଥାଏ ।

ଯଥା—   'ଶୂନ୍ୟ ପୁରୁଷର ଏତେକ ତେଜ
ଶୂନ୍ୟ ହୋଇ ଭୋଗ୍ୟ କରଇ ରାଜ୍ୟ
ଶୂନ୍ୟ ପୁରୁଷ ଅଲଗାରେ ରହି
ଶୂନ୍ୟ ପରେ ଲୀଳା କରୁଛି ସେହି ।'

ସେ ମଧ୍ୟ ଶୂନ୍ୟ ସଂହିତାରେ ଅନ୍ୟତ୍ର ଲେଖିଛନ୍ତି—

'ଅନାମ ଯେ ବ୍ରହ୍ମ ମହାଶୂନ୍ୟର ଅଣାକାର
ନିରାକାର ସ୍ୱଚ୍ଛ ସର୍ବ ଉପରେ ବିହାର ।' (ପୃଷ୍ଠା ୫୦)

ଅଚ୍ୟୁତାନନ୍ଦଙ୍କ ଶିଷ୍ୟ ପରମ୍ପରାରେ ଆବିର୍ଭୂତ ଭାବସ୍ୱା ଦାସ ଶୂନ୍ୟକୁ ଆଦିବ୍ରହ୍ମ ରୂପେ ବର୍ଣ୍ଣନା କରିଛନ୍ତି ।

ଅନାଦି ନାଥ ତାଙ୍କର ନାମଟି ଅଟଇ
ତାଙ୍କୁ ଚିହ୍ନିଲେ ଜନମ ପାଶୋଶିବୁ ତୁହି । ୧୯ ।
ଅଦୃଶ୍ୟ ଅଶ୍ରୁତ ଚିଆଁ ଚୈତନ୍ୟରୁ ଭିନ୍ନ
ମନ ପବନରୁ ବାହାର ଜାଣ ହୋ ଅର୍ଜୁନ । ୨୦ ।
ପାଦପାଣି ନାହିଁ ତାଙ୍କ ନାହିଁ ହୃଦସ୍ଥଳ
ନାହିଁ ମୁଖ ପୃଷ୍ଠଗ୍ରୀବା ନାହିଁ କଳେବର । ୨୧ ।
ନିର୍ବିକାର ନିରାମୟ ଅକ୍ଷୟ ଅବ୍ୟୟ
ଅଚିନ୍ତ୍ୟ ପୁରୁଷ ଶୂନ୍ୟ ପରେ ଶୂନ୍ୟମୟ । ୨୨ ।
ଶୂନ୍ୟଦେହୀ ବୋଲି ଜ୍ଞାନୀ ଜାଣନ୍ତି ନିକର
ଶୂନ୍ୟରେ ବିଶ୍ରାମ ତାଙ୍କ ଶୂନ୍ୟ କଳେବର । ୨୩ ।

(ଅଷ୍ଟପରିଚ୍ଛେଦ—ଜ୍ଞାନସାଗର)

ଭାବସ୍ୱା ଦାସଙ୍କ ଦ୍ୱାରା ଉପସ୍ଥାପିତ ଏହି ଶୂନ୍ୟଦେହୀ ଅଚିନ୍ତ୍ୟ-ପୁରୁଷ ବୌଦ୍ଧ ଧର୍ମର ଅନିର୍ବଚନୀୟ ଶୂନ୍ୟ ନୁହନ୍ତି, ବରଂ ଉପନିଷଦ ବର୍ଣ୍ଣିତ ନିର୍ବିଶେଷ ବ୍ରହ୍ମ । ଖାଲି ସେତିକି ନୁହେଁ ଚନ୍ଦ୍ରମଣି ଦାସ 'ସୁଧାସର ଗୀତା'ରେ ବ୍ରହ୍ମଙ୍କୁ ଶୂନ୍ୟବାସୀ ଓ ଶୂନ୍ୟ ରୂପ ରୂପେ ବର୍ଣ୍ଣନା କରି ଅଛନ୍ତି । ଏହା ମଧ୍ୟ ଉପନିଷଦୀୟ ଚିନ୍ତାଧାରାରେ ପ୍ରଭାବିତ । ଯଥା—

ଠୂଳକୁ ଚିହ୍ନିଲେ ନିଠୂଳ ନୁହଁଇ ଠୂଳେ ହୋଇଥାଇ ଠୂଳ
ଠୂଳଶୂନ୍ୟ ଯୋଡି ବ୍ରହ୍ମାଣ୍ଡ କରତା ଠୂଳଟି ଅଟଇ ମୂଳ ।

ରୂପବର୍ଣ୍ଣ କ୍ୟାଡ ଶବଦ ସହିତେ ଠୂଳରୁ ହୁଅନ୍ତି ଜାତ
• ଅନ୍ତଃକାଳେ ଯାଇ ଠୂଳରେ ମିଶନ୍ତି ଠୂଳଟି ଅଟଇ ତତ୍ତ୍ୱ ।
ଏଣୁକଟ ମନ ବୁଝାଇ କହୁଛି ଠୂଳ ଶୂନ୍ୟ ବ୍ରହ୍ମ ଥାଇ
ସେହି ଠୂଳଶୂନ୍ୟ ବ୍ରହ୍ମାଣ୍ଡ କରଇ ପାଳଇ ପିଣ୍ଡରେ ସେହି ।

× × ×

• ରୂପରସ ଗନ୍ଧ ଶବଦ ସ୍ପରଶ ଏମାନ ସମସ୍ତ ଶୂନ୍ୟ
ଶୂନ୍ୟରୂପୀ ଘର ଶୂନ୍ୟରେ ବିହାର ଶୂନ୍ୟ ହୁଏ ଯହିଁ ଲୀନ ।

(ଏକାଦଶ ବୋଲି, ପୃ-୮୩)

ପୁନଶ୍ଚ ସେ ଅନ୍ୟତ୍ର ବ୍ରହ୍ମଙ୍କ ପିତା, ମାତା, ଘର, ଦ୍ୱାର ଓ ବିହାରସ୍ଥଳକୁ ଶୂନ୍ୟ ବୋଲି ନିର୍ଦ୍ଦେଶ କରି ଲେଖିଛନ୍ତି ।

'ଶୂନ୍ୟରୁ ଆସିଣ ଶୂନ୍ୟକୁ ସେ ଯାଇ ଶୂନ୍ୟ ତାର ପିତାମାତା
ଶୂନ୍ୟ ଘରଦ୍ୱାର ଶୂନ୍ୟରେ ବିହାର ଚତୁର୍ବର୍ଗ ଫଳଦାତା ।
କୃଷ୍ଣ ଶୁକଲ ଶୋଣିତ ଶ୍ୱେତ ପୀତ ନାହିଁ ବର୍ଣ୍ଣ ଚିହ୍ନ ତାର
ରୂପବର୍ଣ୍ଣ ଥିଲେ କେ ଅବା ଗୁଣନ୍ତା ଏମନ୍ତ ମହିମା ଯାର ।

(ଷଷ୍ଠବୋଲି, ପୃ ୪୫)

ଚୈତନ୍ୟ ଦାସ ବିଷ୍ଣୁଗର୍ଭ ପୁରାଣରେ ଶୂନ୍ୟବ୍ରହ୍ମଙ୍କର ବର୍ଣ୍ଣନା କରି ଲେଖିଛନ୍ତି —

ଅରୂପ ଅଣାକାର ସେ ନାହିଁ ତା ଚିହ୍ନବର୍ଣ୍ଣ
ଶୂନ୍ୟ ସଂଗତେ ମିଶି ସେ ଯେ ହୁଅଇ ମହାଶୂନ୍ୟ

× × ×

ଅଗୋଚର ମହିମା ସେ ନସରେ ଲେଖନ୍ତେ
କେ ଅବା ଶେଷ କରି କହିବ ଆଦ୍ୟ ଅଂତେ ।

ବି. ଗ. ପୁ. (୩ୟ ଅଧ୍ୟାୟ)

ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତରେ ଚୈତନ୍ୟରୂପୀ ବ୍ରହ୍ମଙ୍କୁ ନିର୍ଗୁଣ ଠୂଳଶୂନ୍ୟ ଓ ଆନନ୍ଦ ରୂପ କୁହାଯାଇଛି । ଯଥା—

ନିରଂଜନ ଯେ ନିରାକାର
ନିର୍ଗୁଣ ବ୍ରହ୍ମ ଅବତାର
ଆନନ୍ଦ ରୂପ ଶୂନ୍ୟ ମୂଳ
ରାଧା ଆସ୍ୱାଦ ଭାବ ମୂଳ । (୫୧/୧୩୧-୧୩୨)

ଚୈତନ୍ୟ ଦାସ ବିଷ୍ଣୁଗର୍ଭ ପୁରାଣରେ ବ୍ରହ୍ମଙ୍କର ବର୍ଣ୍ଣନା କରି ଲେଖିଛନ୍ତି—

"ଅରୂପ ଅଣାକାର ନାହିଁ ତା ବର୍ଣ୍ଣଚିହ୍ନ
ଶୂନ୍ୟ ସଙ୍ଗତେ ମିଶି ସେ ଯେ ହୁଅଇ ଶୂନ୍ୟ ।

( ବି. ଗ. ପୁ. ୮ମ ଅଧ୍ୟାୟ)

## ଶୂନ୍ୟ – ଜଗନ୍ନାଥ :

ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତି ପରମ୍ପରାରେ ପରମାରାଧ୍ୟ ଶ୍ରୀ ଜଗନ୍ନାଥ ପରଂ-ବ୍ରହ୍ମ ରୂପେ ଗୃହୀତ । ସେ ଅପାଣି, ଅପାଦ, ଅକର୍ଣ୍ଣ ଅଟନ୍ତି । ତେଣୁ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର ବହୁ ସ୍ଥଳରେ ତାଙ୍କୁ ଶୂନ୍ୟବ୍ରହ୍ମ ରୂପେ ବର୍ଣ୍ଣନା କରାଯାଇଅଛି ।

ବଳରାମ, ଜଗନ୍ନାଥ, ଯଶୋବଂତ, ଅଚ୍ୟୁତ ଓ ଅନନ୍ତ ଆଦି ନିର୍ଗୁଣ ଉପାସକ ପଞ୍ଚସଖା ଶ୍ରୀ ଜଗନ୍ନାଥଙ୍କୁ ସେମାନଙ୍କର ଇଷ୍ଟଦେବ ରୂପେ ଗ୍ରହଣ କରି ନେଇଥିଲେ । ତେଣୁ ଶ୍ରୀ ଜଗନ୍ନାଥ ଥିଲେ ସେମାନଙ୍କ ଦୃଷ୍ଟିରେ ଶୂନ୍ୟ ପୁରୁଷ ବା ବ୍ରହ୍ମ । ସେମାନଙ୍କ ଗ୍ରନ୍ଥମାନଙ୍କରେ ପ୍ରତି ଛନ୍ଦରେ ଶ୍ରୀଜଗନ୍ନାଥ ଧାମ ଓ ଶ୍ରୀଜଗନ୍ନାଥଙ୍କର ମହିମା କୀର୍ତ୍ତିନ କରାଯାଇଅଛି ।

ଅଚ୍ୟୁତାନନ୍ଦ ଶୂନ୍ୟ ସଂହିତାରେ ଲେଖିଛନ୍ତି—

"ବ୍ରହ୍ମ ଏକାକ୍ଷର ସେ ଯେ ଆପେ ନିରଞ୍ଜନ
ଦେହରୂପୀ ଜଗନ୍ନାଥ ଆପେ ଦାରୁବ୍ରହ୍ମ
ଭକ୍ତଙ୍କ ଭାବରେ ଅପେ ଦାରୁବ୍ରହ୍ମ ରୂପ
ଅଲେଖ ଭବନୁ ଆସି ଦୃଶ୍ୟ ଜ୍ୟୋତିରୂପ ।

[ଶୂ. ସଂ ୨୩ ପୃ]

ମୂଳ ଶୂନ୍ୟ ରାସ ଆରମ୍ଭରେ ଅଚ୍ୟୁତାନନ୍ଦ ଶ୍ରୀଜଗନ୍ନାଥଙ୍କୁ ଶୂନ୍ୟ ମଧ୍ୟସ୍ଥିତ ନିରାକାର ରୂପେ ସମ୍ବୋଧନ କରି ଲେଖିଛନ୍ତି—

ଓଁ ଶୂନ୍ୟ ଶୂନ୍ୟ ମହାଶୂନ୍ୟ
ଶୂନ୍ୟ ମଧ୍ୟେ ନିରାକାର

ଓଁ ନିରାକାର ଅଣାକାର

ଜଗନ୍ନାଥ ନମୋ ନମଃ ।

(ମୂଳଶୂନ୍ୟ ଗ୍ରନ୍ଥ ୫୮ ପୃ—ଅଚ୍ୟୁତାନନ୍ଦ ରଚନାବଳୀ ଗ୍ରନ୍ଥାସ ଖଣ୍ଡ)

ପ୍ରେମଭକ୍ତି ବ୍ରହ୍ମ ଗୀତାରେ ଯଶୋବନ୍ତ ପାଦପାଣି ଶିରନାସାକର୍ଣ୍ଣହୀନ ସୁଦର୍ଶନଙ୍କୁ ମହାଶୂନ୍ୟ ଜ୍ୟୋତି ରୂପେ ବର୍ଣ୍ଣନା କରିଛନ୍ତି ।

"ଦାରୁଣେ ସୁଦର୍ଶନ ଯେତି । ସେ ମହାଶୂନ୍ୟ ବ୍ରହ୍ମ ଜ୍ୟୋତି
ନାହିଁ ତାହାର ପାଦପାଣି । ଶିର ନାସିକା କର୍ଣ୍ଣ ପୁଣି ।

(ପ୍ରେ. ଭ ବ୍ର. ଗୀ. ପୃ ୨)

ବଳରାମ ଦାସ ବେଦାନ୍ତ ସାର ଗୁପ୍ତ ଗୀତାରେ ନୀଳାଚଳକୁ ନିତ୍ୟସ୍ଥଳ ଓ ଶ୍ରୀଜଗନ୍ନାଥଙ୍କୁ ନିରାକାର ରୂପେ ବର୍ଣ୍ଣନା କରିଛନ୍ତି—

'ସେହି ପ୍ରକାରେ ନିରାକାର
ଶ୍ରୀ ନୀଳଗିରିରେ ବିହାର । ୨୭ । (ଅଷ୍ଟ ଅଧ୍ୟାୟ)

ଶିବଦାସ ରାଧା ରସାମୃତ ଗୀତାରେ ମଧ୍ୟ ଏହି ପରମ୍ପରାକୁ ଅନୁସରଣ କରି ଲେଖିଛନ୍ତି—

ପରଂବ୍ରହ୍ମ ଆତ୍ମା ବନ୍ଧୁରୂପ ଧରେ ତ...
ତେଣୁ ବନ୍ଧୁ ବ୍ରହ୍ମରୂପ ଜଗନ୍ନାଥ କହି
ଅବ୍ୟକ୍ତ ଅରୂପ ଅନାମ ଯାହା କହି
ଦାରୁବ୍ରହ୍ମ ହୋଇଛନ୍ତି ବନ୍ଧୁ ରୂପ ହୋଇ ।

(ପ୍ରେ. ଭ. ବ୍ର. ଗୀ ୫୭ ପୃ)

ଈଶ୍ୱର ଦାସ ଚୈତନ୍ୟ ଭାଗବତ ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କୁ ଶୂନ୍ୟ ସ୍ୱରୂପ ଭଗବାନ ରୂପେ ଆଖ୍ୟାୟିତ କରି ଲେଖିଛନ୍ତି –

ବନ୍ଦଇ ନୀଳାଦ୍ରି ଗୋସାଇଁ
ଦାରୁ ସ୍ୱରୂପେ ଭବଗ୍ରାହୀ । ୧ ।

X X X

ଶୂନ୍ୟ ସ୍ୱରୂପ ଭଗବାନ
ଏ ରୂପ ନାହିଁ ତ୍ରିଭୁବନ

ପ୍ରେମକୁ ରୂପ ଦୃଶ୍ୟ ହୋଇ
ନିର୍ଗୁଣେ ଶୂନ୍ୟ ପ୍ରକାଶଇ । ୭

( ୭୪ ଅଧ୍ୟାୟ )

ପୁନଶ୍ଚ ସେ ଏହି ଗ୍ରନ୍ଥରେ ଲେଖିଛନ୍ତି—

ଶ୍ରୀ ଜଗନ୍ନାଥ ଆଦିମୂଳ । ଶ୍ରୀଜଗନ୍ନାଥ ଶୂନ୍ୟସ୍ଥଳ
ଶ୍ରୀ ଜଗନ୍ନାଥ ରୂପ ଗୋପ୍ୟ । ଯେତେକ ଅବତାର ରୂପ ।

( ୭୫ ଅଧ୍ୟାୟ ୪୩୫ ପୃ )

ଦିବାକର ଦାସ ଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ଶ୍ରୀ ଜଗନ୍ନାଥଙ୍କୁ ଶୂନ୍ୟ ବାଚକ ନିର୍ଗୁଣ, ନିତ୍ୟ ନିସ୍ପୃହ ପରମ ଈଶ୍ୱର ରୂପେ ବର୍ଣ୍ଣନା କରିଛନ୍ତି—

ପରମ ଆତ୍ମା ପରଂବ୍ରହ୍ମ । ନିର୍ଗୁଣ ନିତ୍ୟ ଯେ ପରମ
ନିସ୍ପୃହ ପରମ ଈଶ୍ୱର । ନୀଳାଚଳର ଅଧୀଶ୍ୱର ।

( ୭ମ ଅଧ୍ୟାୟ )

## ଶୂନ୍ୟ—ରାଧା ଓ କୃଷ୍ଣ :

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଶ୍ରୀକୃଷ୍ଣ ଓ ଶ୍ରୀ ରାଧାଙ୍କୁ ପୃଥକ୍ ଭାବରେ ଶୂନ୍ୟ ସ୍ୱରୂପ ଏବଂ ସେମାନଙ୍କର ଯୁଗଳ ରୂପକୁ ଶୂନ୍ୟଲୀଳାରୂପ ବର୍ଣ୍ଣନା କରିବାର ଦେଖାଯାଇଥାଏ । ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଗ୍ରନ୍ଥରେ ଏଭଳି ବର୍ଣ୍ଣନା ବହୁଳ ପରିଦୃଷ୍ଟ ହୋଇଥାଏ । ଶୂନ୍ୟସଂହିତା ଗ୍ରନ୍ଥରେ ସେ ଶ୍ରୀକୃଷ୍ଣଙ୍କୁ ଶୂନ୍ୟବର ନିରାକାର ବୋଲି ବର୍ଣ୍ଣନା କରି ମର୍ତ୍ତ୍ୟକୃଷ୍ଣଙ୍କର ମୂଳରୂପ ବୋଲି ଉଲ୍ଲେଖ କରିଛନ୍ତି ।

ଯଥା—

"ଶୂନ୍ୟବର ବୋଲି ପିତା ବୋଲନ୍ତି କୃଷ୍ଣଙ୍କୁ
ବାଣୀ କହି ଦେଲୁ ଧ୍ୟାୟ ତୁ ନିରାକାରଙ୍କୁ

( ଶୂ. ସଂ, ୯ମ ଅଧ୍ୟାୟ )

ଜ୍ଞାନସାଗର ଗ୍ରନ୍ଥରେ ଅଚ୍ୟୁତଙ୍କର ଶିଷ୍ୟ ରାମଚନ୍ଦ୍ର ଦାସ ମଧ୍ୟ ଅନୁରୂପ ଭାବରେ ଶ୍ରୀକୃଷ୍ଣଙ୍କ ମୁଖରେ କୁହାଇଛନ୍ତି—

"ଅରୂପାନନ୍ଦ ମୁଁ ଅଟଇ । ବର୍ଣ୍ଣନେ ରୂପ ରେଖ ନାହିଁ ।
ବେଦ ବାଦ୍ୟାଦ ମୋହଠାରୁ । ପ୍ରଚ୍ଚର ହୋଇଲା ପୂର୍ବରୁ ।
ଶୂନ୍ୟ ରୂପରେ ମୋ ବିହାର । ଶୂନ୍ୟରେ ଆସନ ମୋହର ।
ଶୂନ୍ୟ ସଂଗତେ ଥାଏ ମିଶି । ଶୂନ୍ୟ ସ୍ୱରୂପ ପରକାଶି ।
(ଣ୍ଣ. ସା. ପ୍ରଥମ ପରିଚ୍ଛେଦ—୩ ପୃ)

ତତ୍ତ୍ୱବୋଧିନୀ ଗ୍ରନ୍ଥରେ ଅଚ୍ୟୁତାନନ୍ଦ ରାଧା ଓ କୃଷ୍ଣଙ୍କୁ ଶୂନ୍ୟରୂପେ ବର୍ଣ୍ଣନାକରି ଲେଖିଛନ୍ତି—

"ମହାଶୂନ୍ୟରୁ ବାହାରି ଅଇଲା । ସ୍ତ୍ରୀ ପୁରୁଷ ବେନଭାଗ ଭଲା ।
ତିନି ଭଣିଆ ବେଣୀ ତହିଁ ହେଲା । ଶୂନ୍ୟ କଳସ ସେଠାରେ ବସିଲା ।
( ପ୍ରଥମ ଅଧ୍ୟାୟ ୨ ପୃ )

ଏହି ଗ୍ରନ୍ଥର ମଂଗଳାଚରଣରେ ସେ ମଧ୍ୟ କୃଷ୍ଣଙ୍କୁ ଶୂନ୍ୟ ପୁରୁଷ ରୂପେ ଉଲ୍ଲେଖ କରିଛନ୍ତି—

ଯଥା :—

ଜୟ ଶୂନ୍ୟବ୍ରହ୍ମ ଜଗତ ଗୋସାଇଁ
ଅଶେଷ ବ୍ରହ୍ମାଣ୍ଡ ଅଛୁଁ ଭିଆଇ ।
( ୧ମ ଅଧ୍ୟାୟ )

ଅଚ୍ୟୁତାନନ୍ଦଙ୍କ ନାମରେ ରଚିତ 'ଛୟାଳିଶ ପଟଳ' ଗ୍ରନ୍ଥରେ ରାଧା-କୃଷ୍ଣଙ୍କର ଲୀଳା ଶୂନ୍ୟ ଲୀଳାରୂପେ ବର୍ଣ୍ଣିତ ହୋଇଛି ।

"ମହାଶୂନ୍ୟ ମୂରତି ସେ ପ୍ରଭୁ ନିରାକାର
ଶୂନ୍ୟରୂପେ ଥାଇ ଲୀଳା ରାଧିକା ସଂଗର
( ପଞ୍ଚବିଂଶ ପଟଳ )

ପୁଣି— ଠୂଳ ଶୂନ୍ୟ ଉପର ସେ ନିତ୍ୟ ଲୀଳାସ୍ଥାନ
ବିହାର କରନ୍ତି ରାଧା ଯଶୋଦା ନନ୍ଦନ ।
( ସପ୍ତବିଂଶ ପଟଳ )

ଠୂଳଶୂନ୍ୟ ସାର ଗ୍ରନ୍ଥରେ ଅଚ୍ୟୁତାନନ୍ଦ, ଷଡଚକ୍ର ଉପରେ ଥିବା ଶୂନ୍ୟପୁର ବା ଶିଶୁବେଦର ସ୍ଥାନକୁ କୃଷ୍ଣଙ୍କର ବିହାରସ୍ଥଳ ବୋଲି ବର୍ଣ୍ଣନା କରିଛନ୍ତି ।

ସେ ଲେଖିଛନ୍ତି—

ଛଡ଼ ଚକ୍ର ଉପରେ
ଜ୍ୟୋତି ଜଳୁଅଛି ଶୂନ୍ୟ ମନ୍ଦିରେ । ୨
ଷୋଳ ବଜ୍ରଳ ପତ୍ରଏ ଦେଖ । ନବଘନରୂପ ତହିଁ ନିରେଖ
ଦୃଷ୍ଟି ଗୋ ଟାଳ ବସ ନିରତେ
ଠୂଳଶୂନ୍ୟ ରୂପ ଦେଖିବୁ ନେତ୍ରେ । ୩
( ଅଚ୍ୟୁତାନନ୍ଦ ଗ୍ରନ୍ଥାବଳୀ, ଗୁହ୍ୟାସଙ୍ଖ୍ୟା—୨୮ ପୃ )

ଷଡ଼ଚକ୍ର ଉପରେ ଥିବା ଶୂନ୍ୟ ପୁରରେ ଚତୁଃଷଷ୍ଠୀଦଳ ପଦ୍ମ ଅବସ୍ଥିତ । ଏହାର ମଧ୍ୟଭାଗରେ ଥିବା ଦ୍ୱିଦଳରେ ରାଧା ଓ କୃଷ୍ଣ ବିରାଜିତ ।

ପଦ୍ମର ଏହି ବେଣ୍ଟଦଳକୁ ବ୍ରହ୍ମାବିଷ୍ଣୁ ଜାଣନ୍ତି ନାହିଁ । ଏଠାରେ ଦେବାନତି ନାହିଁ । ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ଜ୍ଞାନ, ଧ୍ୟାନ ମଧ୍ୟ ନାହିଁ । ଏଠାରେ

ରାଧା କୃଷ୍ଣ ଦୁଇ ଏକାନ୍ତ ହୋଇଁ
ବେଣ୍ଟ ଦଳରେ ନିଷ୍ଠିନ୍ତେଣ ରହି ।
(ଭକ୍ତୌକ, ୧୬୦ ପୃ)

କାହ୍ନୁ ଖୁଣ୍ଟିଆଙ୍କ 'ମହାଭାବ ପ୍ରକାଶ' ଗ୍ରନ୍ଥରେ ଶ୍ରୀ ରାଧାଙ୍କୁ ଅଶରୀରୀ ବା ଶୂନ୍ୟରୂପ କୁହାଯାଇଛି ।
ଯଥା :—

ଅଶରୀର ଶରୀରରେ ନିତ୍ୟେ ସେ ରମନ୍ତି
ବ୍ରଜ କିଶୋରଙ୍କ ସଙ୍ଗେ କ୍ରୀଡ଼ା ସେ କରନ୍ତି
( ମହାଭାବ ପ୍ରକାଶ ପୃ ୯, ଦ୍ୱିତୀୟ ବୃନ୍ତ )

ଈଶ୍ୱର ଦାସଙ୍କ ଶ୍ରୀ ଚୈତନ୍ୟ ଭାଗବତ ଗ୍ରନ୍ଥରେ ଶ୍ରୀ ରାଧାଙ୍କୁ ସୃଷ୍ଟିର ମୂଳ ଓ ଶୂନ୍ୟରୂପା ରୂପେ ବର୍ଣ୍ଣନା କରାଯାଇଛି । ଏହାର ପଞ୍ଚାଶତ୍ ଅଧ୍ୟାୟରେ ସେ ଲେଖିଛନ୍ତି –

ଶ୍ରୀ ରାଧା ଠୂଳ ମହାଶୂନ୍ୟ
ଶ୍ରୀ ରାଧା ରୂପେ ସର୍ବେ ଲୀନ । ୨୯୫
(ପୃଷ୍ଠା-୨୯୫)

ଅଚ୍ୟୁତାନନ୍ଦଙ୍କ ଶିଷ୍ୟ ଈଶ୍ୱର ଦାସ ମନ୍ମଥ ଚନ୍ଦ୍ରିକା ଗ୍ରନ୍ଥରେ ଲେଖିଛନ୍ତି—
ରାଧା ଓ କୃଷ୍ଣ ଉଭୟ ଶୂନ୍ୟରୂପ—

ବେଦରୁଟି ଶୂନ୍ୟରାଧା ଜନମ ହୋଇଲା
ତାହାର ମନରୁ ମୋର ସ୍ୱରୂପ ହୋଇଲା
ଅନାଦଟି ମୂର୍ତ୍ତି ପରମ ଶୂନ୍ୟ ଜାଣ
ପରମ ଶୂନ୍ୟରୁ ମୂର୍ତ୍ତି ନିରାକାର ଜନ୍ମ
ସହସ୍ର କିରଣ ଜ୍ୟୋତି ସେ ରାଧା କିରଣ
ନଚଷ୍ଟି ନ ତ ସେ ପୁରୁଷ ବୋଲି ଜାଣ
ଅଯୋନି ସମ୍ଭୂତ ହରି ନଚ ପୁରୁଷ
ଅଯୋନି ସମ୍ଭୂତା ରାଧା ଯୋଗିଛୁ ଅଶେଷ
ଯେଉଁଠାରେ ନାମ ନାହିଁ ସେହିଠାରେ ସ୍ଥିତି
କୋଟି ବ୍ରହ୍ମାଶିବଯନ୍ତୁଁ ଉତପତି ।

( ୨ୟ ଅଧ୍ୟାୟ )

ଶ୍ରୀହରି ଦାସ ମଧ୍ୟ ମୟୂର-ଚନ୍ଦ୍ରିକା ଗ୍ରନ୍ଥରେ ରାଧା ଓ କୃଷ୍ଣଙ୍କୁ ଶୂନ୍ୟ-ରୂପ ରୂପେ ବର୍ଣ୍ଣନା କରିଛନ୍ତି ।

ସେ ଲେଖିଛନ୍ତି .
ନିରାମୟ ବୋଲିଣ ଯେ ସ୍ୱର ଅକ୍ଷର । ଦଶଇ ଆତ୍ମା ତା ମନୋହର
ଆଦ୍ୟ ପ୍ରାନ୍ତ ତେଜ ମଧ୍ୟରୁ ଗୁଣ୍ଡିଲେ ତହିଁ ଦୃଶ୍ୟ ଯେଉଁ ଦୁଇ ଅକ୍ଷର
ସେହି ଗୋ ନବୀନ ହୋଇ ଜୀବ ଆତ୍ମା ଅଶେଷ ବ୍ରହ୍ମାଣ୍ଡେ ଅଛୁ ଘୋଟି
'ରାମନାମ' ବହି ଶୂନ୍ୟେ ଅଛୁ ରହି, ଆପଣା ନାମକୁ ଆପେ ରଟି ।

( ପଞ୍ଚଦଶ ଚନ୍ଦ୍ରିକା )

ଏହି ବର୍ଣ୍ଣନାରେ ଥିବା 'ରାମ' ନାମର ରା' ହେଉଛି ରାଧା ଓ ମ' ହେଉଛି କୃଷ୍ଣ, ଏହି ନାମ ଶୂନ୍ୟନାମ ଏବଂ ରାଧାକୃଷ୍ଣଙ୍କର ଶୂନ୍ୟରୂପ ବୋଲି ଉକ୍ତ ଗ୍ରନ୍ଥରେ କୁହାଯାଇଛି ।

ବଳରାମ ଦାସ ଜ୍ଞାନ ଉଜ୍ଜ୍ୱଳମଣି ଗୀତାରେ ମଧ୍ୟ ଠିକ୍ ଏହିଭଳି ରାମ' ନାମକୁ ରାଧା ଓ କୃଷ୍ଣଙ୍କର ମିଳିତରୂପ ଏବଂ ଠୁଳ ଶୂନ୍ୟର ଶବ୍ଦ ବୋଲି କହିଛନ୍ତି—

ଠୁଳ ଶୂନ୍ୟ ଶବ୍ଦ ଶୁଭଇ
ରାଧିକା ରାଆ ଶବ୍ଦ ହୋଇ

( ଷଷ୍ଠପଞ୍ଚାଶତ୍ ଅଧ୍ୟାୟ )

## ଶୂନ୍ୟ-ବ୍ରହ୍ମପୁର

ଓଡ଼ିଆ ଜ୍ଞାନମିଶ୍ରା ମିଶ୍ରା ଭକ୍ତ ସାହିତ୍ୟରେ ବ୍ରହ୍ମଙ୍କ ଶୂନ୍ୟ ଓ ତାଙ୍କର ପୁରକୁ ମଧ୍ୟ ମହାଶୂନ୍ୟପୁର ବୋଲି କୁହାଯାଇଛି ।

ଉପନିଷଦରେ ଯେପରି କୁହାଯାଇଛି-ବ୍ରହ୍ମଙ୍କ ନିବାସ ସ୍ଥଳରେ ସୂର୍ଯ୍ୟ ପ୍ରକାଶିତ ହୋଇ ପାରନ୍ତି ନାହିଁ । ଚନ୍ଦ୍ର, ତାରାଗଣ ଏବଂ ବିଦ୍ୟୁତ୍ ମଧ୍ୟ ତାଙ୍କ ସମ୍ମୁଖରେ ପ୍ରକାଶ ଦେଖାଇ ପାରନ୍ତି ନାହିଁ, ଆଉ ଅଗ୍ନିଙ୍କ କଥା କ'ଣ ?

ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ର ତାରକଂ
ନେ ମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ
( କଠୋପନିଷଦ ୨।୧୪ )

ଶ୍ରୀମଦ୍‌ଭଗବଦ୍ଗୀତାରେ ଠିକ୍ ଏହି କଥା ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି—

"ନତଦ୍ଭାସୟତେ ସୂର୍ଯ୍ୟୋ ନ ଶଶାଙ୍କୋ ନ ପାବକଃ" —

ଏହି ଚିନ୍ତାଧାରାର ପ୍ରତିଫଳନ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ଧାରାରେ ବି ଦେଖିବାକୁ ମିଳିଥାଏ । ବଳରାମ ଦାସଙ୍କ ରଚିତ ବେଦାନ୍ତ ସାର ଗୁପ୍ତଗୀତାର ବର୍ଣ୍ଣନା ଅନୁଯାୟୀ— ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ମନଯାନରେ ନେଇ ଯେତେବେଳେ ନିତ୍ୟପୁରରେ ( ବ୍ରହ୍ମଙ୍କ ନିବାସସ୍ଥଳ ) ପ୍ରବେଶ କଲେ ସେତେବେଳେ ଅର୍ଜୁନଙ୍କ ଆଖିରୁ ଜ୍ୟୋତି ହଜିଗଲା ଏବଂ ସମସ୍ତ ଅନ୍ଧାର ଦେଖାଗଲା । କାରଣ ଏହା ଜ୍ୟୋତିର୍ମୟ ମହାଶୂନ୍ୟପୁର ଥିଲା । ଶ୍ରୀକୃଷ୍ଣଙ୍କ କର୍ଣ୍ଣରେ ଜ୍ୟୋତିମନ୍ତ୍ର କହି ଅମୃତ ଦୃଷ୍ଟିରେ ଚାହିଁବାରୁ ଅର୍ଜୁନ ନିତ୍ୟସ୍ଥଳ ଦେଖିବାରେ ସମର୍ଥ ହେଲେ ଏବଂ କହିଲେ—

ହେ ନାଥ ନିସ୍ତରିଲି ମୁହିଁ
ଏମନ୍ତ ସ୍ଥଳ ଅଛି କାହିଁ
ମନ ପବନ ଅଗୋଚର
ମୁଁ କାହିଁ ଦେଖିବି ଏ ପୁର । ୩୦

ଅଚ୍ୟୁତାନନ୍ଦ ଶୂନ୍ୟ ସଂହିତାର ପ୍ରଥମ ଅଧ୍ୟାୟରେ ( ପ୍ରଥମ ଭାଗ ) ଶୂନ୍ୟ-ବ୍ରହ୍ମଙ୍କର ଶୂନ୍ୟପୁର ବିଷୟ ବାରମ୍ବାର ଉଲ୍ଲେଖ କରିଛନ୍ତି । ଯଥା—

ଶୂନ୍ୟ ପୁରୁଷ ଅଲଗାରେ ରହି । ଶୂନ୍ୟପରେ ଲୀଳା କରୁଛି ସେହି ।

× × ×

ଶୂନ୍ୟପରେ ଶୂନ୍ୟପୁରୁଷ ରହେ । ଶୂନ୍ୟଭଜନ ନିରାକାରଧ୍ୟାୟେ,
ଚଉଦ ବ୍ରହ୍ମାଣ୍ଡ ଉପରେ ଅଛୁ । ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଉପରେ ଅଛୁ ।

( ୫୬ ପୃ: )

ଏହି ଶୂନ୍ୟସଂହିତାର ନବମ ଅଧ୍ୟାୟରେ ସେ ମଧ୍ୟ ଲେଖିଛନ୍ତି—

ଅଲେଖ ବୋଲନ୍ତି ତାଙ୍କୁ ନ ଦିଶନ୍ତି ଯେଣୁ
ନିରାକାରମଣ୍ଡଣ ଆକାର ନାହିଁ ତେଣୁ ।

ବ୍ରହ୍ମଶାଙ୍କୋଳି ଗ୍ରନ୍ଥରେ ଅଚ୍ୟୁତାନନ୍ଦ ଏହି ଶୂନ୍ୟପୁର ବର୍ଣ୍ଣନା କରି ଲେଖିଛନ୍ତି —

ଅମନ ଶିଖେ ଛନ୍ତି ରହି । ନିଷ୍କାମ ନିର୍ବିକଳ୍ପ ଦେହୀ
ନାହିଁ ତାହାଙ୍କର ବିକାର । ଅବନା ମଣ୍ଡଳ ଈଶ୍ୱର
ମହାଶୂନ୍ୟରେ ବିଜୟ । ପୂର୍ଣ୍ଣ ଶଶାଙ୍କ ତେଜୋମୟ
ଏକୋଇଶ ବ୍ରହ୍ମାଣ୍ଡ ମଧ୍ୟରେ । ଯହିଁ ସ୍ୱରୂପ ଅରୂପରେ ।

( ବ୍ର: ଶା ପୃ-୧୧ )

ଅଚ୍ୟୁତଙ୍କ ଦୃଷ୍ଟିରେ ଶୂନ୍ୟ ନେତିବାଚକ ଶୂନ୍ୟ ନୁହେଁ, ଏହା ଜ୍ୟୋତି ବିଶେଷ । ସେ ଲେଖିଛନ୍ତି—

ଜ୍ୟୋତିପରେ ଦିବ୍ୟଜ୍ୟୋତି ଅମଣ୍ଡଳା ସ୍ଥାନ
ନିର୍ବାଣ ସ୍ଥଳରେ ବିଜେ ପ୍ରଭୁ ଭଗବାନ ହେ ।୧
ନିତ୍ୟ ନିରଗୁଣ ସେ ପରମ ପାଶେ ଥାଇ
ଶ୍ୱେତଳ ବର୍ଣ୍ଣ ସ୍ୱରୂପେ ଜ୍ୟୋତି ବିରାଜଇ ହେ ।୨
ଏକଇ ଚରଣେ ଉଭା ଅନ୍ତସାକ୍ଷ ରୂପୀ
ତରଣ ଅମୃତ ଝରି ବ୍ରହ୍ମାଣ୍ଡରେ ବ୍ୟାପି ହେ ।

( ଅଚ୍ୟୁତାନନ୍ଦର ଗ୍ରନ୍ଥାବଳୀ
ଭବିଷ୍ୟ ଖଣ୍ଡ- ୪୧-୪୨ ପୃ)

ବିଷ୍ଣୁଗର୍ଭ ପୁରାଣରେ ଚୈତନ୍ୟ ଦାସ ଶୂନ୍ୟ ବ୍ରହ୍ମଙ୍କର ନିବାସ ସ୍ଥଳ ରୂପେ ବର୍ଣ୍ଣନା କରି ଲେଖିଛନ୍ତି—

ଶୂନ୍ୟ ସଙ୍ଗତେ ଶୂନ୍ୟ ଯେ ଶୂନ୍ୟ ଶୂନ୍ୟରୂପୀ
ଶୂନ୍ୟସଙ୍ଗତେ ମିଶିଅଛି ସକଳ ସ୍ଥାନେ ବ୍ୟାପି

ଶୂନ୍ୟ ଯେ ତାହାର ଅଟଇ ନଜଘର
ଶୂନ୍ୟ ରେ ଥାଇ ଶୂନ୍ୟେ କରଇ ବିହାର ।

( ୩ । ୧୭ )

ପୁନଶ୍ଚ ନିର୍ଗୁଣ ମାହାତ୍ମ୍ୟରେ ଚୈତନ୍ୟ ଦାସ ଏହି ଶୂନ୍ୟପୁରର ସୁନ୍ଦର ବର୍ଣ୍ଣନା ଦେଇ ଲେଖିଛନ୍ତି—

ଏକୋଇଶ ପୁରର ଉପର ।.ତହିଁ ବଇଜୟ ନିରାକାର ।
ଜାଜ୍ୱଲ୍ୟ ତେଜ ତାହାଙ୍କର । ତେଣୁ ବୋଲାଇ ଜ୍ୟୋତିପୁର ।
ସେ ପୁର ମହିମା ବାରତା । କେ କହି ପାରେ ତାର କଥା ।

× × ×

ସର୍ବଦା ଉଜ୍ଜ୍ୱଳ ସେପୁର । ନିମିଷେ ନୁହଁଇ ଅନ୍ଧାର ।
ସେ ପୁରେ ଚନ୍ଦ୍ର ସୂର୍ଯ୍ୟ ନାହିଁ । ରାତି ଦିବସ ତହିଁ ନାହିଁ ।

( ନି° ମା - ୩୧ - ୩୨ ପୃ )

ବଳରାମ ଦାସ ବିରାଟଗୀତାରେ ଲେଖିଛନ୍ତି—

ଅଣାକାର° ମହାଶୂନ୍ୟ° ଶୂନ୍ୟ ମଧ୍ୟେ ନିରଞ୍ଜନ°
ନିରଞ୍ଜନମଧ୍ୟେ ଜ୍ୟୋତି ତଜ୍ୟୋତିର୍ଭଗବାନସ୍ୱୟ°
ମହାଶୂନ୍ୟରୁ ଶୂନ୍ୟହେଲା, ସେ ଶୂନ୍ୟରୁ ପ୍ରଣବ ଜନ୍ମିଲା
ଶୂନ୍ୟ ପୁରୁଷ ଶୂନ୍ୟ ଦେହୀ, ଶୂନ୍ୟରେ ବ୍ରହ୍ମସିନା ଥାଇ ।

ଯଶୋବନ୍ତ ଦାସ ମଧ୍ୟ ଠିକ୍ ସେହିଭଳି ପ୍ରେମଭକ୍ତି ବ୍ରହ୍ମଗୀତାରେ ଲେଖିଛନ୍ତି—

ଯେ ଶୂନ୍ୟପରେ ଜ୍ୟୋତି ଜାଣ
ତାପରେ ମହାଶୂନ୍ୟ ପୁଣ
ସେ ଶୂନ୍ୟ ଉପରେ ଚେତନା
ଚେତନା ମଧ୍ୟେ ମୋରଠଣା (ପୃ ୫)

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ପିଣ୍ଡ ବ୍ରହ୍ମାଣ୍ଡର ପ୍ରତୀକ ହୋଇଥିବାରୁ ପିଣ୍ଡ ମଧ୍ୟସ୍ଥ ସହସ୍ରାର ଦଳ ଚକ୍ରରେ ଥିବା ଭ୍ରମର ଗୁମ୍ଫା, ଗୋଲହାଟକୁ ଶୂନ୍ୟପୁର ରୂପେ ବର୍ଣ୍ଣନା କରାଯାଇଛି । ଏହାକୁ ଶିଶୁବେଦର ସ୍ଥାନ ମଧ୍ୟ କୁହାଯାଇଥାଏ । ସୁଷୁମ୍ନା ବେଦରୁ ଶିଶୁବେଦ ଶବ୍ଦ ସୃଷ୍ଟି ହୋଇଥିବା ଅନୁମେୟ । ସୁଷୁମ୍ନା ନାଡ଼ୀରେ ପ୍ରାଣବାୟୁକୁ ଚାଳନକରି ସହସ୍ରଦଳଚକ୍ରରେ ଉପନୀତ କରାଇଲେ ଯେଉଁ

ବ୍ରହ୍ମଜ୍ଞାନ ଲାଭ ହୁଏ, ତାହା ଶିଶୁବେଦ । ଟେଣ୍ଟ ବେଦ ହେଉଛି, ଯୋଗଶାସ୍ତ୍ରର ଏକ ଜ୍ଞାନ । ଏହି ଜ୍ଞାନଦ୍ୱାରା ଶୂନ୍ୟ ଅଣାକାର ବ୍ରହ୍ମଙ୍କୁ ଉପଲବ୍ଧି କରନ୍ତି । ସାରଳା ମହାଭାରତରେ ଶିଶୁବେଦକୁ ୫ମ ବେଦ କୁହାଯାଇ ଏହାର ଉତ୍ପତ୍ତି ପ୍ରସଙ୍ଗ ଦିଆଯାଇଛି । ଗ୍ରନ୍ଥର ବହୁସ୍ଥଳରେ ଶିଶୁବେଦର ବର୍ଣ୍ଣନା ମଧ୍ୟ ରହିଛି । ବଳରାମ ଦାସ ବିରାଟଗୀତାରେ ଲେଖିଛନ୍ତି—

ଶିଶୁବେଦଟି ଶୂନ୍ୟେ ଥାଇଁ । ଏମନ୍ତ ପାଞ୍ଚବେଦ କହି ।

ପୁନଶ୍ଚ ସେ ବ୍ରହ୍ମଗୀତାରେ ଲେଖିଛନ୍ତି—

ସେ ଚାରିବେଦଙ୍କର ଶିରରେ ନିରାକାରଙ୍କର ସ୍ଥାନ ସେଠାରେ
ଶିଶୁବେଦ ବସଇ (ପୃ ୨)

ମହାଶୂନ୍ୟପୁରକୁ ଶିଶୁବେଦର ସ୍ଥାନରୂପେ ଲୋହିଗୀତାରେ ବର୍ଣ୍ଣନା କରାଯାଇଛି । ଯଥା—

ଶିଶୁବେଦ କଥା ଅସତ୍ତ ଲୋଇ
ମାନବ ଦେହରେ ନୋହଇ କହି
ପୃଥ୍ୱି ଆପ ତେଜ ବାଇ ଆକାଶ
ଏଥି ଉପରେ ଗଗନର ବାସ
ତଥି ଉପରେ ମହାଶୂନ୍ୟ ପୁର
ଶୂନ୍ୟମଧ୍ୟରେ ତାଙ୍କ ନିଜ ଘର । ( ପୃ ୭ )

ଦ୍ୱାରକାଦାସ ମଧ୍ୟ ଶିବପୁରାଣରେ ଲେଖିଛନ୍ତି—

ଶିଶୁବେଦ ବୋଲି ଯାହା ପଚାରିଲୁ ପକ୍ଷୀ
ଶୂନ୍ୟରେ ଲୁଚିଛି ତାକୁ କେହି ନାହିଁ ଦେଖି
ଅଣାକାର ଘରେ ସେ ଅନନ୍ତର ପୁର
ଓଁକାର ତହିଁରୁ ଯେ ଶିଶୁବେଦ ବାହାର ( ପୃ ୧୯ )

ମନ୍ମଥଚନ୍ଦ୍ରିକାରେ ଜଗବନ୍ଧୁ ଦାସ ମଧ୍ୟ ଲେଖିଛନ୍ତି—

ଶିଶୁବେଦ ଘରେ ବସେ ଅସଙ୍ଗ ପୁରୁଷ
ନାହିଁ ବର୍ଣ୍ଣ ଚିହ୍ନ ଦୁଃଖସୁଖ ଅଭିଳାଷ ( ୧୦ମ ପରିଚ୍ଛେଦ )

ଅଚ୍ୟୁତାନନ୍ଦ ଦାସ ଶୂନ୍ୟରାହାସ ଗ୍ରନ୍ଥରେ ମନପବନର ଅଗମ୍ୟ ସହସ୍ରଦଳ ଚକ୍ରକୁ ଶୂନ୍ୟଙ୍କର ଦେଉଳ ଓ ରହାସ ସ୍ଥଳ ବୋଲି କହିଛନ୍ତି ।

ଅଖଣ୍ଡ ଅଶେଷ ଯୋରୂପେ ଶୂନ୍ୟସିଂହାସ ଯହିଁ
ହେଉଛି ସଖୀ ଅମନ ଭୁବନ ଯେ ଅଟଇ
ସେହି ଭୁବନେ ଦେଉଳ ଗୋଟା ହୋଇଛି ନିର୍ମାଣ
ତହିଁର ମଧ୍ୟରେ ବିଜେ ପ୍ରଭୁ ଶ୍ରୀନାରାୟଣ ।
( ଶୂନ୍ୟସିଂହାସ ୫୫ପୃ ଅଚ୍ୟୁତାନନ୍ଦ ରଚନାବଳୀ ସିଂହାସଖଣ୍ଡ )

ଅନ୍ୟତ୍ର ଲେଖିଛନ୍ତି—

ଅଣାକାର ମଣ୍ଡ ଶୂନ୍ୟମଣ୍ଡଳରେ
ଦଶଦ୍ୱାର ବାଟ , ଦଶ ଯେ କବାଟ
ଯିବାକୁ ସଙ୍କଟ ସରୁ ରନ୍ଧ୍ରରେ
ଫୁଙ୍କାବନ୍ଧ କରି ଓଲଟଉଜାଣି
ଉଲଟି ରହିଛି ତହିଁ ମଧ୍ୟରେ ।୨।
ଅବାରଣ ଭୂଇଁ ବାରଣ ନୋହଇ
ଷଡ଼ମୁଖୀ ଗାଈ ଚରେ ସେଠାରେ
( ଅଚ୍ୟୁତାନନ୍ଦ ରଚନାବଳୀ କବିତାଖଣ୍ଡ ପୃ ୮୯ )

ଏହା ହେଉଛି ଶରୀରର ସହସ୍ରଦଳ ଚକ୍ର । ଉଲଟ ସାଧନାରେ ପ୍ରାଣବାୟୁକୁ ଉର୍ଦ୍ଧ୍ୱୋଳକ କରି ବ୍ରହ୍ମରନ୍ଧ୍ର ବାଟ ଦେଇ ଏଠାରେ ପହଞ୍ଚାଇଲେ ଶୂନ୍ୟବ୍ରହ୍ମ ଦର୍ଶନ ହୋଇଥାଏ । ଅନ୍ୟତ୍ର ସେ ଲେଖିଛନ୍ତି—

ଗ୍ୟାଂମା ହୋ । ଶୂନ୍ୟମଣ୍ଡଳରେ ବାସ
ନିତ୍ୟଦରଶନେ ଦୁରିତନାଶ । । ଘୋଷା ।
ଶୂନ୍ୟଗିରି ବୋଲି ଯହିଁ କଟକ ।
ଦେଉଳ ପଡ଼ିଛି ତେତେ ଛଟକ ।

× × ×

ତନ ଚହୁଡ ତ୍ରୀବେଣୀ ଏ ଘାଟ
ସେହି ସଲଖେ ଗୋଲ୍‌କକୁ ବାଟ

X X X

ସେହି ସଲଖେଉଅସେଦ ଅଛୁ
ଅଗମ ଗୁମ୍ଫାରେ ହଂସ ଖେଳୁଛୁ ।

ଦେଉଳ ଗୋଟି କରନ୍ତୁ ନିର୍ମାଣ
ତହିଁ ବିଜୟେ ପ୍ରଭୁ ଭଗବାନ ।
( ଶୂନ୍ୟସଂହିତା ୪୮-୪୯ ପୃ ଅଚ୍ୟୁତାନନ୍ଦରଚନାବଳୀ ପ୍ରଥମଖଣ୍ଡ )

ପରମ ସଂହିତା ଗ୍ରନ୍ଥରେ ମଧ୍ୟ ଅଚ୍ୟୁତାନନ୍ଦ ସହସ୍ରଦଳ ଚକ୍ରକୁ ଶୂନ୍ୟ-ମନ୍ଦିର ରୂପେ ବର୍ଣ୍ଣନା କରି ଲେଖିଛନ୍ତି—

ଶୂନ୍ୟମନ୍ଦିରେ ଏକା ଅଛୁ । ପାରୁଶେ କେହି ନାହିଁ କିଛୁ ।
ଏକୋଇଶ ବ୍ରହ୍ମାଣ୍ଡ ବାହାରେ । ମହିମା ବିକଶିଛୁ ତା'ରେ ।
( ୪ର୍ଥ ପଟଳ ୧୦ ପୃ )

ଏହିକୁ ଆହୁରି ପ୍ରାଞ୍ଜଳ କରି ସେ ପରମ ସଂହିତାରେ ଅନ୍ୟତ୍ର ଲେଖିଛନ୍ତି—

ତ୍ରିକୂଟପରେ ମୂଳଶୂନ୍ୟ । ସେଶୂନ୍ୟେ ନିର୍ବିକାର ସ୍ଥାନ
ସହସ୍ର ଦଳ ମଧ୍ୟେ ସ୍ଥାନ । ଅଲେଖ ବ୍ରହ୍ମଙ୍କ ଆସ୍ଥାନ ।

ଚତୁର୍ଦ୍ଦଶ ପଟଳରେ ସେ ଠିକ୍ ସେହିଭଳି ଲେଖିଛନ୍ତି—

ତ୍ରିକୂଟ ବୋଲି ହେ କାଉଁରୀ ମଣ୍ଡଳ
ସେ ମଣ୍ଡଳ ଉପରକୁ ଗୋଲହାଟପୁର ।

X X X

ମୂଳ ଶୂନ୍ୟପୁର ସେହି ନାହିଁ ଅନ୍ୟକେହି
ଲୁଚିଅଛି କଥା କହି ଦେବା ଭଣ୍ଡି ଆଇ
ମହାଶୂନ୍ୟ ଜ୍ୟୋତିରୂପେ ପରମ ଗଗନ
ସେ ପୁରେ ଅଛନ୍ତି କର୍ତ୍ତା ଓଁ କାରର ସ୍ୱନ ।
( ପଞ୍ଚଦଶ ପଟଳ ୫୭ ପୃ )

ତୁଲାଭିଣା ଗ୍ରନ୍ଥରେ ମଧ୍ୟ ଜଗନ୍ନାଥ ଦାସ ଚଉଷଠି ଦଳକୁ ନିତ୍ୟଗୋଲକ ଓ ଶୂନ୍ୟ ଦେଉଳ କହିଛନ୍ତି ।

ଗୋଲକ ନିତ୍ୟ ଏହାକହି । ଶୂନ୍ୟ ଦେଉଳ ଏ ବୋଲାଇ

X X X

ଦେଉଳ ଶିଖେ ମୂଳହୋଇ ବସିଛୁ ପ୍ରଭୁ ଭବଗ୍ରାହୀ ।
( ତୁଲାଭିଣା/ଦ୍ୱାଦଶଅଧ୍ୟାୟ ]

ସୁଧାସାର ଗୀତାର ଅନେକ ସ୍ଥଳରେ ଚନ୍ଦ୍ରମଣି ଦାସ ଶୂନ୍ୟପୁରୁଷ ବ୍ରହ୍ମଙ୍କର ଏହି ଶୂନ୍ୟଦେହଲ ବା ଶୂନ୍ୟ ଗୃହ କଥା ବର୍ଣ୍ଣନା କରିଛନ୍ତି । ସେଗୁଡ଼ିକର ଉଦ୍ଧାର ଏଠାରେ କରାଯାଉଛି ।

୧ । ସେହି ଶୂନ୍ୟକୋଠ ଶୂନ୍ୟଗୃହ ତା'ର ଭକତ ତାହା ବସ୍ତିର
ଅପୂର୍ବ ନଗର ଭିଆଣ କରଇ କ୍ଷଣକମାତକେ ଜର ।
( ସୁ. ସା. ଗୀ ୩୧ପୃ )

୨ । ଶୂନ୍ୟ କୋଠର୍ମିଷ୍ଟ ଅଲେଖପୁର ଯେ ମଣିମଣ୍ଡପ ବିରାଜ
ଭ୍ରମର ଗୁମ୍ଫାରେ ନର୍ତ୍ତକୀ ରହିବୁ କେନଲୋଚନକୁ ବୁଜ

୩ । ସେ କଣ୍ଠ ଧରଣ କବାଟ ଫିଟାଇ ପଶିବୁ ଅଲେଖପୁରେ
ଜଗନ୍ନାଥ ସ୍ୱାମୀ ବସେ କରିଥିବେ ରତ୍ନପଲଙ୍କ ଉପରେ ।
( ସୁ. ସା. ଗୀ ୧୧୮ପୃ )

ଭୀମଦ୍ଧୀବାଟ ଜ୍ଞାନସାଗର ଗ୍ରନ୍ଥରେ ଶୂନ୍ୟକୁ ଶୂନ୍ୟପୁରୁଷଙ୍କର ଆସନ ବା ନିବାସସ୍ଥଳ କହିଛନ୍ତି । ଯଥା—

ଶୂନ୍ୟଉପରେ ମୋ ବିହାର । ଶୂନ୍ୟରେ ଆସନ ମୋହର
[ ଜ୍ଞା. ସା ୭ପୃ ]

ଉପନିଷଦ୍‌ରେ ନିର୍ଗୁଣ, ଅରୂପ ନିର୍ବିଶେଷ ବ୍ରହ୍ମଙ୍କୁ ଓଁ ରୂପେ ଚିହ୍ନିତ କରାଯାଇଅଛି । ତୈତ୍ତିରୀୟୋପନିଷଦ୍‌ରେ କୁହାଯାଇଛି—

"ଓ ମିତିବ୍ରହ୍ମ । ଓ ମିତୀଦଂ ସର୍ବମ୍" ( ୮/୧ )

ଶ୍ରୀମଦ୍‌ଭଗବତ ଗୀତାରେ ମଧ୍ୟ କୁହାଯାଇଛି—
"ଓ ମିତ୍ୟେକାକ୍ଷରଂ ବ୍ରହ୍ମ"

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାଧକବୃନ୍ଦ ଉପନିଷଦୀୟ ଚିନ୍ତାଧାରା ସହିତ ସାମ୍ୟ-ରକ୍ଷା କରି ଶୂନ୍ୟରୂପୀ ବ୍ରହ୍ମଙ୍କୁ ଓଁ ଏକାକ୍ଷର କହିଛନ୍ତି । ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ସେମାନଙ୍କର ଶୂନ୍ୟ, ଶୂନ୍ୟପୁରୁଷ ଏସବୁ ନେତିବାଚକ ଶୂନ୍ୟ ନହୋଇ ଉପନିଷଦୀୟ ବ୍ରହ୍ମବାଚକ । ନିମ୍ନରେ ପ୍ରଦତ୍ତ କେତେକ ଉଦ୍ଧୃତିରୁ ତାହା ସହଜରେ ଅନୁମେୟ ହୁଏ । ଯଥା—

୧ । ଏକାକ୍ଷର ବ୍ରହ୍ମ ଏହି କୋଠ ବ୍ରହ୍ମରୂପ
ଏଥିରେ ଅଲେଖକ ଯେ ଅଲେଖ ସ୍ୱରୂପ
( ଶୂ. ସଂ ୧ପୃ )

୨ ।   ମହାଶୂନ୍ୟରୁ ଶୂନ୍ୟହେଲା, ସେ ଶୂନ୍ୟ, ପ୍ରଣବଜନ୍ମିଲା

( ଭଗବତଗୀତା ୧୦ମ ଅଧ୍ୟାୟ )

ବ୍ରହ୍ମ ଏକାକ୍ଷର ଜଗି ବସିଅଛି ମହାଶୂନ୍ୟଘର ମାଝ

( ସିଦ୍ଧ ବାରଙ୍ଗ ଦାସଙ୍କ ବ୍ରହ୍ମକୁଣ୍ଡଳୀ )

୩ ।   ଓଁକାର ଅଟଇଟି ଶୂନ୍ୟ, ଇକାର ଅଟଇ ପବନ

( ହରିକାର ଦାସଙ୍କ ଅମର କୁମର ୨ୟ ଅଧ୍ୟାୟ )

୪ ।   ଶୁଣ ପାର୍ବତୀ ! ଅଣାକାର ଯେ କୁହୁକ ବର୍ଣ୍ଣ, କେୟାଢବର୍ଣ୍ଣ,ଧୂମବର୍ଣ୍ଣ,
ଯେ ଅନ୍ଧକାର ହୋଇଥିଲା ସେ ବିନ୍ଦୁକୁ ଓଁକାର କହି ।

( ତୁଳାଭିଣା ପୃ୧ )

୫ ।   ଏମନ୍ତେ ମହାଶୂନ୍ୟ ହେଲା ସେ ଶୂନ୍ୟ ପ୍ରଣବ ହୋଇଲା
ପ୍ରଣବ ଓଁକାରକୁ କହି ! ଏକାକ୍ଷରଟି ସେ ଅଟଇ

( ବ୍ରହ୍ମାଣ୍ଡ ଭୂଗୋଳ ୩ୟ ଅଧ୍ୟାୟ )

୬ । ପ୍ରଥମେ ଶୂନ୍ୟମଣ୍ଡଳ ଗୋଟିଏ ହୋଇଲା । ସେ ଓଁକାର ରାମକୃଷ୍ଣ ହରେ,
ସେ ଓଁକାର ବେଦଗର୍ଭ ହେଲା । ତଳେ ରାଧା ଉପରେ କୃଷ୍ଣ...

(ତୁଳାଭିଣା ୪ପୃ)

୭ । ଓ କାର ଅଟେ ଏକାକ୍ଷର । ଓଁକାର ସୃଷ୍ଟିର ସମ୍ଭାର
ଓଁ ଅଙ୍ଗସ୍ଥାନ ଦେହେ । ସଂସାର ଶେଷେ ପୁରି ରହେ

(ଛୟାଳିଶ ପଟଳ ଚତୁର୍ବିଂଶତି ତନ୍ତ୍ର)

## ଶୂନ୍ୟ - ସୃଷ୍ଟିର ମୂଳ କାରଣ :-

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତସାଧକଙ୍କ ଦୃଷ୍ଟିରେ ଶୂନ୍ୟ, ବ୍ରହ୍ମ ହୋଇଥିବାରୁ, ଉପନିଷଦମାନଙ୍କରେ ବ୍ରହ୍ମଙ୍କୁ ଯେପରି ସୃଷ୍ଟିର କାରଣ ରୂପେ ନିର୍ଦ୍ଦେଶ କରାଯାଇଛି, ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ଶୂନ୍ୟକୁ ସେହିପରି ସୃଷ୍ଟିର କାରଣ ବା ମୂଳ ରୂପେ ଗ୍ରହଣ କରାଯାଇଛି । ସୃଷ୍ଟି କହିଲେ ନାମ ସୃଷ୍ଟି ବିଶ୍ୱ ସୃଷ୍ଟି ଓ ଜୀବ ତଥା ଏହାର ଆଧାର ଶରୀରର ସୃଷ୍ଟି ଏହିପରି ହୋଇଥାଏ । ପିଣ୍ଡ ଓ ବ୍ରହ୍ମାଣ୍ଡ ଏକରୂପେ କଳ୍ପିତ ହୋଇଥିବାରୁ ଏହି ଦୁଇଟିର ସୃଷ୍ଟି କ୍ରମବର୍ଣ୍ଣନାରେ କେତେକ ସାମ୍ୟ

ପରିଲକ୍ଷିତ ହୋଇଥାଏ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ସୃଷ୍ଟିର କାରଣ ରୂପେ ଶୂନ୍ୟକୁ କିପରି ଉପସ୍ଥାପିତ କରାଯାଇଛି ତାହାର ଉଦାହରଣ ନିମ୍ନରେ ପ୍ରଦାନ କରାଯାଉଛି । ଏହି ଗ୍ରନ୍ଥରେ ସୃଷ୍ଟିତତ୍ତ୍ୱ ସମ୍ପର୍କରେ ଏକ ସ୍ୱତନ୍ତ୍ର ଅଧ୍ୟାୟ ଥିବାରୁ ଏଠାରେ ଶୂନ୍ୟରୁ ସୃଷ୍ଟି ସମ୍ପର୍କିତ କେତୋଟି ଉଦାହରଣ ସଂକ୍ଷେପରେ ଦିଆଯାଉଛି ।

## (କ) ବିଶ୍ୱସୃଷ୍ଟି—

୧ । ମହାଶୂନ୍ୟରୁ ଶୂନ୍ୟଜାତ । ସେ ଶୂନ୍ୟୁଁ ପ୍ରଣବ ସମ୍ଭୂତ ।
ପ୍ରଣବୁଁ ତ୍ରିବୀଜ ଜନ୍ମିଲା । ସେ ପୁଣି ତ୍ରିଗୁଣ ହୋଇଲା ।
ତ୍ରିଗୁଣ ଚଉବିଂଶ ଜାତ । ଏମନ୍ତ କହଇ ବେଦାନ୍ତ ।

(ବଳରାମ ଦାସଙ୍କ ବେଦାନ୍ତସାର ଗୁପ୍ତଗୀତା ପ୍ରଥମ ଅଧ୍ୟାୟ)

୨ । ମହାଶୂନ୍ୟଟି ଯାହା କହି । ଅଗ୍ନିର ରୂପ ସେ ଅଟଇ
ସେଠାରୁ ପବନ ଜନ୍ମଇ । ବ୍ରହ୍ମାଣ୍ଡ ସର୍ବ ଘଟେ ଥାଇ

X X X

ଜ୍ୟୋତି ରୂପେ ଯେ ମହାଶୂନ୍ୟ । ତାଠାରୁ କୋଟି କୋଟି ଜନ୍ମ

(ବଳରାମଦାସଙ୍କ ବ୍ରହ୍ମାଣ୍ଡ ଭୂଗୋଳ ୩ୟ ଅଧ୍ୟାୟ)

୩ । ମହାଶୂନ୍ୟ ଯେ ଜ୍ୟୋତିରୂପ । ଜ୍ୟୋତିରୁ ଜାତ ଠୂଳରୂପ
ଠୂଳରୁ ଅର୍ଦ୍ଧମାତ୍ରା ହେଲା । ମାତ୍ରାରୁ ଓଁକାର ଜନ୍ମିଲା
ଓଁକାରୁ ଜନ୍ମ ଏ ଜଗତ । ଶୁଣ ପାର୍ବତୀ ଦେଇ ଚିତ୍ତ ।

(ଜଗନ୍ନାଥଦାସଙ୍କ ତୁଳାଭିଣା ୧ମ ଅଧ୍ୟାୟ)

୪ । ଇଚ୍ଛା କଳ୍ପମାନେ ଜନ୍ମ ଅବଭୂତେ
ଶୂନ୍ୟରୁ ହୋଇଲା ଶୂନ୍ୟ
ତହିଁରୁ ଶବଦ ଅନାହତ ନାଦେ
ଶୂନ୍ୟେ ପ୍ରକାଶିତ ଜ୍ଞାନ

X X X

ଅଣାକାରରୁ ସଂଜାତ ହୋଇଛୁ
ଗୁରୁ କହୁଲେ ପୁରୁଣେ ।
(ଅଚ୍ୟୁତାନନ୍ଦ ଜନ୍ମ ଶରଣ ୧୫ ଅଧ୍ୟାୟ ୩୩-୩୪ ପୃ)

୫ । ପ୍ରଳୟରେ ସୃଷ୍ଟି ନାଶ ହୋଇଲା ଯେ କାଳେ
ଶୂନ୍ୟ ନିରାକାର ବ୍ରହ୍ମମନ ଚଳାଇଲେ
ଶୂନ୍ୟରେ ସବୁ ମିଶାଇ ରଖିଥିଲେ ଗର୍ଭେ
ପୁଣି ସେ ଶୂନ୍ୟରୁ ସୃଷ୍ଟି ହୋଇଲେ ସରବେ
(ଛୟାଳିଶ ପଟଳ ୧୦ ପଟଳ)

୬ । ଅଛୁ ନାହିଁ ବୋଲି ବଖାଣଲେ ହେବୁ ଜ୍ଞାନୀ
ନଥାଇ ଶୂନ୍ୟରୁ ସୃଷ୍ଟି ହେଲା ଏ ଅବନୀ
(ଛୟାଳିଶ ପଟଳ ଅଷ୍ଟମ ପଟଳ)

୭ । ମୂଳଶୂନ୍ୟ ଗୋଟି ବ୍ରହ୍ମାଣ୍ଡ କରତା ମୂଳଟି ଅଟଇ ମୂଳ
ରୂପବର୍ଣ୍ଣ ଜ୍ୟୋତ ଶବଦ ସହିତେ ମୂଳରୁ ହୁଅନ୍ତି ଜାତ
ଅନ୍ତଃ କାଳେ ଯାଇ ମୂଳରେ ମିଶନ୍ତି ମୂଳଟି ଅଟଇ ତତ୍ତ୍ୱ
(ଚନ୍ଦ୍ରମଣିଙ୍କ ସୁଧାସାର ଗୀତା ୧୧ଶ ବୋଲି)

୮ । ଅନାଦି ବ୍ରହ୍ମ ରୂପ ଧରି । ସୃଷ୍ଟି ସର୍ଜ୍ଜିବା ଇଚ୍ଛା କରି
ଉଦରେ ରଖିଲେ ସମସ୍ତ । ଯାହାର ସ୍ୱରୂପ ଯେମନ୍ତ
ସକଳ ପିଣ୍ଡ ନିର୍ଭୀକରି । ଜୀବପରମ ତହିଁ ଭରି
ଏମାୟା ସକଳ ବିଷୟେ । ଆଣି ସଞ୍ଚିଲେ ସବୁଠାଏ ।
(ଚୈତନ୍ୟ ଦାସଙ୍କ ନିର୍ଗୁଣ ମାହାତ୍ମ୍ୟ ୬ଷ୍ଠ ଅଧ୍ୟାୟ)

## ଶୂନ୍ୟ—ଜୀବ ସୃଷ୍ଟିର ମୂଳ—

ପିଣ୍ଡ ବ୍ରହ୍ମାଣ୍ଡ ମଧ୍ୟରେ ସାମ୍ୟଥିବାରୁ, ବ୍ରହ୍ମାଣ୍ଡର ଊର୍ଦ୍ଧ୍ୱରେ ଯେପରି ଶୂନ୍ୟମୟ ପୁରରେ ଶୂନ୍ୟବ୍ରହ୍ମଙ୍କର ଅବସ୍ଥିତି ରହିଛି, ସେହିପରି ପିଣ୍ଡ ମଧ୍ୟରେ ସର୍ବୋଚ୍ଚ ସ୍ଥାନରେ ଥିବା ସହସ୍ର ଦଳଚକ୍ରର ଶୂନ୍ୟ ସ୍ଥାନରେ ଶୂନ୍ୟବ୍ରହ୍ମଙ୍କର ସ୍ଥାନ ରହିଛି । ବିଶ୍ୱ ସୃଷ୍ଟିବେଳେ ଯେପରି ଶୂନ୍ୟରେ ଅବସ୍ଥିତ ଶୂନ୍ୟ ବ୍ରହ୍ମଙ୍କଠାରୁ ବିନ୍ଦୁ (ବିଶ୍ୱର ସୂକ୍ଷ୍ମରୂପ) ଉତ୍ପନ୍ନ ହୋଇ ତାହା କ୍ରମେ ବିସ୍ତୃତ ହୋଇ ବିଶ୍ୱରୂପ

ଧାରଣ କଲା, ସେହିପରି ସହସ୍ର ଦଳସ୍ଥିତ ଶୂନ୍ୟବ୍ରହ୍ମଙ୍କଠାରୁ ବାର୍ଯ୍ୟରୂପକ ବିନ୍ଦୁ ସ୍ଖଳିତ ହୋଇ କ୍ରମେ ବିସ୍ତୃତ ହେଲା ଏବଂ ବ୍ରହ୍ମାଣ୍ଡର ପ୍ରତୀକ ଶରୀରର ସୃଷ୍ଟି ହେଲା । ବ୍ରହ୍ମାଣ୍ଡ ଏବଂ ପିଣ୍ଡର ସୃଷ୍ଟି ପ୍ରକ୍ରିୟା ଏକ ପ୍ରକାର ଏବଂ ଉଭୟଙ୍କ ମଧ୍ୟରେ ଶୂନ୍ୟରୂପୀ ବ୍ରହ୍ମଙ୍କର ସ୍ଥିତି ରହିଛି । ଏହି ବିଷୟ ଓଡ଼ିଆ ଜ୍ଞାନମିଶ୍ରାଭକ୍ତି ସାହିତ୍ୟରେ ରୂପାୟିତ ହୋଇଛି । ପୁରୁଷର ବୀର୍ଯ୍ୟକୁ ବ୍ରହ୍ମ କୁହାଯିବା ଏକ ଉପନିଷଦୀୟ ଚିନ୍ତାଧାରା । ଏହା ବୌଦ୍ଧଧର୍ମରୁ ଗୃହୀତ ହୋଇନାହିଁ । ବୃହଦାରଣ୍ୟକ ଉପନିଷଦରେ କୁହାଯାଇଛି—

ଯୋ ରେତସି ତିଷ୍ଠନ୍ ରେତସୋଽନ୍ତରୋ ଯଂରେତୋ
ନବେଦ ଯସ୍ୟରେତଃ ଶରୀରଃଯୋ ରେତୋଽନ୍ତରୋ
ଯମୟତ୍ୟେଷ ଆତ୍ମାନ୍ତର୍ଯ୍ୟାମ୍ୟମୃତଃ (୩ । ୭ । ୨୩)

ଅର୍ଥାତ ଯେ (ବ୍ରହ୍ମ) ବୀର୍ଯ୍ୟ ମଧ୍ୟରେ ଅବସ୍ଥିତ, କିନ୍ତୁ ବୀର୍ଯ୍ୟ ଦ୍ୱାରା ଜାଣି ହୁଅନ୍ତି ନାହିଁ ଏବଂ ବୀର୍ଯ୍ୟରୂପୀ ବୀର୍ଯ୍ୟର ନିୟାମକ ସେ ଆତ୍ମା ଅଟନ୍ତି । ଇଏ ଅନ୍ତର୍ଯ୍ୟାମୀ ଏବଂ ଅବିନାଶୀ ଅଟନ୍ତି ।

ପୁନଶ୍ଚ ଅନ୍ୟତ୍ର କୁହାଯାଇଛି—

ରେତ ଏବ ଯସ୍ୟାୟତନ୍ ହୃଦୟ୍ ଲୋକେ ମନୋଜ୍ୟୋତିର୍ଯୋ
ବେଦ° ପୁରୁଷ° ବିଦ୍ୟାତ୍ ସର୍ବସ୍ୟାତ୍ମନଃ ସବୈ
ବେଦିତାସ୍ୟାତ୍ (ବୃହଦାରଣ୍ୟକ ଉପନିଷଦ୍ ୩ । ୯ । ୧୬)

ରେତ ବା ବୀର୍ଯ୍ୟ ଯାହାଙ୍କର ଦେହ, ଆଲୋକ ଯାହାଙ୍କର (ବ୍ରହ୍ମଙ୍କର) ହୃଦୟ, ଜ୍ୟୋତି ଯାହାଙ୍କର ମନ ଏବଂ ଯେ ସର୍ବଭୂତର ଆଶ୍ରୟ ତାଙ୍କୁ ଯେ ଜାଣିଛି, ସେ ଜ୍ଞାନୀ ଅଟେ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଏହି ବିନ୍ଦୁ ବ୍ରହ୍ମ ରୂପକ ବୀର୍ଯ୍ୟରୁ ଶରୀର ସୃଷ୍ଟି ବିଷୟ ବର୍ଣ୍ଣନା କରାଯାଇଛି । ବଳରାମ ଦାସ ବିରାଟ ଗୀତାରେ ଲେଖିଛନ୍ତି—

ମହାଶୂନ୍ୟରୁ ବୀର୍ଯ୍ୟଖସି । ମାତା ପଦ୍ମରେ ଯାଇ ବସି
ସେଠାରୁ ପଞ୍ଚଭୂତ ହେଲା । ମାତାର ପଦ୍ମେ ବିଶ୍ରାମିଲା
ପ୍ରଥମେ ଜଳପ୍ରାୟେ ଦିଶି । ସ୍ଫୋଟକ ଗୋଟିଏ ପ୍ରକାଶି
ସ୍ଫୋଟକ ଭିତରେ ପବନ । ଏମନ୍ତେ ଗଢିଲା ଭୁବନ
ପ୍ରଥମେ ଅଙ୍ଗରୂପ ହୋଇ । ମନୁଷ୍ୟ ରୂପରେ ପ୍ରକାଶଇ ।

(ବିରାଟଗୀତା ୧୦ମ ଅଧ୍ୟାୟ)

ତୁଳାଭିଣାରେ ଜଗନ୍ନାଥ ଦାସ ଲେଖିଛନ୍ତି –

ଅଣାକାର ଯେ ଶୂନ୍ୟକ୍ଷେତ୍ର । ସେଠାରୁ ବିନ୍ଦୁ ଉତପତ୍ତି
ଅର୍ଦ୍ଧ ମଧ୍ୟରେ ବିନ୍ଦୁ ରହି । ଊର୍ଦ୍ଧ୍ୱରୁ ଖସିଣ ପଡ଼ଇ
ଊର୍ଦ୍ଧ୍ୱ ପ୍ରଣବରୁ ଖସିଲା । ତ୍ରିବୀଜ ନ୍ୟସ୍ତ ଭାଗ ହେଲା
ତ୍ରିବୀଜ ତ୍ରିକୁଟର ଘାଟ । ସେଠାରେ ଚନ୍ଦ୍ର ସୂର୍ଯ୍ୟ ଭେଟ
ଚନ୍ଦ୍ର ସୂର୍ଯ୍ୟଙ୍କୁ ଯେହୁ ଭେଟି । ବ୍ରହ୍ମ ତାପ ଅଗ୍ନି ଯୋଡ଼ି
ମହାତପତ ଜାତ ହେଲା । ସେ ବୀଜ ପଡ଼ି ତରଳିଲା
ସୂଚୀ ପ୍ରମାଣେ ବାଟ ଥିଲା । ସେ ବାଟେ ଗଳିଣ ପଡ଼ିଲା
ଚକ୍ର ପ୍ରକାରେ ଯେହୁ ବୁଲି । ସୂଚୀ ମୁନରେ ଗଳି ଗଲି
ସମ ଶବଦରେ ଖସିଲା । ଶୂନ୍ୟ ଶବଦରେ ମିଳିଲା
ରନ୍ଧ୍ରଏ ପ୍ରମାଣରେ ଖସି । ପ୍ରଥମ ଡମ୍ବୁରୁରେ ପିଶି
ଶିବ ପାର୍ବତୀ ତେଜ ପାଇ । କୋଟି ସୂର୍ଯ୍ୟର ପ୍ରାୟେ ହୋଇ
ଛାଡ଼ି ଡମ୍ବୁରୁ ବେଗେ ଚଳି । ବିଷ୍ଣୁ ଭୁବନେ ଯାଇ ମିଳି
ବିଷ୍ଣୁର ଅଙ୍ଗସଙ୍ଗ ପାଇ । ଅଧିକ ତେଜ ପ୍ରକାଶଇ
ପଞ୍ଚ ଡମ୍ବୁରୁରେ ଗଲିଲା । ବ୍ରହ୍ମାର ଭୁବନେ ମିଳିଲା
ଶଙ୍ଖ ଆକାରରେ ନାଭିପଦ୍ମ । ପ୍ରବେଶ ହେଲା ତହିଁ ମଧ୍ୟ
ସେଠାରେ ଅଜ୍ଞାନ ଯେ ଥିଲା । ପ୍ରାଣକୁ ବେଗେ ସେ ଗିଳିଲା
ନାଭିପଦ୍ମରୁ ବେଗେ ଖସି । ଇନ୍ଦ୍ରିୟ ଦ୍ୱାରେ ଯାଇ ମିଶି ।
ଇନ୍ଦ୍ରିରୁ ଖସିଲା ବଦନ । ପଦ୍ମ ମଧ୍ୟରେ କଲା ସ୍ଥାନ
ଏ ରୂପେ ଜୀବ ଉତପତ୍ତି । ସୁମନେ ଶୁଣ ଗୋ ପାର୍ବତୀ ।

(ତୁଳାଭିଣା — ପ୍ରଥମ ଅଧ୍ୟାୟ ୭ ପୃଷ୍ଠା)

ଚନ୍ଦ୍ରମଣିଦାସ ସ୍ୱରୋଦୟର ଗୀତାରେ ମଧ୍ୟ ଏହି ଧରଣ ବର୍ଣ୍ଣନା କରିଛନ୍ତି ।

ଯଥା :—

ଅଣ୍ଡବୋଲି କରି ଅର୍ଦ୍ଧମାତ୍ରା ଯେହୁ କୋଟିଏ ବୋଲିଏ ବିନ୍ଦୁ
ରୂପରସ ଗନ୍ଧ ଶବଦପିଣ୍ଡେ ଯେମନ୍ତ ପ୍ରକାରେ ଇନ୍ଦୁ
ପବନ ସ୍ୱରୂପ ଶୂନ୍ୟେ ଉଡ଼ାଇଣ ବ୍ରହ୍ମଙ୍କୁ ଅଣ୍ଡରେ ଥୋଇ
ପଞ୍ଚଭୂତରେ ପଞ୍ଚତତ୍ତ୍ୱ ମିଶିଲା ଆକାଶମାର୍ଗରୁ ଯାଇ

X X X

ନିଶବଦ କୋଟିଏ ତ୍ରିଗୁଣରେ ବ୍ୟାପି ଉର୍ମି ଧୂର୍ମି କୋଟିଏ ଜ୍ୱାଳା
ଠୂଳଶୂନ୍ୟରୂପିଃ ସୁଷମ୍ନା ଦ୍ୱାରେ ମାତାଗର୍ଭେ ଠାବକଲା
ଶୁକ୍ର ଅର୍ପିଣ ରକ୍ତରେ ମିଶିଲ ତ୍ରିଗୁଣେ ହୋଇଲ ବନ୍ଧା
ଗୁରୁଆଜ୍ଞା ଯେବେ ପାଇନଥିବଟି କହିବାକୁ ମହାଧନ୍ଦା

X X X

ଅରୂପ ହୋଇଣ ରୂପ ପ୍ରକାଶିଲ କେତାର ମନ୍ତ୍ରମାତନ୍ତ୍ର
ନଖ ମୁଖ ନାସା ଶ୍ରବଣ ସହିତେ ଚକ୍ଷୁ ପାଦକର ଯେତେ
ଅନ୍ତ୍ରପିତ୍ତ ଚଉ ଅସ୍ଥି ପଞ୍ଜରସନ୍ଧି ଗଣି ମୁଁ କହିବ କେତେ
ଏକାଦଶ ଇନ୍ଦ୍ର ପଚିଶ ପ୍ରକୃତି ସର୍ବେ ଯାଇ କଲେ ଠଣା
ପଞ୍ଚଭୂତେ ଯାହିଁ ପାଞ୍ଚ ମନ ରହି ଗୁଣବେଦ ଯହିଁ ବଣା
ଯେଉଁ ପରକାର ଚଉଦବ୍ରହ୍ମାଣ୍ଡ ସେହିପରି ଗୋଟି ଏହି

(ସୁଧାସାର ଗୀତା ଷଷ୍ଠ ବୋଲି)

ଶୂନ୍ୟସଂହିତାରେ ଅଚ୍ୟୁତାନନ୍ଦ ଅନୁରୂପ ଭାବରେ ଲେଖିଛନ୍ତି—

ରତିରସ ଯୋଗେ ବିନ୍ଦୁ ଝଟୁଲିଲ ଯେଣୁ
ରଜ ବୀଜ ମିଶିଣ ସେ ଏକତ୍ର ହୋଇଲେ
ବିନ୍ଦୁ ବ୍ରହ୍ମ ନୀର ରଜନାମ କ୍ଷୀର କଲେ
ନୀର କ୍ଷୀର ବେନିମିଶି ଅଣ୍ଡ ପ୍ରକାଶିଲା
ବିନ୍ଦୁଝିଙ୍କରତି ରଜ ଛଟନା ମିଶିଲ
ପ୍ରଥମ ଦିନରେ ରଜ ବୀଜ ଗୋଳିହଶି
ଦ୍ୱିତୀୟ ଦିନରେ ବୀଜ ଫେନଯେ ପ୍ରକାଶି
ତୃତୀୟ ପୁଷ୍କର ପ୍ରାପ୍ତ ବିନ୍ଦୁ ମଧ୍ୟ ଦିଶେ
ଚତୁର୍ଥ ଦିନରେ ପାଦ ଅଗ୍ରଯେ ପ୍ରକାଶେ......

( ଶୂନ୍ୟସଂହିତା, ୩ୟ ଅଧ୍ୟାୟ

## ଶୂନ୍ୟ—ନାମ ସୃଷ୍ଟିର ମୂଳ

ଶୂନ୍ୟରୁ ପ୍ରଣବ ତ୍ରିବୀଜ, ରାମନାମ, ଗାୟତ୍ରୀ, ଗ୍ରନ୍ଥ ଆଦି ସୃଷ୍ଟି ହୋଇଥିବା ବିଷୟ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟର ବହୁ ସ୍ଥଳରେ ବର୍ଣ୍ଣିତ ହୋଇଛି । ଏସମସ୍ତ ବର୍ଣ୍ଣନା ଉପନିଷଦୀୟ ବର୍ଣ୍ଣନାର ଅନୁସରଣ କରିଛିମାତ୍ର ।

ପରଚେ ଗୀତାରେ ଦ୍ୱାରକା ଦାସ ଲେଖିଛନ୍ତି—

ମହାଶୂନ୍ୟରୁ ଓଁ କାର ବାହାର । ଓଁ କାର ଘରୁ ବଉଣ ବାହାର
ଚଉଣ ଅକ୍ଷର ଗାୟତ୍ରୀମାତା । ବୀଜ ଆଠ ଅକ୍ଷର ଓଁକାର ପିତା
ଏଣୁ ସେ ଓଁକାର କଥା ଅପାର । କୋଟି କୋଟି ବ୍ରହ୍ମଣ୍ଡହୁଁ ବାହାର
ଓଁ କାରୁ ଋଗ୍‌ବେଦ ଜନମିଲେ । ଓଁ କାରୁ ସୁରଲୋକ ଜାତ ହେଲେ

(ପରଚେଗୀତା ୨୫ ଅଧ୍ୟାୟ)

ବଳରାମ ଦାସ ବିରାଟ ଗୀତାରେ ଲେଖିଛନ୍ତି—

ମହାଶୂନ୍ୟରୁ ଶୂନ୍ୟ ହେଲା, ସେ ଶୂନ୍ୟ ଅର୍ଦ୍ଧମାତ୍ରା ହେଲା
ଅର୍ଦ୍ଧମାତ୍ରାରୁ ସେ ଓଁ କାର, ଓଁ କାରୁ ତ୍ରିବୀଜ ବାହାର

(ବିରାଟ ଗୀତା ୫ମ ଅଧ୍ୟାୟ)

ଜଗନ୍ନାଥ ଦାସ ତୁଳାଭିଣାରେ ଲେଖିଛନ୍ତି—

ଅବ୍ୟକ୍ତ ବ୍ରହ୍ମ ଶୂନ୍ୟ ଜ୍ୟୋତି । ତା ତହୁଁ ବୃକ୍ଷ ଉତପତ୍ତି
ସେ ବୃକ୍ଷ ତିନିଶାଖା ହେଲା । ମନ୍ତ୍ର ବୀଜସେ ବୋଲାଇଲା
ମନ୍ତ୍ରବୀଜରୁ ଷଡ଼ାକ୍ଷର । ନିର୍ଗୁଣ ବୋଲନ୍ତି ଈଶ୍ୱର
X X X
ରାମ ନାମ ଯେ ବେଦହୋଇ । ଶୂନ୍ୟ ବ୍ରହ୍ମରୁ ଜାତ ସେହି

(୧ମ ଅଧ୍ୟାୟ)

ଉପରୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ଅନୁମେୟ ଯେ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର ଶୂନ୍ୟବାଦ ବୌଦ୍ଧଧର୍ମର ଶୂନ୍ୟବାଦ ଠାରୁ ଭିନ୍ନ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଶୂନ୍ୟ ହେଉଛନ୍ତି ସର୍ବବ୍ୟାପି ଜ୍ୟୋତିର୍ମୟ ବ୍ରହ୍ମ, ନିର୍ଗୁଣ ପୁରୁଷ ଏବଂ ସ୍ରଷ୍ଟା । ବୌଦ୍ଧ ସାହିତ୍ୟର ଶୂନ୍ୟ ଏହି ପରିକଳ୍ପନାରୁ ପୃଥକ୍ । ବୌଦ୍ଧଧର୍ମର ମାଧ୍ୟମିକଶାଖାର ବ୍ୟାଖ୍ୟା ଅନୁଯାୟୀ ଶୂନ୍ୟ ଐକାନ୍ତିକ ଭାବରେ ସତ୍ ନୁହେଁ କିମ୍ବା ଅସତ୍ ମଧ୍ୟ ନୁହେଁ । ବସ୍ତୁତଃ ଏହାର ସ୍ୱରୂପ ହେଉଛି ସତ୍ ଏବଂ ଅସତ୍‌ର ଏକ ମଧ୍ୟବିନ୍ଦୁ ।

ଅସ୍ତୀତି ନାସ୍ତୀତି ନ୍ତଭେଽପି, ଅନ୍ତା
ଶୁଚ୍ଚୋ ଅଶୁଦ୍ଧୀତି ଇମେଽପି ଅନ୍ତା
ତସ୍ମାଦୁଭେ ଅନ୍ତ ବିବର୍ଜୟିତ୍ୱା
ମଧ୍ୟେ ହି ସ୍ଥାନଂ ପ୍ରକରୋତି ପଣ୍ଡିତଃ

(ସମାଧିରାଜସୂତ୍ର)

ମାଧ୍ୟମିକ କାରିକା ଗ୍ରନ୍ଥରେ କୁହାଯାଉଛି— ଶୂନ୍ୟତତ୍ତ୍ୱ ନୁହେଁ କି ଅସତ୍ ନୁହେଁ କିମ୍ବା ଏହି ଉଭୟାତ୍ମକ ନୁହେଁ । ଏହା ଚତୁଷ୍କୋଟି ବିନିର୍ମୁକ୍ତ

ନ ସନ୍ ନାସନ୍ ସଦସନ୍ନ ଚାପ୍ୟନୁଭୟାତ୍ମକମ୍
ଚତୁଷ୍କୋଟି ବିନିର୍ମୁକ୍ତଂ ତତ୍ତ୍ୱଂ ମାଧ୍ୟମିକା ବିଦୁଃ

ମାଧ୍ୟମିକ ଶାଖାର ପ୍ରଧାନ ବୌଦ୍ଧାଚାର୍ଯ୍ୟ ଚନ୍ଦ୍ରକୀର୍ତ୍ତିଙ୍କ ମତରେ ଶୂନ୍ୟତା ହେଉଛି ଏକ ମଧ୍ୟମ ମାର୍ଗ । "ମଧ୍ୟମୋ ମାର୍ଗ ଇତ୍ୟୁଚ୍ୟତେ"

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଶୂନ୍ୟ ଶବ୍ଦର ବ୍ୟବହାର ବାରମ୍ବାର କରାଯାଇଥିଲେ ହେଁ ଏହା ବୌଦ୍ଧଧର୍ମର ଶୂନ୍ୟଭଳି ଅବର୍ଣ୍ଣନୀୟ ଏକ କାଳ୍ପନିକ ମଧ୍ୟମମାର୍ଗ ନୁହେଁ ବା ମଧ୍ୟମ ବିନ୍ଦୁ ନୁହେଁ ବରଂ ଏହା ଏକ ଆଦ୍ୟବିନ୍ଦୁ, ଯେଉଁଠୁ ସମସ୍ତ ସୃଷ୍ଟି ହୋଇ ବିଳୀନ ହୁଏ । ବେଦାନ୍ତ ବର୍ଣ୍ଣିତ ବ୍ରହ୍ମତତ୍ତ୍ୱର ଏହା ଏକ ଅନ୍ୟରୂପ, ବ୍ରହ୍ମଙ୍କ ଭଳି ଏହା ନିର୍ଗୁଣ, ଅରୂପ ଏବଂ ଏହାର କାର୍ଯ୍ୟକାରିତା ଶକ୍ତି ମଧ୍ୟ ରହିଛି । ଏହା ସୃଷ୍ଟି କରିପାରେ, ସୃଷ୍ଟିଧ୍ୱଂସ କରିପାରେ, ମୁକ୍ତି ଦେଇପାରେ ଏବଂ ସମସ୍ତର ସେ ଦ୍ରଷ୍ଟା, କର୍ତ୍ତା ଭୋକ୍ତା, ଏସବୁ କିଛି ଯେତେ ଶବ୍ଦ, ଯେତେ ମନ୍ତ୍ର, ଯେତେ ଶାସ୍ତ୍ର ସେ ସବୁକୁ ନିଜଠାରୁ ସୃଷ୍ଟି କରିପାରେ । ମହିମା ଧର୍ମରେ ବର୍ଣ୍ଣିତ ଶୂନ୍ୟର ବୌଦ୍ଧଧର୍ମର ଶୂନ୍ୟବାଦ ସହିତ ବରଂ କେତେକ ସାମ୍ୟ ରହିଛି । କିନ୍ତୁ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି କୈନ୍ଦ୍ରିକ ବୈଷ୍ଣବ ଧର୍ମରେ ବର୍ଣ୍ଣିତ ଶୂନ୍ୟ ସମ୍ପୂର୍ଣ୍ଣ ଭାବରେ ବ୍ରହ୍ମବାଚକ । ବଳରାମ ଆଦି ପଞ୍ଚସଖା ଏବଂ ତାଙ୍କର ଶିଷ୍ୟ ପ୍ରଶିଷ୍ୟ ଯେଉଁ ଜ୍ଞାନମିଶ୍ରା ଭକ୍ତି କୈନ୍ଦ୍ରିକ ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ ତାହାର ମୂଳଭିତ୍ତିଥିଲା ଉପନିଷଦ୍, ସ୍ମୃତି, ଗୀତା, ପୁରାଣ, ତନ୍ତ୍ର ଓ ପଞ୍ଚରାତ୍ର ଧର୍ମ । ତେଣୁ ଏ ସବୁଥିରେ ବର୍ଣ୍ଣିତ ବ୍ରହ୍ମତତ୍ତ୍ୱ ସେମାନଙ୍କ ଶୂନ୍ୟ ମଧ୍ୟରେ ରୂପାୟିତ ହୋଇଛି । ମହିମା ଧର୍ମର ଉତ୍ପତ୍ତି ପ୍ରସଙ୍ଗ ଭିନ୍ନ । ଶଙ୍କରାଚାର୍ଯ୍ୟଙ୍କ ବୌଦ୍ଧବିଲୋପୀ ଅଭିଯାନ ଫଳରେ, ଯେଉଁ ଶୂନ୍ୟବାଦୀ ବୌଦ୍ଧ ବଣ ଜଙ୍ଗଲରେ ଆତ୍ମଗୋପନ କରିଥିଲେ, ସେହିମାନଙ୍କ ଆଚରିତ ଧର୍ମ ମହିମାଧର୍ମ ନାମରେ ରୂପାନ୍ତରିତ ହୋଇ ପୁନଃ ଆତ୍ମପ୍ରକାଶ

କରିଥିଲା । ତେଣୁ ମହିମା ଧର୍ମର ଶୂନ୍ୟବାଦକୁ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ ଆଲୋଚନା ଅବକାଶରେ ବିଚାରକୁ ଅଣାଯାଇ ନାହିଁ ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଶୂନ୍ୟ ହେଉଛି ସର୍ବମୟ କର୍ତ୍ତା । ଏହା ବୌଦ୍ଧଧର୍ମର ମଧ୍ୟମ ବାଦ ନୁହେଁ ବରଂ ଆଦ୍ୟ ବାଦ । ନିମ୍ନ ଉଦାହରଣରୁ ତାହା ଲକ୍ଷ୍ୟ କରିଯାଇପାରେ ।

( କ )

ଶୂନ୍ୟରେ ପୂରି ରହିଛି ଆତ୍ମାପୂର୍ଣ୍ଣ ବ୍ରହ୍ମ
ଶୂନ୍ୟ ଚନ୍ଦ୍ରାବଳେ ନିରାକାରକୁ ତୁ ଚିହ୍ନ
ସବୁ ସେ କରୁଛି, ପୁଣି କରାଉଛି ସବେ
ସୃଷ୍ଟି ସ୍ଥିତି ଲୟ ହୁଏ ତାହାର ପ୍ରଭାବ

ଛତ୍ରିଶ ପଟଳ (ଏକାଦଶ ପଟଳ)

( ଖ )

ଶୂନ୍ୟପୁରୁଷ ଉଦାସରେ ରହେ । ଶୂନ୍ୟ ପୁରୁଷ ସବୁ ମାୟା ଭାଙ୍ଗେ
ଶୂନ୍ୟପୁରୁଷ ଦୟାଳୁ ଅଟଇ । ଶୂନ୍ୟପୁରୁଷ ସର୍ବ ଘଟରେ ରହି
ଶୂନ୍ୟପୁରୁଷ କରେ ନଟଘଟ । ଶୂନ୍ୟପୁରୁଷ ଜାଣେ ଛନ୍ଦ କୂଟ
ଶୂନ୍ୟପୁରୁଷ ଅଲଗାରେ ରହି । ଶୂନ୍ୟପରେ ଲୀଳାକରୁଛନ୍ତି ।

ଶୂନ୍ୟସଂହିତା ୭ମ ଅଧ୍ୟାୟ

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ବର୍ଣ୍ଣିତ ଶୂନ୍ୟର ୪ଟି ସ୍ତର ଥିବାର ଦେଖାଯାଇଥାଏ ।

ଅଚ୍ୟୁତାନନ୍ଦ ଲେଖିଛନ୍ତି—

ଶୂନ୍ୟଂ ଶୂନ୍ୟଂ ମହାଶୂନ୍ୟଂ ଶୂନ୍ୟ ମଧ୍ୟେ ନିରଞ୍ଜନଃ
ନିରଞ୍ଜନ ମଧ୍ୟେ ଜ୍ୟୋତିଃ ତଜ୍ଜ୍ୟୋତି ର୍ଭଗବାନ୍ ସ୍ୱୟଂ

ଯଶୋବନ୍ତ ମଧ୍ୟ ପ୍ରେମଭକ୍ତି ବ୍ରହ୍ମ ଗୀତାରେ ଲେଖିଛନ୍ତି—

ସେ ଶୂନ୍ୟପରେ ଜ୍ୟୋତିକାଣ
ତାପରେ ମହାଶୂନ୍ୟ ପୁଣ

ସେ ଶୂନ୍ୟ ପରେ ମହାଠଣା
ଚେତନା ପରେ ମୋରଠଣା

( ପ୍ରେ. ଭ ବ୍ର ଗୀ ପୃ ୫-୬ )

ଉପରୋକ୍ତ ଶୂନ୍ୟର ସ୍ୱରୂପ କଳ୍ପନା ବୌଦ୍ଧଧର୍ମରୁ ଗୃହୀତ ହୋଇନାହିଁ । ଏହି ଅଧ୍ୟାୟର ପ୍ରଥମରୁ ବୈଦିକ କଳ୍ପନାରେ ଥିବା ଶୂନ୍ୟର ସ୍ୱରୂପ ବିଷୟ ଆଲୋଚନା ହୋଇଅଛି । ତେଣୁ ଏହା ନିର୍ବିବାଦରେ କୁହାଯାଇପାରେ ଓଡ଼ିଆଜ୍ଞାନ ମିଶ୍ରା ଭକ୍ତି ସାହିତ୍ୟରେ ବର୍ଣ୍ଣିତ ଶୂନ୍ୟ ଓ ଶୂନ୍ୟର ବିଭିନ୍ନ ସ୍ୱରୂପ ବୈଦିକଧାରାରୁ ଗୃହୀତ ।

---

# ସୃଷ୍ଟି ତତ୍ତ୍ୱ

ସୃଷ୍ଟିର ରହସ୍ୟ ଭେଦ କରିବା ପାଇଁ ମନୁଷ୍ୟ ସବୁ ଯୁଗରେ ଉଦ୍ୟମ ଚଳାଇ ଆସିଛି । ତା ସମ୍ମୁଖରେ ଦେଖାଦେଉଥିବା ବିଶାଳ ବିଶ୍ୱର ବୈଚିତ୍ର୍ୟ, ତାର ନିଜର ସ୍ୱରୂପ ଏବଂ ତାର ଇଚ୍ଛା, ଯାହା ତାହାର ମନୋଭାବକୁ ଏକ ନିର୍ଦ୍ଦିଷ୍ଟ ରୂପ ଦିଏ ଏସବୁର ସୃଷ୍ଟି ରହସ୍ୟ ତା ମନକୁ ସବୁବେଳେ ତତ୍ତ୍ୱସନ୍ଧାନୀ କରି ଆସିଛି । ଏହି ଜିଗିଷା ନେଇ ସେ ଅନେକ କିଛି ତତ୍ତ୍ୱ ଆବିଷ୍କାର କରିଛି । ଯୁଗ ପରେ ଯୁଗ, ବ୍ୟକ୍ତି ବିଶେଷରୁ ବ୍ୟକ୍ତିବିଶେଷ ନେଇ କେତେ କେତେ ନୂତନ ତଥ୍ୟ ସେ ଜ୍ଞାନର ଭଣ୍ଡାରର ଶାସ୍ତ୍ରରେ ସାଇତି ରଖିଛି । ଆଜିର ସନ୍ଧାନୀ ପାଇଁ ସେ ସବୁ ହୁଏତ ବୈଚିତ୍ର୍ୟ ଭରା ହୋଇପାରେ, ତଥାପି ତାହା ମୂଳରେ ଯେ ଏକ ନିର୍ଦ୍ଦିଷ୍ଟ ସତ୍ୟ ସନ୍ଧାନୀ ଦୃଷ୍ଟି ରହିଛି ଏହାକୁ ଅସ୍ୱୀକାର କରି ହେବ ନାହିଁ । ବିଶ୍ୱର ସବୁ ଧର୍ମରେ ଏହି ସୃଷ୍ଟିରହସ୍ୟଭେଦମନୋବୃତ୍ତି ପରିଲକ୍ଷିତ ହୋଇଥାଏ । ଭାରତୀୟ ପରମ୍ପରାରେ ସୃଷ୍ଟିର କାରଣ ଓ କ୍ରମକୁ ବିଭିନ୍ନ ବେଦ, ଉପନିଷଦ, ସଂହିତା, ପୁରାଣ, ତନ୍ତ୍ରଗ୍ରନ୍ଥ ଓ ବିଭିନ୍ନ ଧର୍ମ ସମ୍ପ୍ରଦାୟରେ ବିଭିନ୍ନ ଭାବେ କଳ୍ପନା କରାଯାଇଅଛି । ସେ ସମସ୍ତ ମତବାଦକୁ ପ୍ରଥମେ ଦୁଇଭାଗରେ ବିଭକ୍ତ କରାଯାଇ-ପାରେ । ଯଥା—

୧ । ନିରୀଶ୍ୱର ବାଦ

୨ । ସେଶ୍ୱର ବାଦ

ଈଶ୍ୱରଙ୍କୁ ଯେଉଁଠି ସୃଷ୍ଟିର ମୂଳ କାରଣ ରୂପେ ନିର୍ଦ୍ଦେଶ କରାଯାଇ ଅଛି, ସେତେବେଳେ ତାହା ସେଶ୍ୱରବାଦ ରୂପ ନେଇଛି । ସମସ୍ତ ବେଦ, ଉପ-ନିଷଦ, ସ୍ମୃତି, ସଂହିତା, ପୁରାଣ ଓ କେତେକ ଧର୍ମ ଯଥା ତନ୍ତ୍ରପ୍ରଭାବିତ ଶୈବ ଶାକ୍ତ ଓ ବୈଷ୍ଣବ ଧର୍ମରେ ଏହି ସେଶ୍ୱରବାଦ ପ୍ରକଟିତ ହୋଇଛି । ଅନ୍ୟ ପକ୍ଷରେ ବୌଦ୍ଧ, ଜୈନ, ସାଂଖ୍ୟ, ବୈଶେଷିକ ଓ ଯୋଗଦର୍ଶନରେ ସୃଷ୍ଟିକୁ ଈଶ୍ୱରକୃତ

କୁହା ନଯାଇ ସ୍ୱୟଂ ସୃଷ୍ଟି ଓ ଅନାଦି କୁହାଯାଇଛି । ଏହା ନିରୀଶ୍ୱରବାଦର ପ୍ରକାଶକ ।

ସେଶ୍ୱରବାଦ ମୂଳକ ସୃଷ୍ଟିତତ୍ତ୍ୱକୁ ପୁଣି ଦୁଇପ୍ରକାରରେ ବିଭକ୍ତ କରାଯାଇପାରେ । ଯଥା—

୧ । ସତ୍ତ୍ୱରୁ ସୃଷ୍ଟି

୨ । ଅସତ୍ତ୍ୱରୁ ସୃଷ୍ଟି

ଏଠାରେ ଅସତ୍ ଅର୍ଥ ସତ୍ତ୍ୱା ବିହୀନ ଶୂନ୍ୟାବସ୍ଥାକୁ ବୁଝିବାକୁ ହେବ । ୧୨ଟି ମୁଖ୍ୟ ଉପନିଷଦରୁ କେତେକରେ ଅସତ୍ତ୍ୱରୁ ସୃଷ୍ଟି ହୋଇଥିବା ତତ୍ତ୍ୱ ପ୍ରଚାର କରିଥିଲାବେଳେ, କେତେକ ସତ୍ତ୍ୱରୁ ସୃଷ୍ଟି ହୋଇଥିବା ତତ୍ତ୍ୱ ପ୍ରଚାର କରି ଥାଆନ୍ତି । ଏଥିରେ ବ୍ରହ୍ମଙ୍କର ପରିଣାମବାଦ ଦେଖିବାକୁ ମିଳିଥାଏ । ଏହାଛଡ଼ା ଆଉ କେତେକ ଜଗତକୁ ବ୍ରହ୍ମଙ୍କର ବିବର୍ତ୍ତ ବା ଭ୍ରାନ୍ତିରୂପ କହିଥାଆନ୍ତି । ଆଚାର୍ଯ୍ୟ ଶଙ୍କରଙ୍କର ଏହି ମତକୁ ବିବର୍ତ୍ତବାଦ କୁହାଯାଇଥାଏ ।

ସତ୍ତ୍ୱରୁ ସୃଷ୍ଟି—

ଛାନ୍ଦୋଗ୍ୟ ଉପନିଷଦରେ କୁହାଯାଇଛି—

ସଦେବ ଆସୀଦେକମେବା ଦ୍ୱିତୀୟମ୍ (୬ । ୨ । ୧) ଅର୍ଥାତ୍ ସୃଷ୍ଟି ପୂର୍ବରୁ ଏଇ ଜଗତ ଏକ ଅଦ୍ୱିତୀୟ ସତ୍ତ୍ୱା ବିଶିଷ୍ଟ ଥିଲା । ସେଥିରୁ ସୃଷ୍ଟି ହୋଇଛି ।

ଏତରେୟ ଉପନିଷଦରେ କୁହାଯାଇଛି—

ଓଁ ଆତ୍ମା ବା ଇଦମେକ ଏକାଗ୍ର ଆସୀତ......

ନାନ୍ୟତ୍ କିଞ୍ଚନମିଷତ୍ । ସ ଇକ୍ଷତ ଲୋକାନ୍ନୁ ସୃଜାଇତି ।

ସ ଇମାନ୍ ଲୋକାନ୍ ସୃଜତ (ସୃଜତ୍)

ଅର୍ଥାତ୍—ଏହି ସୃଷ୍ଟି ପୂର୍ବରୁ ପ୍ରଥମେ ଏକମାତ୍ର ଆତ୍ମା (ଏଠାରେ ବ୍ରହ୍ମ ଅର୍ଥରେ ଗୃହୀତ) ଥିଲେ । ତାଙ୍କ ଛଡ଼ା ଆଉ ଅନ୍ୟ କେହି ଚେଷ୍ଟା କରିବାକୁ ନଥିଲେ । ସେହି ଆତ୍ମା "ମୁଁ ଲୋକଗୁଡିକ ସୃଷ୍ଟି କରିବି" ଏହିପରି ଚିନ୍ତା କଲେ । ସେ ଏହି ଲୋକଗୁଡ଼ିକୁ ସୃଷ୍ଟି କଲେ ।

ଶ୍ୱେତାଶ୍ୱତର ଉପନିଷଦରେ କୁହାଯାଇଛି—ସୃଷ୍ଟିର ମୂଳ କାରଣ ରୂପେ ଅନେକ ପ୍ରକାରେ ଚିନ୍ତା କରାଯାଇଛି । କେଉଁଠାରେ ଆକସ୍ମିକ ଘଟଣାକୁ କାରଣ କୁହାଯାଇଛି, କେଉଁଠାରେ ଆତ୍ମାକୁ ଜଗତ୍‌ର କାରଣ କୁହାଯାଇଛି, କେଉଁଠାରେ କର୍ମକୁ କାରଣ କୁହାଯାଇଛି, କେଉଁଠାରେ କାଳକୁ ଓ କେଉଁଠାରେ ପଞ୍ଚମହାଭୂତକୁ ସୃଷ୍ଟିର କାରଣ କୁହାଯାଇଛି । କେତେକ ଜିଜ୍ଞାସୁପୁରୁଷ ଏହି ଗୂଢ଼ରହସ୍ୟ ଜାଣିବା ପାଇଁ ଧ୍ୟାନ କରୁ କରୁ ଅନୁଭବ କଲେ—କାଳ ସ୍ୱଭାବ, ନିୟତି ପଞ୍ଚଭୂତ, ଆତ୍ମା ଆଦି ଯେତେକକୁ ସୃଷ୍ଟିର କାରଣ କୁହାଯାଇଛି ସେହି ସମସ୍ତ କାରଣର ଅଧିଷ୍ଠାତା ସ୍ୱାମୀ ହେଉଛନ୍ତି ପରମେଶ୍ୱର ଏବଂ ସେ ହିଁ ଏ ଜଗତର କାରଣ—

ଯଃ କାରଣାନି ନିଖିଳାନି ତାନି
କାଳାତ୍ମା ଯୁକ୍ତାନ୍ୟଧି ତିଷ୍ଠତ୍ୟେକଃ (୧ । ୩)

ତୈତ୍ତିରୀୟ ଉପନିଷଦରେ ମଧ୍ୟ ଆତ୍ମାକୁ (ବ୍ରହ୍ମଙ୍କୁ) ସୃଷ୍ଟିର ମୂଳ କାରଣ କୁହାଯାଇ କୁହାଯାଇଛି—

ତସ୍ମାଦ୍‌ବା ଏତସ୍ମାଦାତ୍ମନଃ ଆକାଶଃ ସମ୍ଭୂତଃ
ଆକାଶାଦ୍ ବାୟୁଃ, ବାୟୋରଗ୍ନିଃ, ଅଗ୍ନେରାପଃ
ଅଦ୍‌ଭ୍ୟଃ ପୃଥିବ୍ୟା ଔଷଧୟଃ
ଓଷଧୀ ଭ୍ୟୋଽନ୍ନମ୍, ଅନ୍ନାଦ୍‌ରେତଃ ରେତସଃ ପୁରୁଷଃ… (୨-୩)

ପୁଣି ସେହି ତୈତ୍ତିରୀୟ ଉପନିଷଦରେ କୁହାଯାଇଛି ସେହି ବ୍ରହ୍ମ କାମନା କଲେ—ମୁଁ ଅନେକ ରୂପ ଧାରଣ କରି ପ୍ରକଟ ହେବି ।

ସୋଽକାମୟତ । ବହୁ ସ୍ୟାଂ ପ୍ରଜାୟେୟେତି ।

ସ ତପୋଽତପ୍ୟତ । ସ ତପସ୍ତପ୍ତ୍ୱା ଇଦଂ ସର୍ବ ମସୃଜତ ଯଦି ଦଂ କିଂଚ । ତତ୍ ସୃଷ୍ଟ୍ୱା ତଦେବାନୁ ପ୍ରାବିଶତ୍ । ତଦନୁ ପ୍ରବିଶ୍ୟ ସଚ୍ଚ ତ୍ୟଚ୍ଚାଭବତ୍ ।
(୬ । ୪)

ଏହିଭଳି କେତେକ ଉପନିଷଦରେ ସତ୍ ବା ସତ୍ତ୍ୱଯୁକ୍ତ ବ୍ରହ୍ମଙ୍କଠାରୁ ସୃଷ୍ଟି ହୋଇଥିବା ବିଷୟରେ ଉଲ୍ଲେଖ ଥିଲା ବେଳେ ଅନ୍ୟ କେତେକ ଉପନିଷଦରେ ଅସତ୍ ବା ସତ୍ତ୍ୱା ବିହୀନ ଶୂନ୍ୟାବସ୍ଥାରୁ ସୃଷ୍ଟି ହୋଇଥିବାର ଉଲ୍ଲେଖ ଅଛି ।

## ଅସତ୍‌ରୁ ସୃଷ୍ଟି—

ଛାନ୍ଦୋଗ୍ୟ ଉପନିଷଦରେ କୁହାଯାଇଛି ଯେ, କେହି କେହି କହନ୍ତି ସୃଷ୍ଟି ପୂର୍ବରୁ ଏକ ଅଦ୍ୱିତୀୟ ଅସତ୍ (ସତ୍ତା ବସ୍ତୁର ଶୂନ୍ୟାବସ୍ଥା) ଥିଲା । ଏହି ଅସତ୍‌ରୁ ସମସ୍ତ ଉତ୍ପନ୍ନ ହୋଇଛି ।

> ତଦ୍ଧୈକ ଆହୁରସଦେବେଦମଗ୍ର
> ଆସୀତ୍ ଏକମେବା ଦ୍ୱିତୀୟମ୍ ତସ୍ମାଦସତଃ ସଜ୍ଜାୟତ ।
>
> (ଛାନ୍ଦୋଗ୍ୟ ୬ । ୨ । ୧)

ଋଗ୍‌ବେଦର ନାସଦୀୟ ସୂକ୍ତରେ ମଧ୍ୟ ଅସତ୍‌ରୁ ସୃଷ୍ଟି ହୋଇଥିବା ବିଷୟ କୁହାଯାଇଛି । ଯଥା—

> ନାସ ଦାସୀନ୍ନୋ ସଦାସୀତ୍ତଦାନୀଂ ନାସୀଦ୍ରଜୋ
> ଯୋ ବ୍ୟୋମୋ ପରୋଯତ୍ । ଇତ୍ୟାଦି (୧ । ୧୨୯ । ୧୮)

ଏହି ସୃଷ୍ଟି ପୂର୍ବରୁ ଅସତ୍ ଥିଲା ସେଥିରୁ 'ସତ୍'ର ସୃଷ୍ଟି ହୋଇଛି । ପରମାତ୍ମା ନିଜକୁ ସୃଷ୍ଟି କରିଥିଲେ ।

> ଅସଦ୍‌ବା ଇଦମଗ୍ର ଆସୀତ୍ । ତତୋବୈ ସଦ୍‌ଜାୟତ । ତଦାତ୍ମାନଂ ସ୍ୱୟମକୁରୁତ ।
>
> (ତ୍ରୈତ୍ତିରୀୟବଲ୍ଲୀ ସପ୍ତମ ଅନୁବାକ୍ ପ୍ରଥମ ଶ୍ଳୋକ)

ମନୁ ସ୍ମୃତିରେ ବର୍ଣ୍ଣିତ ଅଛି—

> ଆସୀଦିଦଂ ତମୋଭୂତ ପ୍ରଜ୍ଞାତମ ଲକ୍ଷଣମ୍
> ଅପ୍ରତର୍କ୍ୟମବିଜ୍ଞେୟମ୍ ପ୍ରସୁପ୍ତ ମିବ ସର୍ବତଃ (୧ । ୫)

ଅର୍ଥାତ୍ ଏହି ବିଶ୍ୱ ପ୍ରଥମେ ତମରେ ଲୀନ ଥିଲା । ଏହା ଅଦୃଶ୍ୟ, କଳ୍ପନାତୀତ, ସୁପ୍ତ, ଅପ୍ରତର୍କ୍ୟ ଓ ଅବିଜ୍ଞେୟ ଥିଲା ।

ବେଦ ଉପନିଷଦ୍ ଓ ସ୍ମୃତି ଗ୍ରନ୍ଥରେ ବର୍ଣ୍ଣିତ ସୃଷ୍ଟି ସମ୍ପର୍କିତ ଏହି ଅସତ୍ କାରଣବାଦ ଓ ସତ୍‌କାରଣବାଦ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟର ସୃଷ୍ଟିତତ୍ତ୍ୱକୁ ଅନେକାଂଶରେ ପ୍ରଭାବିତ କରିଅଛି । କିନ୍ତୁ ଏଠାରେ ଏହା ସ୍ମରଣୀୟ ଯେ ଓଡ଼ିଆ

ଜ୍ଞାନମିଶ୍ରା ଭକ୍ତ ସାଧକଙ୍କର 'ଅସତ୍' ତତ୍ତ୍ୱବିହୀନ ନୁହେଁ । ଅସତ୍ ବା ଶୂନ୍ୟ ହେଉଛନ୍ତି । ସର୍ବଶକ୍ତିସମ୍ପନ୍ନ ପୁରୁଷ ବିଶେଷ ବା ନିର୍ଗୁଣ ବ୍ରହ୍ମ । ପୂର୍ବରୁ ଶୂନ୍ୟବାଦ ବର୍ଣ୍ଣନା ପ୍ରସଙ୍ଗରେ ଏହା ଦର୍ଶାଇ ଦିଆଯାଇଛି । ସେହି ନିର୍ଗୁଣ ବ୍ରହ୍ମ ହେଉଛନ୍ତି ସର୍ବଶକ୍ତିସମ୍ପନ୍ନ ।

ଶ୍ୱେତାଶ୍ୱତର ଉପନିଷଦ କହେ—"ପରାସ୍ୟ ଶକ୍ତିର୍ବିବିଧୈବ ଶ୍ରୂୟତେ ସ୍ୱାଭାବିକୀ ଜ୍ଞାନବଳ କ୍ରିୟାଚ" । (୬ । ୮)

ଅର୍ଥାତ୍ ଜ୍ଞାନବଳ ଏବଂ କ୍ରିୟା ତାଙ୍କର ସ୍ୱାଭାବିକୀ ଶକ୍ତି ଅଟେ ।

ପଞ୍ଚରାତ୍ର ଧର୍ମରେ ଇଚ୍ଛାଶକ୍ତି, କ୍ରିୟାଶକ୍ତି ଓ ଜ୍ଞାନ ଶକ୍ତିକୁ ବ୍ରହ୍ମଙ୍କର ତ୍ରିବିଧ ଶକ୍ତି-ରୂପରେ ବର୍ଣ୍ଣନା କରାଯାଇଛି । ଏହି ପରମ୍ପରାର ଅନୁସରଣରେ ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତ ସାଧକ ବୃନ୍ଦ ଶୂନ୍ୟ ପୁରୁଷ ବା ନିର୍ଗୁଣ ବ୍ରହ୍ମଙ୍କୁ ତ୍ରିବିଧ ଶକ୍ତି ଯୁକ୍ତ ଭାବେ ଚିହ୍ନିତ କରିଛନ୍ତି । ସୃଷ୍ଟି କାର୍ଯ୍ୟ ନିର୍ଗୁଣ ବ୍ରହ୍ମଙ୍କର ଇଚ୍ଛାଶକ୍ତି ଦ୍ୱାରା କିପରି ପରିଚାଳିତ ତାହା ଚୈତନ୍ୟ ଦାସଙ୍କ ଏହି ବର୍ଣ୍ଣନାରୁ ଲକ୍ଷ୍ୟ କରାଯାଇପାରେ ।

ଯଥା- –

ଇଚ୍ଛାସୁଖେ ତାହାର ମହିମା ବିକାଶଇ
ଅରୂପ ହୋଇ ନିଜ ସ୍ୱରୂପ ପ୍ରକାଶଇ
ଇଚ୍ଛା ହେଲେ ଏକ ରୂପୁଁ ଅନେକ ରୂପଧରେ
ତାର ଇଚ୍ଛା ହୋଇଲେ ଅନେକ ରୂପ କରେ
ଇଚ୍ଛା ସୁଖେ ଖେଳଇ ସେ ଇଚ୍ଛା ସୁଖେ ରହେ
ଇଚ୍ଛା ହେଲେ ଯାବତୀୟ ଶରୀରକୁ ବହେ
ପ୍ରଥମେ ନିରାକାର ସ୍ୱରୂପେକ ହୋଇ
ବ୍ରହ୍ମା ସ୍ୱରୂପ ହୋଇ ପୁଣି ତା ଅଙ୍ଗ ପ୍ରକାଶଇ

(ବିଷ୍ଣୁ ଗର୍ଭପୁରାଣ- ପୃ୨୩)

ଅଚ୍ୟୁତାନନ୍ଦ ଠିକ୍ ସେହିଭଳି ଲେଖିଛନ୍ତି—

ଏମନ୍ତ କେତେକ ଯୁଗ ଅନ୍ତରରେ
ଇଶ୍ୱର କଲେ ବିଚାର
ବ୍ରହ୍ମାଣ୍ଡ ଉତ୍ପତ୍ତି ହୋଇଣ ଯେ ଥିବ
ପୂର୍ବେ ଯେମନ୍ତ ପ୍ରକାର । । ୧ ।

ଇଚ୍ଛା କଲ୍ପ ମାଝେ ଜନ୍ମ ଅଣ୍ଡଭିଙ୍ଖେ
ଶୂନ୍ୟରୁ ହୋଇଲା ଶୂନ୍ୟ
ତହିଁରୁ ଶବଦ ଅନାହତ ନାଦ
ଶୂନ୍ୟେ ପ୍ରକାଶିତ ଜ୍ଞାନ ।୨।

ରଜ ତମ ସତ୍ତ୍ୱ ତିନିଅନ୍ତେ ଏକତ୍ର
ଜାତ ହୋଇଲା ଆକାର
ପଞ୍ଚମାତ୍ରା ସଙ୍ଗେ ଯେନ କାୟା ଯୋଗେ
ବୋଲାଇଲା ଏକାକ୍ଷର ।୩।

ଆକାର ସଙ୍ଗତେ ବୀଜ ଯେ ମିଶନ୍ତେ
ବୋଲାଇଲା ପଞ୍ଚମାତ୍ରା
ରଜ ବୀର୍ଯ୍ୟ ଶୂନ୍ୟ ଶବଦ ମିଶନ୍ତେ
ଦେହ ହୋଇଲା ନିର୍ମିତା
( ଅଚ୍ୟୁତାନନ୍ଦଙ୍କ ଜନ୍ମ ଶରଣ ପଞ୍ଚଦଶ ଗୀତ )

ଦ୍ୱାରକା ଦାସ ମଧ୍ୟ ତ୍ରୟୋଦଶ ସ୍କନ୍ଧରେ ଲେଖିଛନ୍ତି—

ପରମ ଆତ୍ମା ହଂସ ଦୀକ୍ଷା । ସୃଷ୍ଟି ତିଆଣ କଲା ଇଚ୍ଛା
ଡିମ୍ବେକ ପଡ଼ିଲା ଜଳରେ । ପାକ ହୋଇଲା ସେ ଡିମ୍ବ ଧରେ
ଡିମ୍ବ ତାପିଲା ପଞ୍ଚ ତତ୍ତ୍ୱେ । ପାକ ହୋଇଲା ଡିମ୍ବ ଅନ୍ତେ
ସେ ଡିମ୍ବ ବେନି ଫାଳ କଲା । ଫାଳକେ ପୃଥିବୀ ହୋଇଲା ।
( ୧ମ ଅଧ୍ୟାୟ )

ଅଚ୍ୟୁତାନନ୍ଦ ଛୟାଳିଶ ପଟଳରେ ଲେଖିଛନ୍ତି—
କାଳ କରାଳ ଉତ୍ପତ୍ତି ଇଚ୍ଛା ଶକ୍ତି ବଳେ
ଜ୍ଞାନ କ୍ରିୟାରୁ ସମ୍ଭବ ହୋଇଲେ ସକଳେ
( ଅଷ୍ଟପଟଳ )

## ଜଗତ୍ ସୃଷ୍ଟି—

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାଧକଙ୍କ ଦ୍ୱାରା ବର୍ଣ୍ଣିତ ସୃଷ୍ଟିତତ୍ତ୍ୱରେ ପଞ୍ଚସଖା ଧର୍ମର ସାଂଖ୍ୟ ବେଦାନ୍ତ ଚିନ୍ତାଧାରା ସମନ୍ୱିତ ସୃଷ୍ଟିତତ୍ତ୍ୱ, ବେଦାନ୍ତର ଓ ତନ୍ତ୍ରର

ସୃଷ୍ଟିତତ୍ତ୍ୱ ପ୍ରଭୃତିର ଅନ୍ତଃସ୍ୱର ଅନୁଭୂତ ହୋଇଥାଏ । ଏଥିରେ ବୌଦ୍ଧଧର୍ମର ପ୍ରଭାବ ଆଦୌ ଚିନ୍ତା କରାଯିବା ଉଚିତ୍ ନୁହେଁ ।

ପଞ୍ଚରାତ୍ର ଧର୍ମର ସୃଷ୍ଟିତତ୍ତ୍ୱ ଶ୍ରୀମଦ୍‌ଭାଗବତରେ ରୂପାୟିତ ହୋଇଅଛି । ଏଥିରେ ସାଂଖ୍ୟର ସୃଷ୍ଟିତତ୍ତ୍ୱ ସମନ୍ୱିତ ହୋଇଥିଲେ ମଧ୍ୟ ସାଂଖ୍ୟ ଦର୍ଶନରେ ପ୍ରକୃତିକୁ ଯେପରି ପୁରୁଷ ଅଧୀନରୁ ମୁକ୍ତ ଓ ସ୍ୱତନ୍ତ୍ର କୁହାଯାଇଛି, ତାହା ଏଥିରେ କୁହାଯାଇନାହିଁ । ବରଂ ପ୍ରକୃତି ବା ମାୟାକୁ ପୁରୁଷର ଅଧୀନ କୁହାଯାଇଛି । ଏହା ଉପନିଷଦୀୟ ଚିନ୍ତାଧାରା ପ୍ରସୂତ, ଶ୍ୱେତାଶ୍ୱତର ଉପନିଷଦରେ କୁହାଯାଇଛି—

"ମାୟା ତୁ ପ୍ରକୃତିଂ ବିଦ୍ୟାନ୍, ମାୟିନଂ ତୁ ମହେଶ୍ୱରମ୍, ତସ୍ୟା ବୟବଭୂତୈସ୍ତୁ ବ୍ୟାପ୍ତଂ ସର୍ବ ମିଦଂ ଜଗତ୍ ।" ଶ୍ରୀମଦ୍‌ଭାଗବତରେ ପ୍ରକୃତିକୁ ବ୍ରହ୍ମଙ୍କର ତ୍ରିଶକ୍ତି ( ଚିତ୍ ଶକ୍ତି ବା ପରାଶକ୍ତି, ବହିରଙ୍ଗା ଶକ୍ତି ବା ଅପରା ଶକ୍ତି ଏବଂ ଜୀବଶକ୍ତି ବା ତଟସ୍ଥା ଶକ୍ତି ) ମଧ୍ୟରୁ ଏକତମ ଶକ୍ତି - ବହିରଙ୍ଗା ଶକ୍ତି ରୂପେ ଗ୍ରହଣ କରାଯାଇଛି । ସାଂଖ୍ୟ ଦର୍ଶନ ଅନୁଯାୟୀ ଜଡ଼ ପ୍ରକୃତି ସ୍ୱତଃ ଜଗତରେ ପରିଣତ ହୁଏ କିନ୍ତୁ ଭାଗବତ ମତରେ ବ୍ରହ୍ମଙ୍କର ଚିତ୍ ଶକ୍ତି ପ୍ରକୃତି ମଧ୍ୟରେ ପ୍ରବେଶ କରି ଜଗତରେ ପରିଣତ ହୁଏ । ତେଣୁ ଜଗତକୁ କ୍ଷର ବ୍ରହ୍ମ କୁହାଯାଇଥାଏ ।

## ସାଂଖ୍ୟର-ସୃଷ୍ଟିତତ୍ତ୍ୱ—

ସାଂଖ୍ୟ ଦର୍ଶନ ଅନୁଯାୟୀ ପୁରୁଷ ନିଷ୍କ୍ରିୟ ଓ ଚେତନାଶକ୍ତି ବିଶେଷ ଓ ପ୍ରକୃତି ଜଡ଼ ସକ୍ରିୟ ତଥା ତ୍ରିଗୁଣାତ୍ମିକା । ଏମାନଙ୍କ ମଧ୍ୟରୁ କେହି ଏକାକୀ ସୃଷ୍ଟି କରିବାକୁ ସକ୍ଷମ ନୁହନ୍ତି । ତେଣୁ ଉଭୟଙ୍କର ସଂଯୋଗରେ ହିଁ ସୃଷ୍ଟିର ବିକାଶ ଘଟେ । ପ୍ରଳୟ କାଳରେ ପ୍ରକୃତିର ଗୁଣ ସମୂହ ସାମ୍ୟାବସ୍ଥା ଲାଭ କରିଥାଏ ଓ ପୁରୁଷଠାରୁ ଦୂରରେ ଅବସ୍ଥାନ କରିଥାଏ । କାଳର ପ୍ରଭାବ ଯୋଗେ ହଠାତ କୌଣସି କାରଣରୁ ପ୍ରକୃତି ପୁରୁଷର ନିକଟବର୍ତ୍ତୀ ହେଲେ ପୁରୁଷ ସହିତ ତାହାର ସଂଯୋଗ ଘଟେ । ଏହି ସଂଯୋଗ ଫଳରେ ପ୍ରକୃତିରେ ଗୁଣ ତ୍ରୟରେ ବିକ୍ଷୁବ୍ଧ ଅବସ୍ଥା ସୃଷ୍ଟି ହୋଇ ତାହାର ସାମ୍ୟାବସ୍ଥା ନଷ୍ଟ ହୁଏ । ପୁରୁଷ ସୃଷ୍ଟି କାର୍ଯ୍ୟ କରେ ନାହିଁ । ସେ ନିଷ୍କ୍ରିୟ । କେବଳ ଦ୍ରଷ୍ଟା, ସାକ୍ଷୀ ଓ ଉଦାସୀନ । ପ୍ରକୃତିରେ ଗୁଣକ୍ଷୋଭ ହେତୁ ପ୍ରଥମେ ମହତ୍ ତତ୍ତ୍ୱ ବା ବୁଦ୍ଧିର ବିକାଶ ଘଟେ ତତ୍ପରେ ଅହଂକାରର ବିକାଶ ଘଟେ । ଏହା ୩ ପ୍ରକାର ଯଥା—

୧- ସତ୍ତ୍ୱଗୁଣମୁଖ୍ୟ ସାତ୍ତ୍ୱିକଅହଙ୍କାର ବା ବୈକୃତ ଅହଙ୍କାର, ୨- ରଜୋଗୁଣପ୍ରଧାନ ରଜସିକଅହଙ୍କାର ବା ତୈଜସ୍ ଅହଙ୍କାର ଏବଂ ୩- ତମୋଗୁଣପ୍ରଧାନ ତାମସ୍ ଅହଙ୍କାର ଅଟେ । ସାତ୍ତ୍ୱିକଅହଙ୍କାରରୁ ମନ, ପଞ୍ଚଜ୍ଞାନେନ୍ଦ୍ରିୟ ପଞ୍ଚ କର୍ମେନ୍ଦ୍ରିୟର ବିକାଶ ଘଟେ । ତାମସଅହଙ୍କାରରୁ ପଞ୍ଚ-ତନ୍ମାତ୍ର ଏବଂ ପଞ୍ଚମହାଭୂତର ବିକାଶ ଘଟେ ଏବଂ ସେଥିରେ ଶରୀର ଗଠିତ ହୁଏ । ଏହିପରି ସୃଷ୍ଟିର କ୍ରମ ବିକାଶ ଘଟେ । ସାଂଖ୍ୟଦର୍ଶନର ସୃଷ୍ଟିତତ୍ତ୍ୱରେ ୨୫ଟି ତତ୍ତ୍ୱକୁ ଗଣନା କରାଯାଇଛି, ସେଗୁଡ଼ିକ ହେଉଛି—

ପ୍ରକୃତି-୧
ପୁରୁଷ-୧

| | | |
|---|---|---|
| ପ୍ରକୃତି ବିକୃତି- | ମହତ୍ ୧ | |
| | ଅହଙ୍କାର ୧ | ୭ |
| | ପଞ୍ଚତନ୍ମାତ୍ର ୫ | |

| | | |
|---|---|---|
| ବିକୃତି | | |
| ଏକାଦଶଇନ୍ଦ୍ରିୟ | ପଞ୍ଚକର୍ମେନ୍ଦ୍ରିୟ | |
| + | ପଞ୍ଚଜ୍ଞାନେନ୍ଦ୍ରିୟ | ୧୬ |
| ପଞ୍ଚମହାଭୂତ | ମନ | |
| | ପଞ୍ଚମହାଭୂତ | |
| | | ୨୫ |

ସାଂଖ୍ୟ ଦର୍ଶନକୁ ପରିଣାମବାଦ କୁହାଯାଇ ଥାଏ । ଦୁଗ୍ଧ ଯେପରି ଦଧିରେ ପରିଣତ ହୁଏ ସେହିପରି ଅବ୍ୟକ୍ତ ପ୍ରକୃତି ପୁରୁଷର ଚେତନା ଶକ୍ତି ସଂସ୍ପର୍ଶରେ ଆସି ଜଗତରେ ସ୍ୱତଃ ପରିଣତ ହୋଇଥାଏ ।

ସାଂଖ୍ୟ ଦର୍ଶନରେ ପ୍ରକୃତିକୁ ଉପାଦାନ କାରଣ ରୂପେ ଗ୍ରହଣ କରାଯାଇ ଅଛି ।

ବ୍ରହ୍ମସୂତ୍ରରେ ବ୍ୟାସଦେବ ଏହି ମତବାଦକୁ ବିରୋଧ କରି ବ୍ରହ୍ମଙ୍କୁ ଉଭୟ ନିମିତ୍ତକାରଣ ଓ ଉପାଦାନକାରଣ ରୂପେ ଗ୍ରହଣ କରିଛନ୍ତି । ବ୍ରହ୍ମସୂତ୍ରରେ ସେ

ଲେଖିଛନ୍ତି "ଆତ୍ମକୃତେଃ ପରିଣାମାତ୍" ( ୧ । ୪ । ୬ ) ଅର୍ଥାତ୍ ବ୍ରହ୍ମ ନିଜକୁ ଜଗତ୍ ରୂପରେ ପରିଣତ କରିଲେ । ଏଥିରୁ ଜଣାଯାଏ ସେ ହୋଉଛନ୍ତି ଜଗତର ଉପାଦାନ କାରଣ । ବ୍ରହ୍ମ କାଂର ନିମିତ୍ତ କାରଣ ତାହା ପ୍ରଥମରୁ ଜଣାଇ ଦିଆ-ଯାଇଛି । ତୈତ୍ତିରୀୟ ଉପନିଷଦର "ସୋ ହ କାମୟତ ବହୁସ୍ୟାଂ ପ୍ରଜାୟେୟେତି" ଇତ୍ୟାଦି ବାକ୍ୟ ଗୁଡ଼ିକ ଏ ପ୍ରସଙ୍ଗରେ ଅନୁଧ୍ୟାନ ଯୋଗ୍ୟ । ବ୍ରହ୍ମସୂତ୍ରରେ ପୁନଶ୍ଚ କୁହାଯାଇଛି ଯୋନିଶ୍ଚ ଗୀୟତେ ( ୧ । ୪ । ୨୭ ) ଅର୍ଥାତ୍ ସେ ଯୋନି ରୂପେ କୀର୍ତ୍ତିତ । ଏଠାରେ ଯୋନି ଅର୍ଥ ହେଉଛି ପ୍ରକୃତି ।

ଶ୍ରୀମଦ୍‌ଭଗବଦ୍ ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି—

"ମମଯୋନିର୍ମହଦ୍‌ବ୍ରହ୍ମ ତସ୍ମିନ୍ ଗର୍ଭଂ ଦଧାମ୍ୟହଂ
ସମ୍ଭବଃ ସର୍ବ ଭୂତାନାଂ ତତୋ ଭବତି ଭାରତ" (୧୪।୩)

ଅର୍ଥାତ୍ ମହଦ୍‌ବ୍ରହ୍ମ ( ପ୍ରକୃତି ବା ମାୟା ) ମୋର ଯୋନି ସ୍ୱରୂପ, ମୁଁ ସେଥିରେ ଗର୍ଭାଧାନ କରେ ଏବଂ ସେଥି ଯେ ଗେ ସମସ୍ତ ଭୂତର ଉତ୍ପତ୍ତି ହୁଏ ।

ପ୍ରକୃତି କହିଲେ କଣ ବୁଝାଯାଏ ତାହାମଧ୍ୟ ଶ୍ରୀମଦ୍‌ଭଗବଦ୍ ଗୀତାରେ କୁହାଯାଇଛି—ଶ୍ରୀକୃଷ୍ଣ କହିଛନ୍ତି—

ଭୂମିରାପୋନଳୋ ବାୟୁଃ ଖଂ ମନୋ ବୁଦ୍ଧିରେବଚ,
ଅହଙ୍କାରଂ ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା ।" ( ୭ । )

ଅର୍ଥାତ୍ ମୋର ପ୍ରକୃତି, ଭୂମି, ଜଳ, ବାୟୁ, ଅଗ୍ନି, ଆକାଶ, ମନ, ବୁଦ୍ଧି ଓ ଅହଙ୍କାର ଏହିପରି ଆଠ ଭାଗରେ ବିଭକ୍ତ ।

ଶ୍ରୀମଦ୍‌ଭଗବଦ୍ ଗୀତାରେ ପୁଣି ଶ୍ରୀକୃଷ୍ଣ କହିଛନ୍ତି ମୟା ଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍ ( ୯ । ୧୦ ) ଅର୍ଥାତ୍ ମୋର ଅଧ୍ୟକ୍ଷତାରେ ପ୍ରକୃତି ସଚରାଚର ଜଗତକୁ ସୃଷ୍ଟି କରେ । ତେଣୁ ଏଠାରେ ଜଣାଯାଉଛି ବ୍ରହ୍ମଙ୍କର ଶକ୍ତି ବଳରେ ପ୍ରକୃତିରୁ ସଚରାଚର ଜଗତ୍ ସୃଷ୍ଟି ହୁଏ । ପ୍ରକୃତି ହେଉଛି ତ୍ରିଗୁଣାତ୍ମିକା ଅର୍ଥାତ୍ ସତ୍ତ୍ୱ ରଜ ଓ ତମୋଗୁଣର ସମାହାର । ଏହି ତ୍ରିଗୁଣ ଜଡ଼ ହେତୁ ଏହାର ସୃଷ୍ଟି କରିବାର ସାମର୍ଥ୍ୟ ନାହିଁ । ବ୍ରହ୍ମଙ୍କର ଚତ୍‌ଶକ୍ତି ସେଥିରେ ପ୍ରବେଶ କଲେ ସେଥିରୁ ଜଗତ୍ ସୃଷ୍ଟି ହୁଏ ।

ଶ୍ରୀମଦ୍‌ଭାଗବତରେ କୁହାଯାଇଛି—ସେତେବେଳେ ( ପ୍ରଳୟାବସ୍ଥାରେ ) ସେ ଥିଲେ ସର୍ବାଧିକାରୀ ଏବଂ ଏକମାତ୍ର ଦ୍ରଷ୍ଟା । ସେ ଅନ୍ୟକୌଣସି ଦୃଶ୍ୟ ( ଜଗତ୍ )

ଦେଖିବାକୁ ପାଇଲେ ନାହିଁ । ସେ ନିଜକୁ ଅସତ୍ ( ଶୂନ୍ୟ ) ବୋଲି ମନେକଲେ ଅର୍ଥାତ୍ ସେ ନିଜର ସ୍ୱରୂପକୁ ଦେଖି ପାରିଲେ ନାହିଁ । ସେହି ସମୟରେ ତାଙ୍କଠାରେ ତାଙ୍କର ବହିରଙ୍ଗା ଶକ୍ତି ( ମାୟା ଶକ୍ତି ) ସୁପ୍ତ ଥିଲା କିନ୍ତୁ ତାଙ୍କର ସ୍ୱରୂପଶକ୍ତି ( ଅନ୍ତରଙ୍ଗା ଚିତ୍ ଶକ୍ତି ) ସୁପ୍ତ ନଥିଲା ।

ଦ୍ରଷ୍ଟାଙ୍କର ସେହି ଅନୁସନ୍ଧାନଯୋଗ୍ୟ ଶକ୍ତିହିଁ ସଦସଦାତ୍ମିକା ( ଭାବାଭାବ ରୂପ ) ମାୟା ଅଟେ । ସେହି ମାୟାଦ୍ୱାରା ଭଗବାନ ଏହି ସୃଷ୍ଟି ନିର୍ମାଣ କଲେ । କାଳ ପ୍ରଭାବ ଯୋଗେ ବ୍ରହ୍ମଙ୍କର ନିଜ ମାୟା ଶକ୍ତି ଉପରେ ଦୃଷ୍ଟି ପଡିବାରୁ ତ୍ରିଗୁଣମୟୀ ମାୟା ( ପ୍ରକୃତି ) ଯେତେବେଳେ ବିକ୍ଷୁବ୍ଧ ହେଲା ସେତେବେଳେ ସେହି ବୀର୍ଯ୍ୟବାନ୍ ପୁରୁଷ ( ଚିତ୍‌ଶକ୍ତି ଯୁକ୍ତ ପରମାତ୍ମା ) ସେଥିରେ ନିଜର ବୀର୍ଯ୍ୟ ( ଚିତ୍ ଶକ୍ତି ) ସ୍ଥାପନ କଲେ । ଏହା ଫଳରେ ସେହି ଅବ୍ୟକ୍ତ ମାୟା ( ପ୍ରକୃତି ) ଠାରୁ ମହତ୍ ତତ୍ତ୍ୱ ପ୍ରକାଶିତ ହେଲା । ପ୍ରକୃତିର ତ୍ରିଗୁଣରେ କ୍ଷୋଭ ଜାତ ହେବାରୁ ଅହଙ୍କାରତତ୍ତ୍ୱର ବିକାଶ ଘଟିଲା । ଏହା କାର୍ଯ୍ୟ ( ଅଧିଭୂତ ) ରୂପ, କାରଣ ( ଅଧ୍ୟାତ୍ମ ) ଏବଂ କର୍ତ୍ତା ( ଅଧିଦୈବତ ) ରୂପ ହୋଇଥିବାରୁ ଏଥିରୁ ଭୂତ, ଇନ୍ଦ୍ରିୟ ଏବଂ ମନ ସୃଷ୍ଟି ହେଲା । ଅହଙ୍କାର ତତ୍ତ୍ୱ ତିନିଭାଗରେ ବିଭକ୍ତ ହୋଇ ସାତ୍ତ୍ୱିକଅହଙ୍କାର ( ବୈକାରିକ ) ରୁ ମନ, ରାଜସିକ ଅହଙ୍କାର ( ତୈଜସ ) ରୁ ପଞ୍ଚ ଜ୍ଞାନେନ୍ଦ୍ରିୟ ( ଚକ୍ଷୁ କର୍ଣ୍ଣ ଜିହ୍ୱା ନାସିକା ତ୍ୱକ୍ ) ପଞ୍ଚକର୍ମେନ୍ଦ୍ରିୟ ( ବାକ୍, ପାଦ, ପାଣି, ବାୟୁ ( ଗୁହ୍ୟଦ୍ୱାର ) ଉପସ୍ଥ ( ଲିଙ୍ଗ ) ସୃଷ୍ଟି ହେଲେ । ତାମସ ଅହଙ୍କାରରୁ ପଞ୍ଚତନ୍ମାତ୍ର ( ରୂପ, ରସ, ଶବ୍ଦ ସ୍ପର୍ଶ ଗନ୍ଧ ) ଏବଂ ପଞ୍ଚମହା ଭୂତ ( କ୍ଷିତି, ଅପ୍ , ତେଜ, ମରୁତ ଓ ବ୍ୟୋମ ) ସୃଷ୍ଟି ହେଲେ ଏ ଗୁଡ଼ିକ ପରସ୍ପର ସହିତ ମିଳିତ ହୋଇ ନ ପାରି ପୃଥକ୍ ରହିବାରୁ ସୃଷ୍ଟି କାର୍ଯ୍ୟ କରିପାରିଲେ ନାହିଁ । ତେଣୁ ବ୍ରହ୍ମ ନିଜର କାଳଶକ୍ତିକୁ ସ୍ୱୀକାର କରି ମହତତ୍ତ୍ୱ, ଅହଙ୍କାର, ଏକାଦଶ ଇନ୍ଦ୍ରିୟ ପଞ୍ଚଭୂତ ଓ ପଞ୍ଚ ତନ୍ମାତ୍ର ମଧ୍ୟରେ ଏକାବେଳେକେ ପ୍ରବେଶକଲେ ଏବଂ ନିଜର କ୍ରିୟା ଶକ୍ତି ବଳରେ ସେମାନଙ୍କୁ ମିଳାଇ ଦେଲେ । ବ୍ରହ୍ମଙ୍କର ଅନୁପ୍ରବେଶ ଯୋଗୁଁ ବିରାଟ ପୁରୁଷଙ୍କର ଆବିର୍ଭାବ ହେଲା, ଯାହାଙ୍କଠାରେ ଏହି ଚରାଚର ଜଗତ ବିଦ୍ୟମାନ । ଏହି ବିରାଟ ପୁରୁଷ ପ୍ରଥମ ଜୀବ ହୋଇଥିବାରୁ ସମସ୍ତ ଜୀବଜଗତର ଆତ୍ମା ଏବଂ ଭଗବାନଙ୍କର ଆଦି ଅବତାର ଅଟନ୍ତି ।

ସେହି ବିରାଟ ପୁରୁଷଙ୍କ ଶିରରୁ ସ୍ୱର୍ଗଲୋକ, ପାଦରୁ ପୃଥିବୀ, ନାଭିରୁ ଆକାଶ ଜାତ ହେଲା । ତାଙ୍କ ସତ୍ତ୍ୱ ଗୁଣରୁ ଦେବତା, ରଜୋଗୁଣରୁ ମାନବ ଏବଂ

ସେମାନଙ୍କ ଉପଯୋଗୀ ଗୌ ଆଦ ଓ ତମୋଗୁଣରୁ ଭୂତ ପ୍ରେତାଦ ଜାତ ହେଲେ । ସେହ ବରାଟ ପୁରୁଷଙ୍କ ମୁଖରୁ ବ୍ରାହ୍ମଣ, ଭୁଜରୁ କ୍ଷତ୍ରିୟ, ଜଙ୍ଘରୁ ବୈଶ୍ୟ ଓ ପାଦରୁ ଶୂଦ୍ର ଜାତ ହେଲେ । (ତୃତୀୟ ସ୍କନ୍ଧ ୫ । ୨୪-୫ ଏବଂ ୬ । ୧ ୩୩)

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟର ସୃଷ୍ଟି ତତ୍ତ୍ୱରେ ଶ୍ରୀମଦ୍‌ଭାଗବତର ବର୍ଣ୍ଣିତ ସୃଷ୍ଟି ତତ୍ତ୍ୱର ପ୍ରଭାବ ପରିଲକ୍ଷିତ ହୁଏ ।

ବେଦାନ୍ତସାର ଗୁପ୍ତ ଗୀତାରେ ବଳରାମ ଦାସ ଲେଖିଛନ୍ତି—

ମହାଶୂନ୍ୟରୁ ଶୂନ୍ୟଜାତ
ସେ ଶୂନ୍ୟୁଁ ପ୍ରଣବ ସମ୍ଭୂତ
ସେ ପୁଣି ତ୍ରିଗୁଣ ହୋଇଲା
ତ୍ରିଗୁଣୁଁ ଚଉବିଂଶ ଜାତ
ଏମନ୍ତ କହଇ ବେଦାନ୍ତ । ୯୧ । ୧ମ ଅଧ୍ୟାୟ

ପୁନଶ୍ଚ ସେ ଲେଖିଛନ୍ତି—

ସମସ୍ତ ଅଙ୍ଗେ ଭରିହରି
ରହଇ ଏକ ରୂପ ଧରି । ୪୩ ।
କେବଳ ଆତ୍ମା ସୂକ୍ଷ୍ମ ରୂପ
ସମସ୍ତ ବ୍ୟାପିଣି ସ୍ୱରୂପ
ଏକ ହୋଇଣ ସେ ରହଇ
ଏମନ୍ତେ କେତେ କାଳ ଯାଇ
ଏଣୁ ସ୍ୱେ ବେଦ ନ ମାନଇ
ଏକ ବୋଲିଣ ସେ ବୋଲଇ

× × ×

ପୁଣି ପ୍ରକୃତି ହୋଏ ଜାତ
ବେଦେ ନିଃଶ୍ୱାସରୁ ସମ୍ଭୂତ । ୫୬ ।
ପ୍ରକୃତି ଅଙ୍ଗ ତତ୍ତ୍ୱମାନେ
ବରାଟ ଆଦ ସର୍ବ ଜନେ

ପୁଣି କରନ୍ତି ଏହି ଲୀଳା
ବେଦକୁ ଭେଦ ସର୍ବ କଳା । ୫୯ ।

ବ୍ରହ୍ମାଦି ଶିବ ବିଷ୍ଣୁ କୋଟି
ବିରାଟ ଦେହୁଁ ଜାତ ସେଟି । ୬୦ ।

(ଦ୍ୱାଦଶ ଅଧ୍ୟାୟ)

ଶ୍ରୀମଦ୍ଭାଗବତରେ ବ୍ରହ୍ମାଣ୍ଡକୁ ଯେପରି ବିରାଟ ପୁରୁଷଙ୍କର କାୟା ବୋଲି କୁହାଯାଇଛି ବଳରାମ ଦାସ ମଧ୍ୟ ଅନୁରୂପ ଭାବରେ ଲେଖିଛନ୍ତି —

ବ୍ରହ୍ମାଣ୍ଡ ବିରାଟର କାୟେ
ସେ ଦୁଇ ପ୍ରକାର ଯେ ହୋଏ
ସ୍ଥୂଳ ଯେ ସୂକ୍ଷ୍ମ ଅଣ୍ଡ ହୋଇ
ଏହି ଦୁଇ ପ୍ରକାର ବୋଲାଇ
ଅନନ୍ତ କୋଟି ଯାହା ଦେଖି
ସ୍ଥୂଳ ବୋଲିଣ ତାକୁ କହି
ସୂକ୍ଷ୍ମ ବୋଲିଣ ରୂମ ମୂଳ
ଯହିଁରେ କାହାକ ବିସ୍ତାର

ଅଣ୍ଡ ବୋଲିଣ ଏହି ବ୍ରହ୍ମାଣ୍ଡ । ତତେ କହିବା ସବୁ ଖଣ୍ଡ
ପ୍ରଥମେ ଏକ ଖଣ୍ଡ ହୋଇ । ଦ୍ୱିତୀୟେ ତିନି ଖଣ୍ଡ କହି । ୧୧ ।

ତୃତୀୟେ ଦୁଇଖଣ୍ଡ ହେଲି । ଚତୁର୍ଥେ ସପ୍ତ ଖଣ୍ଡ କଲି
ପଞ୍ଚମେ କଲି ଚତୁର୍ଦ୍ଦଶ । ଏଥିର କହିବା ବିଶେଷ । ୧୩ ।

(ଅଷ୍ଟମ ଅଧ୍ୟାୟ)

ପୁନଶ୍ଚ ସେ ଲେଖିଛନ୍ତି —

ତ୍ରିଗୁଣ ମିଶି ତତ୍ତ୍ୱମାନେ । ବ୍ରହ୍ମାଣ୍ଡ ଜାତ ସର୍ବସ୍ଥାନେ
ସ୍ୱେଦଜ ଉଦ୍ଭିଜ ଅଣ୍ଡଜ । ଜରାୟୁଜ ଯେ ଗୃହବୀଜ
ବ୍ରହ୍ମାଣ୍ଡ ଯାତନା ଏତେକ । ଯାହା କହିଲେ ସର୍ବ ଏକ
ପଞ୍ଚାଶ କୋଟି ଏ ବ୍ରହ୍ମାଣ୍ଡ । ସପତ ଆବରଣ ଖଣ୍ଡ
ପ୍ରଥମେ ମାଟି ବେଢ଼ି ରହି । ଦ୍ୱିତୀୟେ ଜଳ ଯେ ଅଛଇ
ତୃତୀୟେ ଅଗ୍ନି ଯେ ମଣ୍ଡଳ । ଚତୁର୍ଥେ ପବନ ନିର୍ମଳ

ପଞ୍ଚମେ ଆକାଶ ବିସ୍ତାର । ଅଷ୍ଟମେ ଅଛି ଅହଙ୍କାର
ସପ୍ତମେ ମହାତତ୍ତ୍ୱ ଯୋଷି । ଏ ସାତ ଆବରଣ ସେଷି । ୨୩୫ ।

(ବେଦାନ୍ତ ସାର ଗୁପ୍ତ ଗୀତା—ଅଷ୍ଟମ ଅଧ୍ୟାୟ)

ପୁଣି — ଏ ରୂପେ ସପତ ପାତାଳ । ଶୁଣ ହେ ପଣ୍ଡୁ ରଜାବାଳ
ଅତଳ ବିତଳ ନିତଳ । ସୁତଳ ତଳାତଳ ତଳ
ଷଷ୍ଠରେ ରସାତଳ ହୋଇ । ସପ୍ତମେ ପାତାଳ ବୋଲାଇ
ଯେଣୁ ବିରାଟ ପାଦ ତଳ । ତେଣୁଣ ବୋଲନ୍ତି ପାତାଳ । ୧୯୦ ।

(ବେ. ସା. ଗୁ. ଗୀ ଅଷ୍ଟମ ଅଧ୍ୟାୟ)

ଶ୍ରୀମଦ୍ଭାଗବତରେ ପ୍ରକୃତି ବିକୃତିରୁ ବିଭିନ୍ନ ଅହଙ୍କାର ଏବଂ ଅହଙ୍କାରରୁ ଭୂତ, ତନ୍ମାତ୍ର ଓ ଇନ୍ଦ୍ରିୟାଦି ସୃଷ୍ଟି ହେବା କଥା କୁହାଯାଇଛି ।

ମହତତ୍ତ୍ୱାଦ୍ ବିକୁର୍ବାଣା ଦହଂ ତତ୍ତ୍ୱଂ ବ୍ୟଜାୟତ
କାର୍ଯ୍ୟ କାରଣ କର୍ତ୍ତାତ୍ମା ଭୂତେନ୍ଦ୍ରିୟ ମନୋମୟଃ (୫ । ୨୯)

ବଳରାମ ଦାସ ମଧ୍ୟ ଅନୁରୂପ ଭାବରେ ଲେଖିଛନ୍ତି—

ଈଶ୍ୱର ପ୍ରକୃତ ହୋଇଲ । ସେ ପୁଣି ମହତତ୍ତ୍ୱ ହେଲ
ତହୁଁ ଜନ୍ମିଲ ଅହଂକାର । ତାହା ତ୍ରିଗୁଣେ ଯେ ବାହାର
ପ୍ରଥମେ ସତ୍ତ୍ୱ ଜନ୍ମ ହେଲ । ଦ୍ୱିତୀୟେ ରଜ ଯେ ଜନ୍ମିଲ
ତୃତୀୟେ ପୁଣି ତମ ହୋଇ । ତେଣୁ ବିସ୍ତାର ସବୁ ହୋଇ
ସତ୍ତ୍ୱରୁ ପଞ୍ଚ ତନମାତ୍ରେ । ତମରୁ ପଞ୍ଚ ମହାଭୂତେ
ଏକାଦଶ ଇନ୍ଦ୍ରିୟ ପୁଣ । ରଜରୁ ହୋଇଲେ ତକ୍ଷଣ । ୨୮ ।

(ବେ. ସା. ଗୁ. ଗୀ. ଦ୍ୱାବିଂଶ ଅଧ୍ୟାୟ)

କେବଳ ବଳରାମ ଦାସ ନୁହନ୍ତି, ଅଚ୍ୟୁତାନନ୍ଦ ମଧ୍ୟ ଶ୍ରୀମଦ୍ଭାଗବତରେ ପରମ୍ପରା ଅନୁସରଣ କରି ସୃଷ୍ଟି ତତ୍ତ୍ୱ ବ୍ୟାଖ୍ୟା କରିଛନ୍ତି । ବିଭିନ୍ନ ଜାତି କିପରି ବିରାଟ ପୁରୁଷଙ୍କ ବିଭିନ୍ନ ଅଙ୍ଗରୁ ଉତ୍ପନ୍ନ ହେଲେ ତାହାର ବର୍ଣ୍ଣନା ସେ କୈବର୍ତ୍ତ ଗୀତାରେ ପ୍ରଦାନ କରିଛନ୍ତି ।

ମୋହର ଭୁଜରୁ ଜାତ ହେଲେ କ୍ଷତ୍ରି ଜାତି
ଉରରୁ ହୋଇଲେ ମୋର ବୈଶ୍ୟ ଉତପତ୍ତି

ନିରଞ୍ଜନ ନାଭି ସ୍ତମ୍ଭୁଁ ହୋଇଲେ ଧାତାର
ଶୂନ୍ୟେ ଯେ ନିରଞ୍ଜ ଜାତ ହୋଇଲ ପଦ୍ମର । (ଚତୁର୍ଥ ଅଧ୍ୟାୟ)

ଶ୍ରୀମଦ୍ଭାଗବତରେ ଦୁଇ ପ୍ରକାର ସୃଷ୍ଟି ହୋଇଥିବା ବିଷୟ କୁହାଯାଇଛି ।

୧ । **ବିରାଟ ପୁରୁଷରୁ ସୃଷ୍ଟି**—ନିର୍ଗୁଣ ବ୍ରହ୍ମଙ୍କର ସୃଷ୍ଟି କରିବାକୁ ଇଚ୍ଛା ହେବାରୁ କାଳ ପ୍ରଭାବ ହେତୁ ତାଙ୍କ ଦୃଷ୍ଟିପାତରେ ପ୍ରକୃତିରେ କ୍ଷୋଭ ଜାତ ହେଲା । ସେଥିରେ ବ୍ରହ୍ମ ତାଙ୍କର ଚିତ୍ତ ଶକ୍ତି ରୂପକ ବୀର୍ଯ୍ୟ ସ୍ଥାପନ କଲେ । ଏହା ଫଳରେ ମହତ୍ତତ୍ତ୍ୱ, ଅହଙ୍କାର ଆଦିର ବିକାଶ ଘଟି କର୍ମେନ୍ଦ୍ରିୟ, ଜ୍ଞାନେନ୍ଦ୍ରିୟ, ପଞ୍ଚଭୂତ, ପଞ୍ଚତନ୍ମାତ୍ର, ଆଦିର ସୃଷ୍ଟି ହେଲା ଏବଂ ସେଥିରେ ବ୍ରହ୍ମଙ୍କର ସତ୍ତା ପ୍ରବେଶ କରିବାରୁ ବିରାଟ ପୁରୁଷଙ୍କର ଆବିର୍ଭାବ ହେଲା । ସେହି ବିରାଟ ପୁରୁଷଙ୍କଠାରୁ ବ୍ରହ୍ମାଣ୍ଡର ବିଭିନ୍ନ ସ୍ତର ବିଭିନ୍ନ ଜୀବ ଜଗତ ଆଦି ବିକାଶ ଲାଭ କଲେ ।

(ତୃତୀୟ ସ୍କନ୍ଧ ୫ମରୁ ୭ମ ଅଧ୍ୟାୟ)

୨ । **ବ୍ରହ୍ମାଙ୍କଠାରୁ ସୃଷ୍ଟି**—ନିର୍ଗୁଣ ବ୍ରହ୍ମଙ୍କର ସୃଷ୍ଟି କରିବାକୁ ଇଚ୍ଛା ହୁଅନ୍ତେ ତାଙ୍କ ନାଭି କମଳରୁ ପଦ୍ମ ଏବଂ ବ୍ରହ୍ମା ଜାତ ହେଲେ ଏବଂ ବ୍ରହ୍ମା ବ୍ରହ୍ମଙ୍କ ଆଦେଶ ଲାଭ କରି ବିଶ୍ୱ ଓ ବିଶ୍ୱର ଜୀବଜଗତ ଓ ଅନ୍ୟାନ୍ୟ ପଦାର୍ଥ ସୃଷ୍ଟି କଲେ ।

(ତୃତୀୟ ସ୍କନ୍ଧ ୮ମରୁ ୧୧ଶ ଅଧ୍ୟାୟ)

ଛୟାଳିଶ ପଟଳରେ ଅଚ୍ୟୁତାନନ୍ଦ ଏହି ଦୁଇ ପ୍ରକାରର ସୃଷ୍ଟି ବିବରଣୀ ପ୍ରଦାନ କରିଛନ୍ତି—

ବ୍ରହ୍ମାକୃତ ସୃଷ୍ଟି—

ପଦ୍ମଯୋନି ବ୍ରହ୍ମା ନାଭି ପଦ୍ମରୁ ଜନମି
ନିରାକାର ଆଦେଶରେ ସୃଜିଲେ ଅବନୀ
ଜ୍ଞାନମୟଙ୍କ ଇଚ୍ଛା ଯେ ବ୍ରହ୍ମା ରୂପ ହେଲା
ସୂର୍ଯ୍ୟ ଚନ୍ଦ୍ର ଗ୍ରହଗଣ ଆପଣେ ଥାପିଲା
ଜଳ ସ୍ଥଳ ଆକାଶ ଯେ ବାୟୁ ହୁତାଶର
ପଞ୍ଚ ମହାଭୂତ ଭିନ୍ନ ଗୁଣରେ ବିସ୍ତର । (ଅଷ୍ଟମ ପଟଳ)

ବିରାଟ ପୁରୁଷରୁ ସୃଷ୍ଟି—

ଅରୂପନାଥ ଅନାଦି ଶୂନ୍ୟ ଜ୍ୟୋତି
ବାକ୍ୟ ଅଗୋଚର ଅଟେ ବିରାଟ ମୂରତି

ବିନ୍ଦୁ ନାମ ଅଣ୍ଡ ଅଟଇ ନାହିଁ ହେତୁ କର
: ସେ ଅଣ୍ଡ ବିନ୍ଦୁରୁ ସୃଷ୍ଟି ହେଲା ଏ ସଂସାର (ଅଷ୍ଟମ ପଟଳ)

ବ୍ରହ୍ମସୂତ୍ର ଏବଂ ଶ୍ରୀମଦ୍ଭଗବଦ୍ ଗୀତାରେ କୁହାଯାଇଛି— ପ୍ରକୃତି ବା ମାୟା ହେଉଛି ବ୍ରହ୍ମଙ୍କର ଯୋନି ସଦୃଶ । ବ୍ରହ୍ମ ତାଙ୍କର ବହିରଙ୍ଗା ଶକ୍ତି ମାୟା ସାହାଯ୍ୟରେ ସୃଷ୍ଟି ରଚନା କରନ୍ତି । ତାଙ୍କର ଚିତ୍‌ଶକ୍ତି ରୂପକ ବୀର୍ଯ୍ୟ ମାୟା ମଧ୍ୟରେ ସ୍ଥାପିତ ହେବା ଯୋଗେ ପ୍ରକୃତି ବିକୃତି ଲାଭ କରି ଜଗତର ସୃଷ୍ଟି ହୁଏ । ବସ୍ତୁତଃ ବ୍ରହ୍ମଙ୍କର ଅନ୍ତରଙ୍ଗା ଚିତ୍‌ଶକ୍ତି ତାଙ୍କର ବହିରଙ୍ଗା ମାୟାଶକ୍ତି ସାହାଯ୍ୟରେ ଜଗତରେ ପରିଣତ ହୁଏ । ଏହିଭଳି ପୁରୁଷ ପ୍ରକୃତିର ମିଳନ ଘଟି ସୃଷ୍ଟି ହୁଏ । କାଳର ପ୍ରଭାବରୁ ଏହା ସମ୍ଭବ ହୁଏ । ଅଚ୍ୟୁତାନନ୍ଦ ଠିକ୍ ଏହି କଥାକୁ ଛୟାଳିଶ ପଟଳରେ ଲେଖିଛନ୍ତି—

ନିରାକାର ସେ କାଳରେ ମାୟା ଭିଆଇଲେ
ଯୋଗମାୟା ରୂପୀ କାଳ ବିସ୍ତାରିଲା ମାୟା
ପ୍ରକୃତି ପୁରୁଷ ମିଶି ପ୍ରକାଶିଲେ କାୟା
ବରୁଣ କୁବେର ପୁଣି ନିଶ ଦିଗପାଳ
ଯମ ଅଗ୍ନି ପ୍ରାଣବାୟୁ ଜନ୍ମିଲେ ସକଳ
ନର ବାନର ଜନମ ଜୀବ ଭୂଣଖାନି
କୀଟ ପତଙ୍ଗ ସହିତ ପୂରିଲା ମେଦିନୀ
ସ୍ଥାବର ଜଙ୍ଗମ ପଶୁପକ୍ଷୀ ଆଦି କରି
ସତ୍ତ୍ୱରଜ ତମ ଏହି ତ୍ରିଗୁଣ ସୁମରି
ଊଣା ଅଧିକରେ ପିଣ୍ଡ ଗଢିଲା ସବୁରି
ଚଉଦ ବ୍ରହ୍ମାଣ୍ଡ ଯାକ ମାୟାଗଲା କରି । (ଅଷ୍ଟମ ପଟଳ)

ପୁନଶ୍ଚ ସେ ଏହି ଗ୍ରନ୍ଥରେ ଅନ୍ୟତ୍ର ଲେଖିଛନ୍ତି—

ନିର୍ଗୁଣ ପୁରୁଷ ଇଚ୍ଛା ଆଦି ଗୁଣ ସନ୍ଧି
ପ୍ରକୃତି ସହିତ ମିଶି ସୃଜେ ନାନା ଦେହି । (ନବମ ପଟଳ)

ପୁରୁଷଙ୍କର ଚିତ୍‌ଶକ୍ତି ସଂଚରିତ ହେବା ଯୋଗେ ପ୍ରକୃତିରୁ କ୍ରମଶଃ ମହତ୍‌ତତ୍ତ୍ୱ ଓ ଅହଙ୍କାର ତତ୍ତ୍ୱର ଉତ୍ପନ୍ନ ହୁଏ ଏବଂ ଅହଂକାରରୁ ଏକାଦଶ ଇନ୍ଦ୍ରିୟ, ପଂଚ ମହାଭୂତ, ପଂଚତନ୍ମାତ୍ର ଆଦିର ବିକାଶ ଘଟି ସୃଷ୍ଟିର ବିଭିପନ୍ନର୍ଯ୍ୟାୟ ବିକଶିତ ହୁଏ, ତାହାର ବିସ୍ତୃତ ବିବରଣୀକୁ ଅଚ୍ୟୁତାନନ୍ଦ ଛୟାଳିଶ ପଟଳର ଊନବିଂଶ

ଅଧ୍ୟାୟରୁ ଏକବିଂଶ ଅଧ୍ୟାୟ ମଧ୍ୟରେ ପ୍ରଧାନ କରିଛନ୍ତି । ଛୟାଳିଶ ପଟଳର ୪୦ ଅଧ୍ୟାୟରେ ସେ ଲେଖିଛନ୍ତି—

ଆଦ୍ୟରେ ସ୍ୱୟଂ ବ୍ରହ୍ମଥିଲ, ତହୁଁ ପ୍ରକୃତି ଜାତ ହେଲି ।
ପ୍ରକୃତିରୁ ସବୁ ହୋଇଲି ଜାତ, ଏନେଇ ମୂର ହେଇଲି ଖ୍ୟାତ ।

ଚୈତନ୍ୟ ଦାସ ବିଷ୍ଣୁଗର୍ଭପୁରାଣରେ ଶ୍ରୀମଦ୍ଭାଗବତ ବର୍ଣ୍ଣିତ ସୃଷ୍ଟି ପରମ୍ପରାକୁ ଅନୁସରଣ କରିବାର ଦେଖାଯାଇଥାଏ । ଯଥା—

ସେ ନିରାକାର ସେ ରୂପେ ହୁଅନ୍ତି ଜଳଶାୟୀ
ବ୍ରହ୍ମାଙ୍କୁ ଜାତ କରନ୍ତି ଯୋଗ ନିଦ୍ରା ଯାଇ
ସେ ବ୍ରହ୍ମାମାନେ ପୁଣି କରନ୍ତି ସୃଷ୍ଟି ଜାତ
ବ୍ରହ୍ମାଣ୍ଡମାନ କରନ୍ତି ସେମାନେ ପର୍ବମତ ।

(ବିଷ୍ଣୁଗର୍ଭ ପୁରାଣ ପୃ-୪୧)

## ଜୀବ ସୃଷ୍ଟି—

ଓଡ଼ିଆ ଜ୍ଞାନମିଶ୍ରା ସାହିତ୍ୟରେ ବ୍ରହ୍ମାଣ୍ଡ ସୃଷ୍ଟିକ୍ରମ ଉପରେ ଯେତିକି ପ୍ରାଧାନ୍ୟ ଦିଆଯାଇଅଛି, ତାହାଠାରୁ ଅଧିକ ପ୍ରାଧାନ୍ୟ ଦିଆଯାଇଛି ଜୀବସୃଷ୍ଟି ଓ ଶରୀର ଗଠନର ବିକାଶ କ୍ରମରେ । ପିଣ୍ଡ ହେଉଛି ବ୍ରହ୍ମାଣ୍ଡର ପ୍ରତୀକ । ଏହାର ଅଧକ୍ଷ ହେଉଛନ୍ତି ବ୍ରହ୍ମ । ଜୀବବ୍ରହ୍ମର ଏକ ଅଂଶ । ଏହା ପ୍ରକୃତି ବା ମାୟାର ସାହାଯ୍ୟ ନେଇକରି ପଞ୍ଚଭୂତାଦିରେ ଗଠିତ ଦେହରେ ଆବେଷ୍ଟ ହୁଏ । ସାଂଖ୍ୟର ସୃଷ୍ଟି ତତ୍ତ୍ୱରେ ଯେଉଁ ୨୫ ତତ୍ତ୍ୱର ବର୍ଣ୍ଣନା କରାଯାଇଛି ସେଗୁଡ଼ିକର ସମଷ୍ଟିରେ ଜୀବର ଦେହ ଗଠିତ ହୁଏ । ଶ୍ରୀମଦ୍ଭାଗବତରେ ଯେଉଁ ବିରାଟ ପୁରୁଷଙ୍କର ବର୍ଣ୍ଣନା ଦିଆଯାଇଛି, ତାହା ମହତ୍, ଭୂତ, ତନ୍ମାତ୍ର ଓ ଅହଙ୍କାରରେ ଗଠିତ ଦେହ ବିଶେଷ ଏବଂ ତନ୍ମଧ୍ୟରେ ଥିବା ପରମାତ୍ମାଙ୍କ ପରିଛଡ଼ା କିଛି ନୁହେଁ । ବିରାଟ ସ୍ୱରୂପ ବ୍ରହ୍ମାଣ୍ଡର ପ୍ରତୀକ ମାତ୍ର । ଶ୍ରୀମଦ୍ଭାଗବତର ଏହି କଳ୍ପନାରୁ ପିଣ୍ଡବ୍ରହ୍ମାଣ୍ଡବାଦର ହିଁ ବିକାଶ ଘଟିଛି ।

ଛତିଶ ଗୁପ୍ତଗୀତାରେ ଉଲ୍ଲେଖ ଅଛି—

ଚଉଦ ବ୍ରହ୍ମାଣ୍ଡ ଏହାକୁ କହନ୍ତି ଶୁଣ ତୁ ଏହା କହିଛି
ଏତେ ପୁଣ ଯେଉଁ ଦେହ ପ୍ରକାଶିଲ ମାତା ନାଭି ପଦ୍ମ ଘୋଟି ।

(ଷୋଡ଼ଶ ଅଧ୍ୟାୟ)

ତ୍ରୟୋଦଶ ପଟଳରେ ମଧ୍ୟ ଅଚ୍ୟୁତାନନ୍ଦ ଲେଖିଛନ୍ତି—

ପିଣ୍ଡ କ୍ଷୁଦ୍ର ବ୍ରହ୍ମାଣ୍ଡଟି ଅଟଇ ଯୁଗତ
ବୃହତ ବ୍ରହ୍ମାଣ୍ଡ ସପ୍ତ ପିଣ୍ଡେ ବସ୍ତୁଗତ

X X X

ପିଣ୍ଡକୁ ବ୍ରହ୍ମାଣ୍ଡଠାରୁ ଅଲଗା ନକର
ତତ୍ତ୍ୱଭେଦେ ମନ ମଧ୍ୟେ ଧର ଦୃଢ଼ କର । (ଊନବିଂଶ ପଟଳ)

ଓଡ଼ିଆ ଜ୍ଞାନମିଶ୍ରା, ଭକ୍ତ ସାହିତ୍ୟରେ ବ୍ରହ୍ମାଣ୍ଡର ସୃଷ୍ଟି କ୍ରମକୁ ପିଣ୍ଡର ସୃଷ୍ଟି କ୍ରମ ମଧ୍ୟରେ ଦେଖାଇ ଦିଆଯାଇଛି । ବ୍ରହ୍ମାଣ୍ଡର ଊର୍ଦ୍ଧ୍ୱ ଭାଗରେ ଥିବା ବ୍ରହ୍ମଙ୍କର ଚତୁଃଶକ୍ତି ରୂପକ ବୀର୍ଯ୍ୟ ବିନ୍ଦୁ ଅଧଃ ପ୍ରକୃତିରେ ନିକ୍ଷିପ୍ତ ହେଲେ ଯେପରି ମହତ୍ତତ୍ତ୍ୱାଦିର ବିକାଶ ଘଟି ସୃଷ୍ଟିକ୍ରମ ଆରମ୍ଭ ହୁଏ, ସେହିପରି ପୁରୁଷର ସହସ୍ରଦଳ ଚକ୍ରରେ ବାସ କରୁଥିବା ଜ୍ୟୋତିର୍ମୟ ବିନ୍ଦୁ ରୂପକ ବ୍ରହ୍ମରୁ ବୀର୍ଯ୍ୟ କ୍ଷରିତ ହୋଇ ମାତା ରୂପକ ପ୍ରକୃତିର ପଦ୍ମ (ଜରାୟୁ)ରେ ପତିତ ହେଲେ ଜୀବ ସୃଷ୍ଟିପ୍ରକ୍ରିୟା ଆରମ୍ଭ ହୁଏ । ଏହାପରେ ମହତ୍ତତ୍ତ୍ୱାଦିର ବିକାଶ ଘଟି (କର୍ମେନ୍ଦ୍ରିୟ, ଜ୍ଞାନେନ୍ଦ୍ରିୟ, ପଞ୍ଚ-ତନ୍ମାତ୍ର, ପଞ୍ଚମହାଭୂତ ଆଦିର ବିକାଶ ଘଟି) ଜୀବର ଶରୀର କ୍ରମଶଃ ଗଠିତ ହୁଏ । ତାହାର ଦେହ ଏକ ବ୍ରହ୍ମାଣ୍ଡର ପ୍ରତୀକ ହୋଇ ସେଥିରେ ଚତୁର୍ଦ୍ଦଶ ଭୁବନ ପ୍ରକାଶିତ ହୁଏ ଏବଂ ସେଥିରେ ବ୍ରହ୍ମା, ବିଷ୍ଣୁ, ଶିବାଦି ଦେବତା ନିବାସ କରନ୍ତି ।

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ଥିବା ବର୍ଣ୍ଣନାନୁଯାୟୀ ସହସ୍ରଦଳ ଚକ୍ରସ୍ଥ ଜ୍ୟୋତିର୍ମୟ ବିନ୍ଦୁ (ବ୍ରହ୍ମ) ହେଉଛି ବୀର୍ଯ୍ୟର ଉତ୍ପତ୍ତି ସ୍ଥଳ । ବିନ୍ଦୁ ରୂପକ ବୀର୍ଯ୍ୟ ହେଉଛନ୍ତି ବ୍ରହ୍ମ । ବିନ୍ଦୁକୁ ବା ବୀର୍ଯ୍ୟକୁ ବ୍ରହ୍ମରୂପଦେବା ଜ୍ଞାନମିଶ୍ରା ଭକ୍ତ ସାଧକଙ୍କର କଳ୍ପନା ପ୍ରସୂତ ନୁହେଁ । ବୃହଦାରଣ୍ୟକ ଉପନିଷଦରେ କୁହାଯାଇଛି— ଯୋରେତସି ତିଷ୍ଠନ୍ ରେତସୋଽନ୍ତରୋ ଯଂ ରେତୋ ନ ବେଦ, ଯସ୍ୟରେତଃ ଶରୀରଃ, ଯୋ ରେତୋଽନ୍ତରୋ ଯମୟତ୍ୟେଷ ଅନ୍ତର୍ଯ୍ୟାମ୍ୟମୃତଃ (୩ । ୭ । ୨୩) ଅର୍ଥାତ୍ ଯେ (ବ୍ରହ୍ମ) ବୀର୍ଯ୍ୟ ମଧ୍ୟରେ ଅବସ୍ଥିତ, କିନ୍ତୁ ବୀର୍ଯ୍ୟ ଦ୍ୱାରାଜାଣି ହୁଅନ୍ତି ନାହିଁ ଏବଂ ବୀର୍ଯ୍ୟର ଯେ ନିୟାମକ ସେ ଆତ୍ମା ଅଟନ୍ତି । ତାଙ୍କର ଶରୀର ହେଉଛି ରେତ । ସେ ଅନ୍ତର୍ଯ୍ୟାମୀ ଓ ଅବିନାଶୀ ଅଟନ୍ତି । ସୁଧାସାର ଗୀତାରେ ଚନ୍ଦ୍ରମଣି ଦାସ ଲେଖିଛନ୍ତି—

ବନ୍ଧୁ ପିନା ବ୍ରହ୍ମ, ବନ୍ଧୁ ପିନା ତତ୍ତ୍ୱ ବନ୍ଧୁ ପିନା ପଞ୍ଚପ୍ରାଣ
ବନ୍ଧୁ ଟି ଯେମନ୍ତେ ଶୂନ୍ୟେ ଉଡ଼ିଗଲା ଏ ଜୀବ ହୋଇଲା ଜ୍ଞାନ ।

(ଏକାଦଶ ବୋଲି)

ଶ୍ରୀମଦ୍ଭାଗବତ (ଏକତ୍ରିଂଶ ଅଧ୍ୟାୟ)ରେ କୁହାଯାଇଛି – ଜୀବ ନିଜ ପୂର୍ବ-କର୍ମାନୁସାରେ ଦେହ ପ୍ରାପ୍ତି ନିମିତ୍ତ ପୁରୁଷର ବୀର୍ଯ୍ୟ କଣ ଦ୍ୱାରା ସ୍ତ୍ରୀ ଉଦରରେ ପ୍ରବେଶ କରେ । ଏହି ବୀର୍ଯ୍ୟ ସ୍ତ୍ରୀ ରଜ ସହ ମିଶିବା ଫଳରେ ଏକ ରାତ୍ରିରେ କଲ୍ଲଲରୂପ, ପାଞ୍ଚ ରାତ୍ରରେ ବୁଦବୁଦ୍, ଦଶ ଦିନରେ କେନ୍ଦୁ ସଦୃଶ, ଏକ ମାସରେ ଶିରଯୁକ୍ତ, ଦୁଇମାସରେ ହସ୍ତପଦାଦି ଅଙ୍ଗଯୁକ୍ତ, ତିନି ମାସରେ ନଖ, ଲୋମ, ଚର୍ମ, ଓ ସ୍ତ୍ରୀ ବା ପୁରୁଷ ଚିହ୍ନଯୁକ୍ତ, ପାଞ୍ଚ ମାସରେ କ୍ଷୁଧା ପିପାସା ଯୁକ୍ତ ଓ ଛଅ ମାସରେ ଜରାୟୁ ମଧ୍ୟରେ ଗତିଶୀଳ ହୁଏ । ସେତେବେଳେ ମାତୃଗର୍ଭରେ ଥାଇ ସେ ଭଗବାନଙ୍କୁ ତାର ଦୁଃଖ ଲାଗି ପ୍ରାର୍ଥନା କରେ । ତତ୍ପରେ ଦଶ ମାସରେ ସେ ଜନ୍ମଲାଭ କରେ ।

ଅଚ୍ୟୁତାନନ୍ଦଙ୍କ ଛୟାଳିଶ ପଟଳ ଗ୍ରନ୍ଥରେ ଶ୍ରୀମଦ୍ଭାଗବତର ଏହି ମର୍ମବାଣୀ ପ୍ରତିଧ୍ୱନିତ ହୋଇଥାଏ । ଯଥା –

ମାତୃ ଗର୍ଭେ ରହି ଦଶମାସ ପୂର୍ଣ୍ଣ କରିଲା ପିଣ୍ଡ ଗଠନେ
ପୂର୍ବକର୍ମ ରୂପେ ଜନମ ଲଭିଲା ଭୂତତତ୍ତ୍ୱ ଘେନି ମନେ ।

(ପଂଚଦଶ ଅଧ୍ୟାୟ)

ସେହି ଗ୍ରନ୍ଥରେ ଅଚ୍ୟୁତାନନ୍ଦ ଜୀବ ଉତ୍ପତ୍ତି ବିଷୟ ବର୍ଣ୍ଣନା କରି ଲେଖିଛନ୍ତି –

ନାରୀ ପୁରୁଷର କାମ ଉନ୍ମାଦନା ବଢ଼ିଲା ହୋଇଲେ ଭୋଳ
ଅଶରୀର ରୂପ ମଦନ କନ୍ଦର୍ପ ପ୍ରୀତିରେ କଲା ଆକୁଳ
ଇଚ୍ଛାବଳେ ଜ୍ଞାନ ଜ୍ଞାନ ହେଲା କର୍ମ କର୍ମ କଲା ଅହମ୍ଭାଳ
ଚକ୍ଷୁକର୍ଣ୍ଣ ନାସା ଭଗେନ୍ଦ୍ରିୟ ମିଶି କାମରେ ହୋଇଲେ ଭେଳ
ଶବ୍ଦସ୍ପର୍ଶ ରୂପ ରସ ଗନ୍ଧ ଗୁଣ ଦେଖାଇଲା କାମଶକ୍ତି
ଭାବହେଲା ମୂଳ ନାହିଁ ରୂପରେଖ ନ ପାଇଲେ କେହି ମୁକ୍ତି
ପୁରୁଷ ଲୋଡ଼ିଲା ନାରୀ ଅଙ୍ଗସଙ୍ଗ ନାରୀ ହେଲା କାମେ ବାଇ
ନାରୀ ପୁରୁଷର ମିଳନ ଘଟିଲା ସୃଷ୍ଟିକ୍ରିୟା ଅଟେ ଏହି
ସଂଯୋଗେ ପୁରୁଷ ସର୍ବାଙ୍ଗେ ପବନ ଅଗ୍ନି ଜଳତତ୍ତ୍ୱ ଘେନି
ହର୍ଷ ବଶେ ଶୁକ୍ରଧାତୁ ଠୂଳ କରି ରତିକ୍ରିୟା କଲେ ବେନି

କ୍ରୀଡ଼ା ଘର୍ଷଣରେ ଜାତ ହେଲା ଅଗ୍ନି ସେ କଲା ତତ୍ତ୍ୱ ପ୍ରସାର
ରଜ ବୀର୍ଯ୍ୟବାୟୁ ଭୂତ ତତ୍ତ୍ୱ ଧରି ଗର୍ଭରେ ହୋଇଲେ ଠୂଳ ।

X X X

ଶୁକ୍ରଶୋଣିତରେ ଆଦ୍ୟ ତତ୍ତ୍ୱମାନ ପିଣ୍ଡରେ ରହିଛୁ ପୂର
ସପ୍ତଧାତୁ ଚକ୍ର ଭେଦ ଶୁନ୍ୟବ୍ରହ୍ମ ସ୍ଥୂଳ ହେଲା ରୂପ ଧରି ।
ଘଟ ଖୋଜୁଥିଲା ଜୀବ ଆଶ୍ରେ କଲା ଲଭିଲା ବିଶ୍ରାମ ତହିଁ
ମାତା ହେଲାତ ପିଣ୍ଡର କାରଣ ପଞ୍ଚବିଂଶ ତତ୍ତ୍ୱ ବହି ।

(ଏକତ୍ରିଂଶ ପଟଳ)

ପୁରୁଷର ବୀର୍ଯ୍ୟ ଯାହା ଜୀବ ସୃଷ୍ଟିର କାରଣ ଅଟେ, ତାହାର ମୂଳହେଉଛି ଆଦ୍ୟ ବୀର୍ଯ୍ୟରେ । ଆଦ୍ୟବୀର୍ଯ୍ୟ ହେଉଛନ୍ତି ବ୍ରହ୍ମ । ଚନ୍ଦ୍ରମଣି ଦାସ ସୁଧାସାର ଗୀତାରେ ଲେଖିଛନ୍ତି—

ଅନନ୍ତ ଅଙ୍ଗରେ ଶ୍ୱେତ ଗିରିପରେ ଶଙ୍ଖମଣ୍ଡପ ଅଟଇ
ଭ୍ରମର ଗୁମ୍ଫାରେ ମଣିମଣ୍ଡପରେ ଆଦ୍ୟବୀର୍ଯ୍ୟ ରହୁଥାଇ
ଆଦ୍ୟ ବୀର୍ଯ୍ୟ ଖସି ଅର୍ଦ୍ଧମାତ୍ରା ସ୍ଥିର ନିଗମ ଭୁବନୁଆସି
ତ୍ରିବେଣୀ ସନ୍ଧିରେ ଉଆଁଳା ପିଆଁଳା ସୁଷୁମ୍ନା ରୂପୀ ତଣି
ନିରବଦ୍ୟ ଜ୍ୟୋତି ତ୍ରିଗୁଣରେ ବ୍ୟାପି ଊର୍ମିଧୂର୍ମି ଜ୍ୟୋତିଜ୍ୱାଳା
ଠୂଳଶୁନ୍ୟରୂପୀ ସୁଷୁମ୍ନା ଦ୍ୱାରେ ମାତାଗର୍ଭେ ଠାବକଲା
ନିରକ୍ତ ଆସିଣ ରକ୍ତରେ ମିଶିଲା ତ୍ରିଗୁଣେ ହୋଇଲା ବନ୍ଧା ।

(ଷଷ୍ଠବୋଲ)

ଛତିଶ ଗୁପ୍ତଗୀତାରେ ମାତୃଗର୍ଭସ୍ଥ ଜୀବଶରୀରର ବିକାଶ କ୍ରମ ବର୍ଣ୍ଣିତ ହୋଇଛି ।

ଯଥା :— ମାତୃଗର୍ଭରେ ପତିତ ବୀର୍ଯ୍ୟ ତିନିଦିନଯାଏ ଗୋଳା ଅବସ୍ଥାରେ ଥାଏ । ଚତୁର୍ଥ ଦିନରେ ଏହା ଶ୍ୱେତବର୍ଣ୍ଣ ଧାରଣ କରେ । ପଞ୍ଚମ ଦିନରେ ଫେନଭଳି ଓ ଷଷ୍ଠଦିନରେ ବୁଦ୍‌ବୁଦ୍ ଭଳି ଏହା ଦେଖାଯାଏ । ଅଷ୍ଟମ ଦିନରେ ବୀର୍ଯ୍ୟ ସ୍ଥିର ହୋଇ ପିଲୋହି ନିକଟରେ ଚର୍ମପୁଟିକାରେ ରହେ । ନବମଦିନରେ ଏଥିରେ ପ୍ରାଣ ପ୍ରକାଶିତ ହୁଏ । ଏକାଦଶ ଦିନରୁ ଅଙ୍ଗନିର୍ମାଣ ଆରମ୍ଭ ହୁଏ । ଦ୍ୱାଦଶଦିନରେ ଚରଣ ନିର୍ମିତ ହୁଏ । ସତର ଦିନରେ ବୀର୍ଯ୍ୟରୁ ଗଜା ଅଙ୍କୁରିତ ହୋଇ ଊନବିଂଶ

ଦିନରେ ଅଣ୍ଡା ନିର୍ମିତ ହୁଏ । ବିଂଶଦିନରେ ନାଭିପଦ୍ମ, ଦ୍ୱାବିଂଶ ଦିନରେ ହୃଦୟ, ତ୍ରୟୋଦଶ ଦିନରେ କଣ୍ଠ, ଚବିଶ ଓ ପଚିଶ ଦିନରେ ଦୁଇଚକ୍ଷୁ ପଚାଛିଶ ଦିନରେ କର୍ଣ୍ଣ ଏବଂ ତିରିଶ ଦିନରେ କପାଳ ନିର୍ମିତ ହୁଏ । ନାଭିରେ ବ୍ରହ୍ମା, ହୃଦୟରେ ବିଷ୍ଣୁ, କଣ୍ଠରେ ଶିବ ଓ ଦୁଇ ନେତ୍ରରେ ସୂର୍ଯ୍ୟଚନ୍ଦ୍ର ବାସ କରନ୍ତି (ପଞ୍ଚଦଶ ଅଧ୍ୟାୟ) । ମାତ୍ର ଭେଦରେ ବୀର୍ଯ୍ୟରୁ ଜୀବ ଶରୀରର ବିକାଶକ୍ରମ ମଧ୍ୟ ଏଥିରେ ବର୍ଣ୍ଣିତ ହୋଇଛି । ଜଗନ୍ନାଥ ଦାସଙ୍କ ତୁଳାଭିଣାରେ ବୀର୍ଯ୍ୟରୁ ଜୀବସୃଷ୍ଟି ଓ ତାର ଶରୀରର ବିଭିନ୍ନ ଅଂଶ ନିର୍ମାଣ ବିଷୟ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି । ଏହାଛଡ଼ା ପ୍ରାୟ ସମସ୍ତ ଜ୍ଞାନମିଶ୍ର ଭକ୍ତି ସାହିତ୍ୟରେ ଜୀବସୃଷ୍ଟି ବିଷୟର ବର୍ଣ୍ଣନା ମୁଖ୍ୟସ୍ଥାନ ଅଧିକାର କରିଥିବାର ଦେଖାଯାଇଥାଏ ।

## ବିନ୍ଦୁରୁ ଶବ୍ଦ ଓ ଶବ୍ଦରୁ ସୃଷ୍ଟି—

ଓଡ଼ିଆ ଜ୍ଞାନମିଶ୍ରାଭକ୍ତି ସାହିତ୍ୟର କେତେକ ସ୍ଥଳରେ ବିନ୍ଦୁକୁ ସୃଷ୍ଟିର ମୂଳକାରଣ କୁହାଯାଇଛି । ବିନ୍ଦୁରୁ ଅର୍ଦ୍ଧମାତ୍ରା, ଅର୍ଦ୍ଧମାତ୍ରାରୁ ଓଁକାର, ଓଁକାରରୁ ନାମ, ବୀଜମନ୍ତ୍ର ଓ ମହାମନ୍ତ୍ର ଆଦି ସୃଷ୍ଟି ହୋଇଥିବା ବିଷୟ ବହୁ ସ୍ଥଳରେ ବର୍ଣ୍ଣିତ ହୋଇଛି ।

ତୁଳାଭିଣାରେ ଜଗନ୍ନାଥ ଦାସ ଲେଖିଛନ୍ତି—

ଅବ୍ୟକ୍ତ ବ୍ରହ୍ମ ଶୂନ୍ୟ କେବଳ, ତା ତହୁଁ ବିନ୍ଦୁ ଉତପତ୍ତି
ସେ ବିନ୍ଦୁ ତିନି ଶାଖା ହେଲା, ତ୍ରୟବୀଜ ସେ ବୋଲାଇଲା
ତ୍ରୟ ବୀଜରୁ ଷଡ଼ାକ୍ଷର, ତ୍ରିଗୁଣ ବୋଲିଣ ବିସ୍ତର
ଓଁକାର ଗୋଟିଏ ହୋଇଲା, ଅର୍ଦ୍ଧ ଅର୍ଦ୍ଧେକ ପୁଣି ହେଲା
ସେ ବିନ୍ଦୁ ଶୂନ୍ୟେ ଅଛି ରହି, ଅର୍ଦ୍ଧମାତ୍ରାଟି ଅଛି ବହି
ମାତ୍ରାର ତଳେ ସେ ଓଁକାର, ତହୁଁ ସେ ତ୍ରିଗୁଣ ବିସ୍ତର
ଓଁକାରୁ କ୍ଲୀଂସ୍ୱଂ ଜାତ ହେଲା, କ୍ଲୀଂସ୍ୱଂରୁ ଶ୍ରୀସ୍ୱଂ ଜନ୍ମହେଲା ।

(ପ୍ରଥମ ଅଧ୍ୟାୟ)

ଏଠାରେ ଯେଉଁ ବିନ୍ଦୁ କଥା କୁହାଯାଇଛି ତାହା ପୂର୍ବକଥିତ ବୀର୍ଯ୍ୟକୁହିଁ ବା ବିନ୍ଦୁ ବ୍ରହ୍ମକୁହିଁ । ଉପର ବର୍ଣ୍ଣିତ ବିନ୍ଦୁ ଶୈବତନ୍ତ୍ର ବର୍ଣ୍ଣିତ ଶକ୍ତି ଅଟନ୍ତି । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତିଧର୍ମରେ ଶୈବତନ୍ତ୍ର ଓ ବୈଷ୍ଣବ ତନ୍ତ୍ରର ପ୍ରଭାବ ରହିଥିବା କଥା ପୂର୍ବରୁ କୁହାଯାଇଛି ।

ଶୈବତନ୍ତ୍ରରେ ଶିବଙ୍କର ଦୁଇଟି ଶକ୍ତିର କଳ୍ପନା କରାଯାଇଛି । ସେହି ଦୁଇଟି ହେଉଛନ୍ତି ସମବାୟିନୀ ଶକ୍ତି ଓ ପରିଗ୍ରହରୂପା ଶକ୍ତି । ସମବାୟିନୀ ଶକ୍ତି ଚିଦ୍‌ରୂପା ଓ ଶିବଙ୍କର ସ୍ୱରୂପ ଶକ୍ତି ବିଶେଷ । ସେ ଶିବଙ୍କ ସହିତ ନିତ୍ୟଯୁକ୍ତା । ପରିଗ୍ରହରୂପା ଶକ୍ତି ଅଚେତନ ତଥା ପରିଣାମ ଶାଳିନୀ । ସେ ଶିବଙ୍କ ସହିତ ସମ୍ବନ୍ଧ ନୁହନ୍ତି । ପରିଗ୍ରହରୂପାଶକ୍ତିଙ୍କର ଦୁଇଟି ରୂପ ଅଛି । ଗୋଟିଏ ହେଉଛି ଶୁଦ୍ଧରୂପ ବା ଶୁଦ୍ଧ ଅଧ୍ୱା ଏବଂ ଅନ୍ୟଟି ହେଉଛି ଅଶୁଦ୍ଧରୂପ ବା ଅଶୁଦ୍ଧ ଅଧ୍ୱା । ପରିଗ୍ରହରୂପା ଶକ୍ତିଙ୍କୁ ବିନ୍ଦୁ କୁହାଯାଇଥାଏ । ତେଣୁ ଶୈବତନ୍ତ୍ରରେ ଶୁଦ୍ଧବିନ୍ଦୁ ଏବଂ ଅଶୁଦ୍ଧ ବିନ୍ଦୁ ଏହିପରି ଦୁଇଟି ବିନ୍ଦୁର କଳ୍ପନା କରାଯାଇଛି ।

ପରମେଶ୍ୱର ଶିବଙ୍କର ସୃଷ୍ଟି କରିବାର ଇଚ୍ଛା ହେଲେ ସେ ନିଜର ସମବାୟିନୀ ଶକ୍ତି ଦ୍ୱାରା ଉପରୋକ୍ତ ବିନ୍ଦୁକୁ ଆଘାତ କରନ୍ତି । ଫଳରେ ବିନ୍ଦୁରେ କ୍ଷୋଭ ଜାତ ହୁଏ ଏବଂ ଏହି ବିନ୍ଦୁ ପ୍ରସରିତ ହୋଇ ଶୁଦ୍ଧ ସୃଷ୍ଟି (ସାତ୍ତ୍ୱିକ ଜଗତ) ଏବଂ ଅଶୁଦ୍ଧ ସୃଷ୍ଟି (ପ୍ରାକୃତ ଜଗତ) ସୃଷ୍ଟି ହୁଏ ।

ଅଶୁଦ୍ଧ ବିନ୍ଦୁ କ୍ଷୁବ୍ଧ ହୋଇ ପ୍ରସାରିତ ହେବାଫଳରେ ଯେପରି ଏହା ଶୁଦ୍ଧ ଦେହ, ଇନ୍ଦ୍ରିୟ ଓ ଜଗତ ଆଦିରେ ପରିଣତ ହୋଇଥାଏ, ସେହିପରି ଶୁଦ୍ଧବିନ୍ଦୁ କ୍ଷୁବ୍ଧ ହେବା ଫଳରେ ସୂକ୍ଷ୍ମନାଦ, ଅକ୍ଷର ବିନ୍ଦୁ ଓ ବର୍ଣ୍ଣଭେଦ ଆଦିରେ ପରିଣତ ହୋଇଥାଏ ।

ଶୁଦ୍ଧ ବିନ୍ଦୁର ପ୍ରସାର ଘଟିଲେ ପ୍ରଥମେ ଏହା ସୂକ୍ଷ୍ମନାଦରୂପ ଧାରଣ କରେ । ଏହି ଅଚିନ୍ତନୀୟ, କେବଳ ବୁଦ୍ଧିଗମ୍ୟ । ଦ୍ୱିତୀୟାବସ୍ଥାରେ ଏହା ଅକ୍ଷର ବିନ୍ଦୁରୂପ ଧାରଣ କରେ । ଏହା ଅଶ୍ରବଣୀୟ, ଅଥଚ ଚିନ୍ତାଯୋଗ୍ୟ । ତୃତୀୟାବସ୍ଥାରେ ଏହା ଶ୍ରବଣଯୋଗ୍ୟ ସ୍ଥୂଳଶବ୍ଦରୂପ ଧାରଣ କରିଥାଏ । ଏହାକୁ ଶୁଦ୍ଧବିନ୍ଦୁ ବା ମହାମାୟାଙ୍କର କ୍ରମରେ ପରା, ସୂକ୍ଷ୍ମ ଓ ସ୍ଥୂଳାବସ୍ଥା କୁହାଯାଇଥାଏ । ଶୁଦ୍ଧବିନ୍ଦୁର ସ୍ଥୂଳାବସ୍ଥାରୁ ବିଭିନ୍ନ ମନ୍ତ୍ର ଏବଂ ମନ୍ତ୍ରାଧିପଙ୍କର ଶରୀର ନିର୍ମିତ ହୁଏ । (କାଳୋତ୍ତର ତନ୍ତ୍ର)

ନାଥଧର୍ମର ମୂଳ ଉତ୍ସ ଶୈବତନ୍ତ୍ର ହୋଇଥିବାରୁ ଏଥିରେ ପ୍ରଣବ, ଗାୟତ୍ରୀ ଓ ମନ୍ତ୍ର ଆଦିକୁ ପ୍ରାଧାନ୍ୟ ଦିଆଯାଇଥାଏ । ଗୋରକ୍ଷ ସିଦ୍ଧାନ୍ତ ସଂଗ୍ରହରେ ଶବ୍ଦସୃଷ୍ଟିର କ୍ରମ ବର୍ଣ୍ଣନା କରାଯାଇଅଛି । ଏଥିରେ ବର୍ଣ୍ଣିତ ଅଛି— "ପୁନଃ ଶବ୍ଦ ସୃଷ୍ଟି ପ୍ରକାରମାହ— ଏକା ସୂକ୍ଷ୍ମରୂପିଣୀ, ଦ୍ୱିତୀୟା ସ୍ଥୂଳରୂପିଣୀ, ସୂକ୍ଷ୍ମରୂପିଣୀ ପ୍ରଣବୋ, ମହାଗାୟତ୍ରୀ, ଯୋଗଶାସ୍ତ୍ରନିଷ୍ଠ ସ୍ଥୂଳରୂପିଣୀ ବ୍ରହ୍ମଗାୟତ୍ରୀ ବେଦଜନ୍ମେଷୁ । ପୂର୍ବଯୋଗଶାସ୍ତ୍ରତନ୍ତ୍ର ଶାସ୍ତ୍ରଂ ଜାତଂ, ବେଦାତ୍ ସ୍ମୃତ୍ୟାଦି ଶାସ୍ତ୍ରଂ ଜାତମ୍ ।"

ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତିଧର୍ମରେ ଶୈବତନ୍ତ୍ର ଓ ବୈଷ୍ଣବତନ୍ତ୍ରର ସମନ୍ୱୟ ଘଟିଥିଲା ବୋଲି ପୂର୍ବରୁ କୁହାଯାଇଛି । ତେଣୁ ଓଡ଼ିଆ ଜ୍ଞାନମିଶ୍ରାଭକ୍ତ ସାଧକ ବୃନ୍ଦ ବିନ୍ଦୁରୁ ଅର୍ଦ୍ଧମାତ୍ରା, ପ୍ରଣବ, ତ୍ରିବୀଜ, ଗାୟତ୍ରୀ, ବେଦ, ମନ୍ତ୍ର ଆଦିର ସୃଷ୍ଟି ହୋଇଥିବା ବିଷୟ ବର୍ଣ୍ଣନା କଲାବେଳେ ସେମାନେ ଯେ ଶୈବତନ୍ତ୍ର ଦ୍ୱାରା ପ୍ରଭାବିତ ହୋଇଛନ୍ତି ଏହା କହିବା ଅସମୀଚୀନ ନୁହେଁ । ଦ୍ୱାରକା ଦାସ ସେଥିପାଇଁ ପରଚେ ଗୀତାରେ ଲେଖିଛନ୍ତି –

ମହାଶୂନ୍ୟରୁ ଓଁକାର ବାହାର, ଓଁକାର ଘରୁ ବଉଣ ବାହାର
ଚଉଶ ଅକ୍ଷର ଗାୟତ୍ରୀମାତା, ବୀଜ ଆଠରର ଓଁକାର ପିତା
ଏଣୁ ସେ ଓଁକାର କଥା ଅପାର, କୋଟି କୋଟି ଗ୍ରନ୍ଥ ଯହୁଁ ବାହାର
ଓଁକାରୁ ଚାରିବେଦ ଜନମିଲେ, ଓଁକାରୁ ସୁରଲୋକ ଜାତହେଲେ
ଓଁକାରୁ ତ୍ରିଲୋକଯାକ ବାହାର, ଚାରିଖାନି ଏ ପଞ୍ଚାଶ ଅକ୍ଷର
ସତାଇଶ ଶାସ୍ତ୍ର ସତୁରି ବାଜେ, ପୃଥିବୀରେ ଏମନ୍ତ ସବୁଠି ରାଜେ
ଓଁକାରୁ ସବୁଏ ହୋଏ ବାହାର, ସବୁରମିତା ଓମିତ ଅକ୍ଷର ।

(୧୫ ଅଧ୍ୟାୟ)

ଦ୍ୱାରକା ଦାସ ଏହି ଯେଉଁ ଓଁକାରର ପ୍ରଶସ୍ତି କରିଛନ୍ତି ତାହା ହେଉଛି ଶୈବତନ୍ତ୍ରର ଶୂନ୍ୟବିନ୍ଦୁ । ଓଁକାର ଧ୍ୱନିର ଶେଷଧ୍ୱନି ଶୂନ୍ୟବିନ୍ଦୁଙ୍କର ପରାବସ୍ଥା, ମଧ୍ୟ ଧ୍ୱନି ସୂକ୍ଷ୍ମାବସ୍ଥା ଓ ଶ୍ରବଣ ଯୋଗ୍ୟ ଉଚ୍ଚାରଣ ଗର୍ଭିତ ଧ୍ୱନି ମୂଳାବସ୍ଥା, ଓଁ ଧ୍ୱନି ଅ, ଉ, ମ ଧ୍ୱନିର ମିଳନରୁ ହୋଇଥିବାରୁ ଏଥିରେ ହ୍ରୀଂ, କ୍ଲୀଂ ଶ୍ରୀଂ ଭନବୀଜମନ୍ତ୍ର ହରେ, ରାମ, କୃଷ୍ଣ ଆଦି ଭଜନ ନାମ ଗାୟତ୍ରୀ ମନ୍ତ୍ରର ଭୂଃ, ଭୁବଃ, ସ୍ୱଃ ଆଦିତତ୍ତ୍ୱ ନିହିତ । ଗାୟତ୍ରୀ ମନ୍ତ୍ରର ଭୂଃ, ଭୁବଃ, ସ୍ୱଃ ଉପରକୁ ଥିବା ତତ୍ସବିତୁଃ ହେଉଛନ୍ତି ଶୂନ୍ୟବିନ୍ଦୁଙ୍କର ଅପ୍ରକାଶ୍ୟ ଶବ୍ଦରୂପ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର ସମସ୍ତ ମନ୍ତ୍ର କଳ୍ପନାର ମୂଳ ଏହି ଶୂନ୍ୟବିନ୍ଦୁ ଓଁରେହିଁ ନିହିତ ସେଥିପାଇଁ ବଳରାମ ଦାସ ବ୍ରହ୍ମାଣ୍ଡ ଭୂଗୋଳରେ ଲେଖିଛନ୍ତି –

ଓଁକାରୁ ନାମହୋଇଲା ଜାତ, ନାମରୁ ବେଦଟି ସମ୍ଭୂତ

( ବ୍ରହ୍ମାଣ୍ଡଭୂଗୋଳ, ୩ୟ ଅଧ୍ୟାୟ )

## ରାଧାକୃଷ୍ଣ ସୃଷ୍ଟି ତତ୍ତ୍ୱ—

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତିସାହିତ୍ୟର ବହୁସ୍ଥଳରେ ବିଶେଷଭାବରେ ଯଶୋବନ୍ତ ଦାସଙ୍କର ପ୍ରେମଭକ୍ତି ବ୍ରହ୍ମଗୀତା ଏବଂ ଅରକ୍ଷିତ ଶିବଙ୍କର ରାଧାରସାମୃତ ଗୀତାରେ

ରାଧାକୃଷ୍ଣ ଅଦ୍ୱୟ ଯୁଗଳଙ୍କ ତତ୍ତ୍ୱ ଏବଂ ରାଧାକୃଷ୍ଣ ସୃଷ୍ଟିତତ୍ତ୍ୱ ବର୍ଣ୍ଣିତ ହୋଇଅଛି । ଏହି ସୃଷ୍ଟିତତ୍ତ୍ୱରେ ଶୈବତନ୍ତ୍ର ଏବଂ ଶ୍ରୀମଦ୍ଭାଗବତର ସୃଷ୍ଟିତତ୍ତ୍ୱ ସମ୍ମିଶ୍ରିତ ହୋଇ ଏକ ବିଚିତ୍ରରୂପ ଧାରଣ କରିଛି । ଅବବୋଧର ସୁବିଧାପାଇଁ ଏଠାରେ ତାହାର ଆଲୋଚନା କରାଯାଉଛି ।

ପୂର୍ବରୁ ଶ୍ରୀମଦ୍ଭାଗବତର ସୃଷ୍ଟିତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ କୁହାଯାଇଛି ଯେ ପ୍ରଳୟାବସ୍ଥାରେ ଏକମାତ୍ର ଅବ୍ୟକ୍ତବ୍ରହ୍ମ ଅବସ୍ଥାନ କରୁଥିଲେ । ତାଙ୍କ ମଧ୍ୟରେ ତାଙ୍କର ସ୍ୱରୂପଶକ୍ତି ବା ଅନ୍ତରଙ୍ଗା ଶକ୍ତି ଓ ବହିରଙ୍ଗା ଶକ୍ତି ( ମାୟା ବା ପ୍ରକୃତି) ଅସୁପ୍ତ ତଥା ସୁପ୍ତ ଅବସ୍ଥାରେ ଥିଲେ । ତାଙ୍କର ସୃଷ୍ଟି କରିବାର ଇଚ୍ଛାହୁଅନ୍ତେ ପ୍ରଥମେ ତାଙ୍କର ସ୍ୱରୂପଶକ୍ତିସ୍ଥିତ ଜ୍ଞାନଶକ୍ତିର ଜାଗରଣ ହେଲା । ତେଣୁ ସେ ନିର୍ଗୁଣଅବସ୍ଥାରୁ ଶକ୍ତିଯୁକ୍ତ ଅବସ୍ଥା ଜାତହେଲା । ଏହାହେଉଛି ଧ୍ୟାନର ଗୁଣସ୍ୱାଗତ ଅବସ୍ଥା । ମନୁସ୍ମୃତିରେ କୁହାଯାଇଛି-- ପରମେଶ୍ୱରଙ୍କର ସୃଷ୍ଟି କରିବାର ଇଚ୍ଛା ହୁଅନ୍ତେ ତାଙ୍କଠାରୁ ପ୍ରଥମେ ଜଳର ଉତ୍ପନ୍ନ ହେଲା—

"ଅପ ଏବ ସସର୍ଜାଦୌ ତାସୁ ବୀଜମବାସୃଜତ"

(୧୮)

ଶକ୍ତିଯୁକ୍ତ ବ୍ରହ୍ମଙ୍କର ସୃଷ୍ଟି କରିବାର ଇଚ୍ଛା ହେବାରୁ ସୁପ୍ତ ମାୟାଶକ୍ତି (ପ୍ରକୃତି) ଯାହାତାଙ୍କ ମଧ୍ୟରେ ସୂକ୍ଷ୍ମ ବିନ୍ଦୁ ରୂପରେ ଥିଲା ତାହା ପ୍ରକଟିତ ହେଲା ଏବଂ କାଳ ପ୍ରଭାବରେ ତାହା ବିକ୍ଷୁବ୍ଧ ହେଲା । ଏହି ବିକ୍ଷୁବ୍ଧ ମାୟାମଧ୍ୟରେ ବ୍ରହ୍ମଙ୍କର ଚିତ୍ତଶକ୍ତି ରୂପକ ବୀର୍ଯ୍ୟ (ବିନ୍ଦୁ) ସ୍ଥାପିତ ହେଲା ଏବଂ ଏଥିରୁ ବିରାଟଙ୍କର ଆବିର୍ଭାବ ଘଟିଲା । ବିରାଟ ହେଉଛନ୍ତି ସୃଷ୍ଟିର ଆଦ୍ୟରୂପ । ଏହାକୁ ବିଶ୍ଳେଷଣ କଲେ ଜଣାଯାଏ— ପ୍ରଥମେ ଅବ୍ୟକ୍ତ ବା ଅସତ୍ ବା ଶୂନ୍ୟାବସ୍ଥାରୁ ଗୁଣଯୁକ୍ତ (ଏଠାରେ ଅପ୍ରାକୃତ ଗୁଣ ବା ଶକ୍ତି ଅର୍ଥରେ ଗୁଣକୁ ବୁଝିବାକୁ ହେବ) ଏକ ବିନ୍ଦୁର ଆବିର୍ଭାବ ହେଲା । ତତ୍ପରେ ମାୟା ବା ପ୍ରକୃତି ରୂପକ ବିନ୍ଦୁର ଆବିର୍ଭାବ ହେଲା ଏବଂ ସେହି ମାୟାମଧ୍ୟରେ ଚିତ୍ତଶକ୍ତି ରୂପକ ବିନ୍ଦୁ ସ୍ଥାପିତ ହେଲା । ଏହି ଦୁଇବିନ୍ଦୁରୁ ତୃତୀୟ ବିନ୍ଦୁ ବିରାଟ (ବିଶ୍ୱର ପ୍ରଥମ ସୂକ୍ଷ୍ମରୂପ ବା ଭ୍ରୂଣାବସ୍ଥା) ପ୍ରକଟିତ ହେଲା । ଏହି ବିଷୟକୁ ଯଶୋବନ୍ତ ଦାସ ପ୍ରେମଭକ୍ତି ବ୍ରହ୍ମ ଗୀତାରେ ରୂପଦେଇ ଲେଖିଛନ୍ତି —

ଯେତେବେଳେ ସମସ୍ତ ଶୂନ୍ୟ ଥିଲା, ସେତେବେଳେ ପରଂବ୍ରହ୍ମ ବୁଦ୍‌ବୁଦ୍‌କାରରେ ଶୂନ୍ୟରେ ଅବସ୍ଥାନ କରୁଥିଲେ । ତାଙ୍କର ସୃଷ୍ଟି କରିବାକୁ

ଇଚ୍ଛା ହୁଅନ୍ତେ ଊର୍ମି, ଧୂର୍ମ, ଜ୍ୟୋତି, ଜ୍ୱାଳା ଓ ବିନ୍ଦୁ ନିର୍ଗତ ହୋଇ ଜଳରେ ପଡ଼ିଲା । ସେଥିରୁ ଯୋଗମାୟା ଜନ୍ମଲାଭ କଲେ । ତାତ୍ପର୍ଯ୍ୟ ହେଉଛି— ତାଙ୍କଠାରେ ଲୀନବହ୍ନିରଙ୍ଗା ମାୟାଶକ୍ତି ବା ପ୍ରକୃତି ପ୍ରଥମେ ପ୍ରକଟିତ ହେଲେ । ଯୋଗମାୟା ଜଳରେ ସ୍ଥିରହୋଇ ବସିନପାରିବାରୁ ନିଜ ନାଭିରୁ ଏକ ଲୋମ ଉପାଡ଼ି ଜଳରେ ସ୍ଥାପନକଲେ । ତାହା ବିରାଟ ବା ଶେଷଦେବ ହେଲେ । ତାହାକୁ ସେ ଜଳରେ ସ୍ଥାପନକଲେ । ଏହାର ତାତ୍ପର୍ଯ୍ୟ ହେଉଛି— ବିକ୍ଷୁବ୍ଧ ପ୍ରକୃତି ବା ମାୟାଙ୍କଠାରେ ବ୍ରହ୍ମଙ୍କର ଚିତ୍ଶକ୍ତି ସଂଯୋଗ ଫଳରେ ବିରାଟଙ୍କର ଆବିର୍ଭାବ ହେଲା । ଏଣୁ ଯୋଗମାୟା ହେଉଛନ୍ତି ଓଁର ଅର୍ଦ୍ଧମାତ୍ରା ଏବଂ ବିରାଟ ହେଉଛନ୍ତି ଅର୍ଦ୍ଧମାତ୍ରା ତଳକୁ ଥିବା ନାଗୀ ଓ ଜ୍ୱାଳାଯୁକ୍ତ 'ଓ' । ଏହା ସର୍ପାକୃତି ହୋଇଥିବାରୁ ଏହାକୁ ଶେଷଦେବ ଏବଂ ଜଗତର ମୂଳରୂପ ହୋଇଥିବାରୁ ବିରାଟ କୁହାଯାଇଥାଏ ।

ପ୍ରେମଭକ୍ତ ବ୍ରହ୍ମଗୀତା ଓର ନାଗୀକୁ ଲିଙ୍ଗ ଏବଂ କୀଳାକୁ ସୃଷ୍ଟିର ଅଧୋମୁଖୀ ଧାରାପ୍ରବାହ ବା ଲିଙ୍ଗାବୀଜ କୁହାଯାଇଛି (ଅଧୋମୁଖରେ ରହିବା ଅବସ୍ଥା ଲିଙ୍ଗୋଦ୍ଭବର ସୂଚକ ହେତୁ ବିରାଟଙ୍କୁ ହ୍ରୀଂ ବୀଜ ବା ଲିଙ୍ଗାବୀଜ ରୂପେ ପ୍ରେମଭକ୍ତ ବ୍ରହ୍ମଗୀତାରେ କୁହାଯାଇଛି । ଓଁର ଅର୍ଦ୍ଧମାତ୍ରା ହେଉଛନ୍ତି ମାୟାଶକ୍ତି ବା ପ୍ରକୃତି ଏବଂ ଓଁ ହେଉଛନ୍ତି ବ୍ରହ୍ମଙ୍କର ଚିତ୍ଶକ୍ତି ବା ଶିବ । ତେଣୁ ଏହା ଶକ୍ତି-ଗର୍ଭିତ ଶିବସ୍ୱରୂପକ । ଏହାକୁ ଯୋନିମଧ୍ୟସ୍ଥ ଲିଙ୍ଗ ରୂପେ ବର୍ଣ୍ଣନା କରାଯାଇଥାଏ । ଏଥିରୁ ସୃଷ୍ଟି ହୁଏ ବୋଲି ବ୍ରହ୍ମସଂହିତାରେ କୁହାଯାଇଛି, ଯେ-

"ଲିଙ୍ଗ ଯୋନ୍ୟାତ୍ମିକା ଜାତା ଇମା ମାହେଶ୍ୱରୀ ପ୍ରଜା" (ଶ୍ଳୋକ—୨)

ପ୍ରେମଭକ୍ତ ବ୍ରହ୍ମଗୀତାରେ ଯଶୋବନ୍ତ ଠିକ୍ ସେହିକଥା କହିଛନ୍ତି । ତାଙ୍କ ବର୍ଣ୍ଣନାନୁଯାୟୀ 'ଓ' ଉପରିସ୍ଥିତ ନାଗୀ ଲିଙ୍ଗ ଆକାରରେ ଯୋଗମାୟାଙ୍କର ଶରୀର ଭେଦକଲା ।

'ଓଁ' ର ଉପର ବିନ୍ଦୁ ହେଉଛନ୍ତି ରାଧାକୃଷ୍ଣଙ୍କର ମିଳିତ ରୂପ ବା ଅଦ୍ୱୟ ଯୁଗଳଙ୍କ ରୂପ । ରାଧାକୃଷ୍ଣଙ୍କର ଉତ୍ପତ୍ତି ସଂପର୍କରେ ଏହି ଗ୍ରନ୍ଥରେ କୁହାଯାଇଛି ଯେ ଯୋଗମାୟା ଶୂନ୍ୟକୁ ଚାହିଁ ନିଜର ଉତ୍ପତ୍ତିବିଷୟ ଚିନ୍ତା କରିବାରୁ ଶୂନ୍ୟରେ ଜ୍ୟୋତିମଣ୍ଡଳ, ତତ୍ପରେ ଅଗ୍ନିମଣ୍ଡଳ, ତତ୍ପରେ ହିମମଣ୍ଡଳ ଦେଖାଗଲା (ଏଠାରେ ଯୋଗତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ କୁହାଯାଇଥିବା ତ୍ରିଲକ୍ଷ୍ୟକୁ ସ୍ମରଣ କରାଇ ଦିଆଯାଉଛି) । ତ୍ରିଲକ୍ଷ୍ୟରେ ପ୍ରଥମେ ସୂର୍ଯ୍ୟ ସଦୃଶ ଜ୍ୟୋତି ତତ୍ପରେ ଅଗ୍ନି ସଦୃଶ ଜ୍ୱାଳା ଓ ତତ୍ପରେ ଆହ୍ଲାଦକର ଜ୍ୟୋତି ବା ଜଳଜ୍ୟୋତି ଧ୍ୟାନ-

ଗୋଚର ହୋଇଥାଏ । ଯଶୋବନ୍ତ ଦାସ ଏହି ବିଷୟକୁ ଏଠାରେ ବର୍ଣ୍ଣନା କରିଛନ୍ତି ) ।

ଯୋଗମାୟା ଶୂନ୍ୟବ୍ରହ୍ମଙ୍କୁ ଧ୍ୟାନ କରିବାରୁଁ ଊର୍ମି, ଧୂର୍ମି, ଜ୍ୟୋତି, ଜ୍ୱାଳା ଓ ମହାରସ ଏଁଶ ଯୋଗମାୟାଙ୍କ ଅନ୍ତଃକରେ ପ୍ରବେଶ କଲା । ସେ ତାହାକୁ ପାନକରି ଗର୍ଭବତୀ ହେଲେ । ସେହି ଗର୍ଭରେ ଯମଜ ସନ୍ତାନ ରହିଲେ । ବ୍ରହ୍ମଙ୍କ ଜ୍ୟୋତିରୁ କନ୍ୟା ସନ୍ତାନ ଏବଂ ରସରୁ ପୁତ୍ରସନ୍ତାନ ଗର୍ଭରେ ରୂପନେଲେ । କନ୍ୟାସନ୍ତାନ ହେଉଛନ୍ତି ଜ୍ୟୋତିଃରୂପା ଶ୍ରୀରାଧା ଏବଂ ପୁତ୍ର ସନ୍ତାନ ହେଉଛନ୍ତି ରସ ରୂପ ଶ୍ରୀକୃଷ୍ଣ । ଯଶୋବନ୍ତଙ୍କର ଏହି କଳ୍ପନା ଆଦୌ ଅବୈଦିକ ନୁହେଁ । ଉପନିଷଦରେ ବ୍ରହ୍ମଙ୍କ ସ୍ୱରୂପକୁ ରସମୟ କୁହାଯାଇଛି—

'ରସୋବୈସଃ ଲବ୍ଧ୍ୱାନନ୍ଦୀ ଭବତି'

ବ୍ରହ୍ମଙ୍କର ଅନ୍ତଃରୂପ ହେଉଛି ରସମୟ ଏବଂ ଏହା ଆହ୍ଲାଦକର ଜ୍ୟୋତି ମଣ୍ଡିତ । ଯଶୋବନ୍ତ ଲେଖିଛନ୍ତି—ଗର୍ଭସ୍ଥ ଯମଜ ସନ୍ତାନ ଜନ୍ମ ନହବାରୁ ଯୋଗ-ମାୟା ଗର୍ଭକୁ ଚିପିଲେ । ଫଳରେ ଗର୍ଭସ୍ଥ ଯମଜସନ୍ତାନ ଯୋଡ଼ି ହୋଇ ଗୋଟିଏ ରୂପନେଲେ । ଏହି ରୂପର ଅର୍ଦ୍ଧଭାଗନାରୀ ଏବଂ ଅର୍ଦ୍ଧଭାଗ ହେଉଛନ୍ତି ପୁରୁଷ । ପୁରୁଷ ଭାଗ କୃଷ୍ଣ, ନାରୀଭାଗ ରାଧା ।

ଏହାକୁ ଅଦ୍ୱୟ ଯୁଗଳଙ୍କ ରୂପ କୁହାଯାଇଥାଏ । ଏହାକୁ ରୂପଦେଇ ଅରକ୍ଷିତ ଶିବ ରାଧାରସାମୃତ ଗୀତାରେ ଲେଖିଛନ୍ତି—

ଦଗଧ କାଞ୍ଚନ ପ୍ରାୟେ ରାଧିକାର ଜ୍ୟୋତି
ନବ ଜଳଧର ପ୍ରାୟେ ଶ୍ରୀକୃଷ୍ଣର ଜ୍ୟୋତି
ଦୁହିଁଙ୍କର ରୂପକୁ ଯେ ଦୁହେଁ ଶୋଭାପାଇ
ପଲକେ ବିଶ୍ରାମନାହିଁ ରମୁଥାନ୍ତି ଦୁଇ

× × ×

ବାମେ ରତ୍ନ ଚୁଡ଼ୀ ଶୋହେ ଡ଼ାହାଣେ କଙ୍କଣ
ଅର୍ଦ୍ଧ ଅର୍ଦ୍ଧ ଅଙ୍ଗ ଯହୁଁ ହୋଇଛି ନିର୍ବାଣ

ଏକ ପୀତବସନେ ଦୁହିଙ୍କ କଟି ରମ୍ଭ
ପାଦେକ ନୂପୁର ପାଦେ ବାଜେଣି ଶୋଭଇ
(ଦ୍ୱିତୀୟ ଅଧ୍ୟାୟ)

ଜ୍ଞାନମିଶ୍ରା ଭକ୍ତି ଧର୍ମର ଏହି ଅଦ୍ୱୟଯୁଗଳଙ୍କ ରାଧାକୃଷ୍ଣରୂପ କଳ୍ପନାରେ ଶୈବତନ୍ତ୍ରର ଅର୍ଦ୍ଧନାରୀଶ୍ୱର କଳ୍ପନା ସହିତ ବହୁତ ସାମ୍ୟ ରହିଛି । ଯଶୋବନ୍ତଙ୍କ ବର୍ଣ୍ଣନାନୁଯାୟୀ ଓଁକାରର ଉପରେ ଥିବା ଅର୍ଦ୍ଧମାତ୍ରା ହେଉଛନ୍ତି ଯୋଗମାୟା ଏବଂ ବିନ୍ଦୁ ହେଉଛନ୍ତି ରାଧାକୃଷ୍ଣଙ୍କର ଅଦ୍ୱୟ ଯୁଗଳଙ୍କରୂପ । ଓ ହେଉଛନ୍ତି ବିରାଟ ଏବଂ ଓର ନାଦୀ ହେଉଛି ଲିଙ୍ଗ । ଚିତ୍ରରେ ଏହାକୁ ଏହିଭଳି ଦେଖାଇ ଦିଆ-ଯାଇପାରେ । (ଚିତ୍ରଟି ପରିଶିଷ୍ଟ (କ)ରେ ଦ୍ରଷ୍ଟବ୍ୟ)

ପୁନଶ୍ଚ ସେ ଓଁର ବିନ୍ଦୁକୁ ରାମନାମ କହି ର ଓ ମର ମିଳିତ ରୂପ କହିଛନ୍ତି, 'ର' ହେଉଛନ୍ତି ରାଧା ଏବଂ 'ମ' ହେଉଛନ୍ତି କୃଷ୍ଣ । ପୁଣି ସେ ଏହି ଗ୍ରନ୍ଥରେ ଲେଖିଛନ୍ତି କୃଷ୍ଣ ହେଉଛନ୍ତି କ୍ଲୀଂ ବୀଜ ରାଧା ହେଉଛନ୍ତି ଶ୍ରୀଂ ବୀଜ । ଏହା ଓଁକାର ବିନ୍ଦୁରେ ମିଳିତ ହୋଇଛନ୍ତି । ଓଁକାରର ତଳେ ଓ ହେଉଛନ୍ତି ବିରାଟ ଏବଂ ହ୍ରୀଂ ବୀଜ । ବ୍ରହ୍ମ ସଂହିତାରେ ମଧ୍ୟ କୁହାଯାଇଛି କୃଷ୍ଣ ହେଉଛନ୍ତି କାମବୀଜ (କ୍ଲୀଂ) । ସେ ରମାବୀଜ [ଶ୍ରୀଂ ସହିତ ମିଳିତ ହୋଇ ନିତ୍ୟଦ୍ୱାରରେ ବିରାଜିତ । ଏହିପରି ଭାବରେ ଯଶୋବନ୍ତ ଓଁକୁ ହ୍ରୀଂ, କ୍ଲୀଂ, ଶ୍ରୀଂ ଏହି ତ୍ରିବୀଜମନ୍ତ୍ରର ମିଳନ-ସ୍ଥଳ କହିଛନ୍ତି । ଏହି ତ୍ରିବୀଜମନ୍ତ୍ର ଯେଉଁ ତ୍ରିକୋଣ ସୃଷ୍ଟି କରେ, ତା ମଧ୍ୟରେ ରାଧାକୃଷ୍ଣଙ୍କର ଲୀଳା ସମ୍ପାଦିତ ହୁଏ । ପୁନଶ୍ଚ ସେ କହିଛନ୍ତି ତ୍ରିକୋଣରେ ତିନି ବିନ୍ଦୁରେ କ୍ଲୀଂ ରୂପକ କୃଷ୍ଣ, ଶ୍ରୀଂ ରୂପକ ରାଧା ଓ ହ୍ରୀଂ ରୂପକ ଚନ୍ଦ୍ରାବଳୀ ଅବସ୍ଥାନ କରନ୍ତି । ଓଁରୁ ରାମନାମ ତ୍ରିବୀଜ ଓ ତ୍ରିକୋଣ ସୃଷ୍ଟି ହେବା ବିଷୟ ବର୍ଣ୍ଣନା କଲାବେଳେ ପୁଣି ସେ ଷଟକୋଣ କଥା କହିଛନ୍ତି । ଦୁଇଟି ବିପରୀତମୁଖୀ ତ୍ରିକୋଣକୁ ପରସ୍ପର ସଂଲଗ୍ନ କରି ସ୍ଥାପନ କଲେ ସେଥିରେ ଷଟ୍‌କୋଣ ସୃଷ୍ଟି ହୋଇଥାଏ । ଏବଂ ଷଟ୍‌କୋଣର ଛଅଟି କୋଣରେ ହ୍ରୀଂ, କ୍ଲୀଂ, ଶ୍ରୀଂ ଓ ହ୍ରୀଂ, କ୍ଲୀଂ, ଶ୍ରୀଂକୁ ସ୍ଥାପନ କଲେ ତାହା ଷଟ୍‌କୋଣାକୃତି ଯନ୍ତ୍ର ହୋଇଥାଏ । ଷଟ୍‌କୋଣାକୃତି ଯନ୍ତ୍ର ମଧ୍ୟରେ 'ଗୋପୀଜନ ବଲ୍ଲଭାୟ ସ୍ୱାହା' ଏହି ଗୋପାଳମନ୍ତ୍ରକୁ ସ୍ଥାପନ କଲେ ତାହା ପ୍ରେମଷୋଡଶୀ ମନ୍ତ୍ରରେ ପରିଣତ ହୁଏ । ପ୍ରେମ ଷୋଡ଼ଶୀ ମନ୍ତ୍ର ହେଉଛି ରାଧା-କୃଷ୍ଣଙ୍କର ପ୍ରେମପଲଙ୍କ ।

ଉପରୋକ୍ତ ତଥ୍ୟକୁ ବିଶ୍ଳେଷଣ କଲେ ଜଣାଯାଏ, ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ-ରେ ସମସ୍ତ ବର୍ଣ୍ଣମାଳା ଓ ମନ୍ତ୍ର ସମ୍ଭୂତ ହୋଇଛି ବୋଲି କୁହାଯାଇଛି । ପ୍ରଣବ ବା ଶବ୍ଦ ବ୍ରହ୍ମରୁ ସୃଷ୍ଟ ।

## ଧ୍ୱନିରୁ ବର୍ଣ୍ଣ ଓ ବର୍ଣ୍ଣର ମିଳନରେ ପ୍ରାଣବାୟୁ ସୃଷ୍ଟି—

ପୂର୍ବରୁ କୁହାଯାଇଛି ଶୁଦ୍ଧ ବିନ୍ଦୁ କ୍ରମଶଃ ପ୍ରସାରିତ ହୋଇ ସ୍ଥୂଳତର ରୂପ ନିଏ ଏବଂ ଏଥିରୁ ବିଭିନ୍ନ ବର୍ଣ୍ଣମାଳା ସୃଷ୍ଟି ହୁଏ । ଶୈବ ତନ୍ତ୍ରରେ କୁହାଯାଇଛି ପରମେଶ୍ୱର ନିଜକୁ ଜାଣିବାକୁ ଚାହାନ୍ତେ ପ୍ରଥମେ "ଅହଂ" ଶବ୍ଦ ଉଚ୍ଚାରିତ ହେଲା । ଏହା ଧ୍ୱନିର ଆଦ୍ୟ ବିନ୍ଦୁ । ଏହା ପ୍ରସାରିତ ହୋଇ ସମସ୍ତ ବର୍ଣ୍ଣମାଳା ସୃଷ୍ଟି ହେଲା [ସ୍ୱର ଏବଂ ବ୍ୟଞ୍ଜନ] ହୋଇ ଆମର ସମସ୍ତ ବର୍ଣ୍ଣମାଳା ଅ ରୁ ଆରମ୍ଭ । ହ ପର୍ଯ୍ୟନ୍ତ ପରିବ୍ୟାପ୍ତ [କ୍ଷ ସଂଯୁକ୍ତ ବର୍ଣ୍ଣ ହେତୁ ଏହା ଏଥିରେ ଗଣାଯାଇ ନାହିଁ] ଏହି ବର୍ଣ୍ଣ-ଗୁଡିକର ସଂଖ୍ୟା ୪୯ ଏବଂ ଏହାକୁ ଶକ୍ତିରୂପା ଊନପଞ୍ଚାଶତ୍ ବର୍ଣ୍ଣମାତୃକା କୁହାଯାଇଥାଏ । ପୁରାଣମାନଙ୍କରେ ଯେଉଁ ୪୯ ପବନର କଥା କୁହାଯାଇଛି ତାହା ଏହି ବର୍ଣ୍ଣମାଳାରୁ ହିଁ କଳ୍ପିତ । ଆମେ ୪୯ଟି ବର୍ଣ୍ଣକୁ ଉଚ୍ଚାରଣ କଲାବେଳେ ପବନ ୪୯ ଥର ଆଘାତ ପ୍ରାପ୍ତ ହୋଇ ବର୍ଣ୍ଣ ରୂପ ନିଏ । ପ୍ରାଣବାୟୁ ପ୍ରସୃଶ ଭାଗରେ ବିଭକ୍ତ ହୋଇ ଦେହ ମଧ୍ୟ ବିଭିନ୍ନ ସ୍ଥାନରେ ଅବସ୍ଥାନ କରେ । ପୂର୍ବରୁ ଯୋଗତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ ଦର୍ଶାଇ ଦିଆଯାଇଛି ଗୁହ୍ୟ ଚକ୍ରରେ ବଶଷସ, ଲିଙ୍ଗ ଚକ୍ରରେ ବ, ଭ, ମ, ଯ, ର, ଲ ନାଭି ଚକ୍ରରେ ଡ, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ହୃଦ ଚକ୍ରରେ କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ, ଟ, ଠ, କଣ୍ଠ ଚକ୍ରରେ ଅ, ଆ, ଇ, ଈ, ଉ, ଊ, ଋ, ୠ, ଌ, ୡ, ଏ, ଐ, ଓ, ଔ, ଅଂ, ଅଃ ଓ ଆଜ୍ଞା ଚକ୍ରରେ ହ, କ୍ଷ, ବର୍ଣ୍ଣ ଅବସ୍ଥାନ କରେ । ଏହା ସୂଚାଇ ଦିଏ ଏହି ବର୍ଣ୍ଣଗୁଡ଼ିକ ମନୁଷ୍ୟର ପ୍ରାଣ ଅଟନ୍ତି । ଅଶୁଦ୍ଧ ବିନ୍ଦୁରୁ ମହତତ୍ତ୍ୱ ଆଦି ୨୫ ତତ୍ତ୍ୱ ସୃଷ୍ଟି ହୋଇ ଯେପରି ମନୁଷ୍ୟର ଶରୀର ସୃଷ୍ଟି ହୁଏ, ସେହିପରି ଶୁଦ୍ଧ ବିନ୍ଦୁରୁ ବର୍ଣ୍ଣ ସମୂହ ସୃଷ୍ଟି ହୋଇ ପ୍ରାଣକୁ ନିର୍ଦ୍ଦିଷ୍ଟ ରୂପ ଦିଏ । ଏହି ପ୍ରସଙ୍ଗ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର ବହୁ ସ୍ଥଳରେ ବହୁ ଚର୍ଚ୍ଚିତ ହୋଇଛି । ବର୍ଣ୍ଣଗୁଡ଼ିକ ପରମେଶ୍ୱରଙ୍କର ପ୍ରକାଶ ରୂପ ବା ପ୍ରସାରିତ ରୂପ । ଏହା ପ୍ରାଣର ଆଧାର ।

ଏହିଭଳି ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ସୃଷ୍ଟି ତତ୍ତ୍ୱକୁ ବିଭିନ୍ନ ରୂପରେ ଉପସ୍ଥାପନ କରାଯାଇଛି । ଏ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଲାଭ କଲେ ସେହି ସୃଷ୍ଟି-ତତ୍ତ୍ୱ ବିଶୃଙ୍ଖଳ ଅଭିବ୍ୟକ୍ତ ରୂପ ଅନୁଭୂତ ନହୋଇ ଏକ ନିର୍ଦ୍ଦିଷ୍ଟ ଅନୁଶାସନ ପରିଚାଳିତ ରୂପେ ଉପଲବ୍ଧ ହେବ ।



# ଚତୁର୍ଥ ଅଧ୍ୟାୟ

# ଭଗବତ୍ ତତ୍ତ୍ୱ

## (କ) ବ୍ରହ୍ମତତ୍ତ୍ୱ—

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର କେନ୍ଦ୍ରବିନ୍ଦୁ ହେଉଛନ୍ତି ବ୍ରହ୍ମ । ଏହି ସାହିତ୍ୟର ଯେତେ ତତ୍ତ୍ୱ ଯେତେ ବର୍ଣ୍ଣନା ସେ ସମସ୍ତ ବ୍ରହ୍ମଙ୍କର ସର୍ବବ୍ୟାପି ରୂପ ଓ ସମସ୍ତ ଶକ୍ତିକୁ ବୁଝାଇବାରେ ହିଁ ପର୍ଯ୍ୟବସିତ । ତେଣୁ ବ୍ରହ୍ମ କଣ ତାହା ଏଠାରେ ସ୍ପଷ୍ଟଇବା ହିଁ ପ୍ରାସଙ୍ଗିକ ।

ଭାରତୀୟ ଧର୍ମ ଧାରଣାରେ ବ୍ରହ୍ମଚିନ୍ତନ ପ୍ରୟାସ ଉପନିଷଦ ଯୁଗରୁ ଆରମ୍ଭ ହୋଇଥିବା ଲକ୍ଷ୍ୟ କରାଯାଇଥାଏ । ବୈଦିକଯୁଗର ପୂର୍ବାର୍ଦ୍ଧରେ ରଚିତ ବେଦ ସମୂହରୁ ଅଥର୍ବବେଦକୁ ବାଦ୍ ଦେଲେ ଅନ୍ୟ ତିନି ବେଦରେ ବ୍ରହ୍ମବିଷୟକ ବର୍ଣ୍ଣନା ବିଶେଷ ଦେଖାଯାଏ ନାହିଁ । ଏଥିରେ ଇନ୍ଦ୍ର, ମିତ୍ର, ବରୁଣ ଆଦି ଅନେକ ଦେବା-ଦେବୀଙ୍କର ସ୍ତୁତି ବର୍ଣ୍ଣିତ କେବଳ ଋଗ୍‌ବେଦରେ ବ୍ରହ୍ମଭିନ୍ନ ହିରଣ୍ୟଗର୍ଭଙ୍କର ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଯଥା—

ହିରଣ୍ୟଗର୍ଭଃ ସମବର୍ତ୍ତିତାଗ୍ରେ ଭୂତସ୍ୟଜାତଃ
ପତିରେକ ଆସୀତ୍
ସ ଦାଧାର ପୃଥିବୀଂଦ୍ୟାମୁତେମାଂ କସ୍ମୈ ଦେବାୟ
ହବିଷା ବିଧେମ
(ଋ. ବେ ୧୦/୧୨୧/୧)

ଅଥବା ବେଦରେ ବର୍ଣ୍ଣିତ ସ୍କମ୍ଭ ଓ ଉଚ୍ଛିଷ୍ଟ ହେଉଛନ୍ତି ବ୍ରହ୍ମ ପର୍ଯ୍ୟାୟ ବାଚକ ।

ବ୍ରହ୍ମଙ୍କର ବ୍ୟାପକ ବର୍ଣ୍ଣନା ବୈଦିକ ଯୁଗରେ ପରବର୍ତ୍ତୀରେ ଉପନିଷଦ-ମାନଙ୍କରେ କରାଯାଇଥିଲା । ବେଦର ବହୁ ଦେବାଦେବୀ ସ୍ଥାନରେ ଏକେଶ୍ୱରବାଦ ପ୍ରତିଷ୍ଠାର ପ୍ରଚେଷ୍ଟା ବ୍ରହ୍ମ ଚିନ୍ତନରେ ପ୍ରତିଫଳିତ ହୋଇଛି । ବ୍ରହ୍ମ ଶବ୍ଦର ମୂଳ ଅନ୍ୱେଷଣ କରିବାକୁ ଗଲେ ଦେଖାଯାଏ, ଏହା 'ବୃଂହ' ଧାତୁରୁ ନିଷ୍ପନ୍ନ । 'ବୃହଂତି ବୃହ୍ୟଂଯତି ଚ ଇତି ବ୍ରହ୍ମ' ଅର୍ଥାତ୍ ଯେ ନିଜେ ବଡ଼ ଏବଂ ଯେ ବଡ଼ କରନ୍ତି ସେ ହେଉଛନ୍ତି ବ୍ରହ୍ମ । ଋଗ୍‌ବେଦରେ ବିଷ୍ଣୁ ଶବ୍ଦ ଯେଉଁ ଅର୍ଥରେ ପ୍ରଯୁକ୍ତ ଉପନିଷଦରେ ବ୍ରହ୍ମଶବ୍ଦ ପ୍ରାୟତଃ ସେହି ଅର୍ଥରେ ପ୍ରଯୁକ୍ତ କହିଲେ ଭୁଲ୍ ହେବ ନାହିଁ । ଉଭୟର ଅର୍ଥ ହେଉଛି ବ୍ୟାପକ ଏବଂ ସର୍ବଜ୍ଞ ପ୍ରତିଭଣକାରୀ । ତେଣୁ ବ୍ରହ୍ମ ଏବଂ ବିଷ୍ଣୁ କଳ୍ପନା, ବସ୍ତୁତଃ ଏକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଈଶ, କଠ, କେନ, ପ୍ରଶ୍ନ, ମୁଣ୍ଡକ, ମାଣ୍ଡୁକ୍ୟ ତୈତ୍ତିରୀୟ, ଐତରେୟ, ଛାନ୍ଦୋଗ୍ୟ, ବୃହଦାରଣ୍ୟକ, ଶ୍ୱେତାଶ୍ୱତର ଓ ମୈତ୍ରୀ ଆଦି ମୁଖ୍ୟ ବାରଟି ଉପନିଷଦରେ ଏବଂ ଶ୍ରୀମଦ୍ଭଗବତ ଗୀତାରେ ବ୍ରହ୍ମ ବିଷୟକ ଚର୍ଚ୍ଚା ଦେଖିବାକୁ ମିଳିଥାଏ । ଏଥିରେ ବର୍ଣ୍ଣିତ ବ୍ରହ୍ମଙ୍କର ନିର୍ବିଶେଷ ବା ନିର୍ଗୁଣ ରୂପ ଓ ସବିଶେଷ ବା ସଗୁଣ ରୂପ ଏହିପରି ଦୁଇ ପ୍ରକାର ରୂପ ଦେଖିବାକୁ ମିଳିଥାଏ । ବ୍ରହ୍ମଙ୍କର ସବିଶେଷ ବା ସଗୁଣ ରୂପ କଳ୍ପନାରୁ ପରବର୍ତ୍ତୀ କାଳରେ ଶୈବ, ବୈଷ୍ଣବ ଆଦି ଧର୍ମଗୁଡ଼ିକର ସୃଷ୍ଟି ହୋଇଅଛି । ସମସ୍ତ ପୁରାଣମାନଙ୍କରେ ନିର୍ଗୁଣ ବ୍ରହ୍ମଙ୍କର ବର୍ଣ୍ଣନା ଥିଲେ ହେଁ ସଗୁଣ ବ୍ରହ୍ମଙ୍କର ମହିମା ଲୀଳା ଓ ଶକ୍ତି ବର୍ଣ୍ଣନା ଅଧିକ ଅନୁଭୂତ ହୋଇଥାଏ ।

ଉପନିଷଦମାନଙ୍କରେ ବ୍ରହ୍ମଙ୍କର ନିର୍ଗୁଣ ରୂପ-ବର୍ଣ୍ଣନା ଯେଉଁଠାରେ କରାଯାଇଛି ସେଥିରେ ନେତି ବାଚକ ଅନିର୍ବଚନୀୟ ଭାବ ହିଁ ଲକ୍ଷିତ ହୋଇଥାଏ ।

ଯଥା— 'ନୈବବାଚା ନ ମନସା ପ୍ରାପ୍ତୁଂ ଶକ୍ୟୋ ନ ଚକ୍ଷୁଷା'
(କଠ ୬ । ୧୨)

'ଅଶବ୍ଦମସ୍ପର୍ଶମରୂପମବ୍ୟୟଂ ତଥାରସଂ ନିତ୍ୟମଗନ୍ଧବଚ୍ଚ ଯତ୍'
(କଠ ୩ । ୧୫

'ଅସ୍ଥୂଲମଣ୍ୱହ୍ରସ୍ୱମଦୀର୍ଘମ୍' (ବୃହଦାରଣ୍ୟକ—୩ । ୮ । ୮)

ଯେଉଁଠି ବ୍ରହ୍ମଙ୍କୁ ସଗୁଣ ବ୍ରହ୍ମ ରୂପେ ବର୍ଣ୍ଣନା କରାଯାଇଛି, ସେଠାରେ ତାଙ୍କୁ ଶକ୍ତିଯୁକ୍ତ, ଆନନ୍ଦ ଲକ୍ଷଣ ମଣ୍ଡିତ ଓ ରସମୟ ଭାବେ ଚିତ୍ରଣ କରାଯାଇଛି । ସେ ହୋଇଛନ୍ତି ସୃଷ୍ଟି କର୍ତ୍ତା । ଯଥା—

'ଆନନ୍ଦଂ ବ୍ରହ୍ମଣୋ ବଦ୍ୱାନ୍ ନ ବଭେଦ କୁତଶ୍ଚନେତ'
(ତୈତ୍ତିରୀୟ ବ୍ରହ୍ମବଲ୍ଲୀ ୧ । ୮)

ପରାସ୍ୟ ଶକ୍ତିର୍ବିବିଧୈବ ଶ୍ରୂୟତେ
ସ୍ୱାଭାବିକୀ ଜ୍ଞାନବଳ କ୍ରିୟା ଚ
(ଶ୍ୱେତାଶ୍ୱତର ୬ । ୯)

'ଅପାଣିପାଦ ଜବନୋ ଗ୍ରହୀତା । ପଶ୍ୟତ୍ୟଚକ୍ଷୁ ଶ୍ରୁଣୋତ୍ୟକର୍ଣ୍ଣଃ
ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା
ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍' (ଶ୍ୱେତାଶ୍ୱତର ୩ । ୧୯)
'ଯଦୈବ ତତ୍ ସୁକୃତ ରସୋ ବୈ ସଃ' (ତୈତ୍ତିରୀୟ ଶିକ୍ଷାବଲ୍ଲୀ ୮।୧)
'ଏଷ ସର୍ବେଷୁ ଭୂତେଷୁ ଗୂଢ଼ାତ୍ମା ନ ପ୍ରକାଶତେ' (କଠ ୩ । ୧୨)
'ପ୍ରାଣ ଇତି ସ ବ୍ରହ୍ମ ତ୍ୟାଦତ୍ୟାଚକ୍ଷତେ'
(ବୃହଦାରଣ୍ୟକ ୮ । ୩ । ୧୦)

ଶ୍ୱେତାଶ୍ୱତର ଉପନିଷଦ କୁହେ ବ୍ରହ୍ମ ପୁରୁଷ ଅଟନ୍ତି ପୁଣି ସ୍ତ୍ରୀ ଅଟନ୍ତି, ପୁଣି କୁମାରୀ ଅଟନ୍ତି ।

ତ୍ୱଂ ସ୍ତ୍ରୀ ତ୍ୱଂ ପୁମାନସି ତ୍ୱଂ କୁମାର ଉତ ବା କୁମାରୀ (୪ । ୨)

ବ୍ରହ୍ମତତ୍ତ୍ୱସମ୍ବଳିତ ଭିନ୍ନମୁଖୀ ବର୍ଣ୍ଣନାଗୁଡ଼ିକୁ ବ୍ୟାସଦେବ ଶୃଙ୍ଖଳିତ ଭାବରେ ରଖିବା ପାଇଁ ବ୍ରହ୍ମସୂତ୍ର ଗ୍ରନ୍ଥ ପ୍ରଣୟନ କରିଥିଲେ ଏବଂ ଏହାର ଉପରେ ବିଭିନ୍ନ ବେଦାନ୍ତ ଦର୍ଶନଗୁଡ଼ିକ ପରବର୍ତ୍ତୀ କାଳରେ ଆତ୍ମପ୍ରକାଶ କରିଥିଲା ।

ଶ୍ରୀମଦ୍ଭାଗବତ ମହାପୁରାଣରେ ବ୍ରହ୍ମସମ୍ପର୍କିତ ତତ୍ତ୍ୱକୁ ତିନୋଟି ପ୍ରଧାନ ଶ୍ରେଣୀରେ ବିଭକ୍ତ କରାଯାଇଛି । ଯଥା—

ବଦନ୍ତି ତତ୍ତ୍ୱଂ ତତ୍ତ୍ୱବିଦସ୍ତତ୍ତ୍ୱଂ ଯଦ୍ଜ୍ଞାନମଦ୍ୱୟମ୍
ବ୍ରହ୍ମେତି, ପରମାତ୍ମେତି, ଭଗବାନିତି ଶବ୍ଦ୍ୟତେ

ଏହି ଶ୍ଳୋକର ତାତ୍ପର୍ଯ୍ୟ ହେଉଛି—

୧ । ବ୍ରହ୍ମଙ୍କର ନିର୍ଗୁଣାବସ୍ଥା ବ୍ରହ୍ମପଦବାଚ୍ୟ

୨ । ବ୍ରହ୍ମଙ୍କର ଚତୁର୍ଥାଂଶ ଯାହା ଜଗତ ଓ ପ୍ରାଣୀ ଜଗତରେ ପରିପୂର୍ଣ୍ଣ ତାହା ପରମାତ୍ମା ପଦବାଚ୍ୟ ।

୩ । ଭଗ ବା ଷଡ଼ୈଶ୍ୱର୍ଯ୍ୟ ବା ଷଡ଼ଗୁଣରେ ଯୁକ୍ତ ବ୍ରହ୍ମ ଭଗବାନ୍ ପଦବାଚ୍ୟ । ପଞ୍ଚରାତ୍ର ଧର୍ମରେ ବ୍ରହ୍ମଙ୍କର ସଗୁଣ ନିରୂପଣ ଠିକ୍ ଏହି ରୀତିରେ କରାଯାଇଛି ।

ବ୍ରହ୍ମଙ୍କ ନିର୍ଗୁଣ କଳ୍ପନାର ମୂଳତତ୍ତ୍ୱ—

ବ୍ରହ୍ମଙ୍କର ନିର୍ଗୁଣ ପୁରୁଷ ରୂପ କଳ୍ପନା ମୁଖ୍ୟତଃ ସାଂଖ୍ୟ ଧର୍ମ ଦ୍ୱାରା ପ୍ରଭାବିତ । ଅନେକ ଚିନ୍ତକ ଉପନିଷଦର ବ୍ରହ୍ମ ବର୍ଣ୍ଣନା, ସାଂଖ୍ୟ ଧର୍ମରେ ନିର୍ଗୁଣ ପୁରୁଷ କଳ୍ପନାର ସଂଯୋଗ କରିଥିଲେ । କିନ୍ତୁ ସାଂଖ୍ୟ ଦର୍ଶନ ଯେ ଅତି ପ୍ରାଚୀନ, ତାହା ଏହି ଗ୍ରନ୍ଥର ପ୍ରାରମ୍ଭରେ ଆଲୋଚିତ ହୋଇଛି, ସାଂଖ୍ୟ ଦର୍ଶନରେ ପୁରୁଷ ପ୍ରକୃତି ତତ୍ତ୍ୱ ସ୍ୱୀକୃତ । ସାଂଖ୍ୟର ପୁରୁଷ ହେଉଛି ଚେତନ, ନିତ୍ୟ ନିର୍ଗୁଣ ଓ ବହୁ । ବିଭିନ୍ନ ଘଟରେ ପ୍ରତିବିମ୍ବିତ ଏକ ଆକାଶ ଯେପରି ବହୁ ଆକାଶ ରୂପରେ ପ୍ରତିଭାତ ହୁଏ, ସେହିପରି ଭିନ୍ନ ଭିନ୍ନ ଦେହ ଓ ଉପାଧି ଯୋଗେ ସେହି ଏକ ପୁରୁଷ ଅନେକ ପୁରୁଷ ରୂପରେ ପ୍ରତିଭାତ ହୁଏ ।

'ଉପାଧି ଭେଦେଽପ୍ୟେକସ୍ୟ ନାନା ଯୋଗେ ଆକାଶସ୍ୟେବ ଘଟାଦିଭିଃ' (ସାଂଖ୍ୟ ଦର୍ଶନ ୧ । ୧୫୦) 'ଜନ୍ମାଦି ବ୍ୟବସ୍ଥାତଂ ବହୁତ୍ୱଂ' (ସାଂଖ୍ୟଦର୍ଶନ ୧/୧୪୯) ସାଂଖ୍ୟର ପୁରୁଷ ବା ଆତ୍ମା ନିତ୍ୟମୁକ୍ତ ଓ ଚେତନ ହେଲେ ହେଁ ତ୍ରିଗୁଣାତ୍ମିକା ପ୍ରକୃତିର ସଂସ୍ପର୍ଶରେ ଆସିଲେ ତାହା ବନ୍ଧନାବସ୍ଥା ଲାଭ କରିଥାଏ ଏବଂ ପ୍ରକୃତିର ତ୍ରିଗୁଣଜାତ ବିବିଧ ସୁଖ ଦୁଃଖରେ ଜଡ଼ିତ ହୋଇଥାଏ । ସେ ପୁରୁଷ ପ୍ରକୃତିତତ୍ତ୍ୱକୁ ଉପଲବ୍ଧି କରି ନିଜର ପ୍ରକୃତ ସ୍ୱରୂପକୁ ଜାଣିଲେ ତାହାର ଦୁଃଖ ନିବୃତ୍ତିପୂର୍ବକ ମୋକ୍ଷଲାଭ ହୋଇଥାଏ । ସାଂଖ୍ୟ ଧର୍ମ, ମୋକ୍ଷର ମାର୍ଗ ନିର୍ଦ୍ଦେଶ କରିଥିବାରୁ ତାହାକୁ ମୋକ୍ଷଧର୍ମ କୁହାଯାଇଥାଏ । ସେଥିପାଇଁ ମହାଭାରତ, ଶ୍ରୀମଦ୍ଭାଗବତ ମହାପୁରାଣ ଓ ଶ୍ରୀମଦ୍ଭଗବଦ୍ ଗୀତାରେ ସାଂଖ୍ୟଧର୍ମର ପ୍ରଶଂସା କରାଯାଇଛି ।

ଶ୍ରୀମଦ୍ଭାଗବତର ତୃତୀୟ ସ୍କନ୍ଧରେ (ସପ୍ତବିଂଶ ଅଧ୍ୟାୟ) କପିଳମୁନି, ମାତା ଦେବହୂତିଙ୍କୁ ସାଂଖ୍ୟ ଧର୍ମର ଉପଦେଶ ପ୍ରଦାନ କରିଛନ୍ତି ।

ସାଂଖ୍ୟର ଏହି ନିର୍ଗୁଣ ପୁରୁଷ ତତ୍ତ୍ୱ ହିଁ ଉପନିଷଦର ବ୍ରହ୍ମତତ୍ତ୍ୱ ଓ ଜୀବ-ତତ୍ତ୍ୱ ମଧ୍ୟରେ ପ୍ରତିଫଳିତ ହୋଇଛି । କେବଳ ପାର୍ଥକ୍ୟ ହେଉଛି ଉପନିଷଦ ବର୍ଣ୍ଣିତ

ବ୍ରହ୍ମ ହେଉଛନ୍ତି ସର୍ବମଯ୍ୟକର୍ତ୍ତା, ସୃଷ୍ଟିର କାରଣ, ଆନନ୍ଦମୟ ଓ ରସମୟ । ଆତ୍ମା ବା ଜୀବାତ୍ମା ତାଙ୍କର ଅଂଶ ବିଶେଷ । ଉପନିଷଦର ବହୁ ଆତ୍ମାବାଦ ଓ ସାଂଖ୍ୟ ଦର୍ଶନର ବହୁ ପୁରୁଷବାଦ ମଧ୍ୟରେ ବିଶେଷ ପାର୍ଥକ୍ୟ ଥିଲା ଭଳି ମନେହୁଏ ନାହିଁ । ତତ୍ତ୍ୱ ନିର୍ଦ୍ଧାରଣ (ପ୍ରକୃତିର ପଞ୍ଚବିଂଶତି ତତ୍ତ୍ୱ ଗଣନା) ଏବଂ ବୈରାଗ୍ୟର ଅଭ୍ୟାସ ଦ୍ୱାରା ପୁରୁଷ, ପ୍ରକୃତି ପ୍ରଭାବରୁ ମୁକ୍ତ ହୋଇ ନିଜର ନିର୍ଗୁଣ ରୂପକୁ ଅନୁଭବ କରି ନିର୍ଗୁଣାବସ୍ଥାରେ ଅବସ୍ଥାନ କରିଥାଏ ଏବଂ ଏହା ହେଉଛି ତାର ମୋକ୍ଷାବସ୍ଥା । ବେଦାନ୍ତରେ ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ ଦ୍ୱାରା ନିର୍ଗୁଣ ବ୍ରାହ୍ମୀସ୍ଥିତି ଓ ମୋକ୍ଷଲାଭ ବିଷୟ ଯାହା ବର୍ଣ୍ଣିତ ହୋଇଛି ତାହା ଏହାଠାରୁ ପୃଥକ୍ ନୁହେଁ ।

ସାଂଖ୍ୟର ନିର୍ଗୁଣ ପୁରୁଷ କଳ୍ପନା, ବୈଦିକ ଧର୍ମର ସେଶ୍ୱରବାଦ ସହିତ ମିଶ୍ରିତ ହୋଇ, ଉପନିଷଦ ବର୍ଣ୍ଣିତ ବ୍ରହ୍ମ କଳ୍ପନାର ଯେ ବିକାଶ ଘଟିଥିଲା, ଏହା କହିଲେ ଅତ୍ୟୁକ୍ତି ହେବନାହିଁ । ସାଂଖ୍ୟ ଦର୍ଶନର ଚିନ୍ତାଧାରା ବେଦାନ୍ତ ଦର୍ଶନ, ଯୋଗ ଦର୍ଶନ ଓ ପଞ୍ଚରାତ୍ର ଧର୍ମ ସହିତ ମିଶ୍ରିତ ହୋଇ ନୂତନ ରୂପ ନେବା ଫଳରେ ସାଂଖ୍ୟଦର୍ଶନ କ୍ରମଶଃ ଲୁପ୍ତ ହୋଇ ଯାଇଥିଲା । କିନ୍ତୁ ଏହା ସତ୍ତ୍ୱେ ସାଂଖ୍ୟଦର୍ଶନର ଅବଦାନ କେବେ ଅସ୍ୱୀକୃତ ହୋଇନାହିଁ । ମହାଭାରତରେ କୁହାଯାଇଛି—'ନ ସାଂଖ୍ୟ ସଦୃଶ ଜ୍ଞାନଂ' ।

ସାଂଖ୍ୟ ଦର୍ଶନ ଗର୍ଭିତ ପଞ୍ଚସଖାଧର୍ମ ଓଡ଼ିଶାରେ ଅନୁସୃତ ହେଉଥିବାରୁ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ବ୍ରହ୍ମତତ୍ତ୍ୱ ବହୁ ଚର୍ଚ୍ଚିତ ହୋଇଥିବାର ଦେଖାଯାଇଥାଏ । ସେମାନଙ୍କ ଗ୍ରନ୍ଥରେ ବ୍ରହ୍ମତତ୍ତ୍ୱ ସହିତ ଆତ୍ମତତ୍ତ୍ୱ ଓ ଆତ୍ମଜ୍ଞାନର ଅବତାରଣା କରାଯାଇଅଛି । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର ବ୍ରହ୍ମତତ୍ତ୍ୱ ଅନେକ ରୂପରେ ଉପସ୍ଥାପିତ ହୋଇଅଛି । ତେଣୁ ଏଠାରେ ସେଗୁଡ଼ିକୁ ପୃଥକ୍ ଭାବରେ ଦର୍ଶାଇ ଦିଆଯାଉଛି ।

## ବ୍ରହ୍ମ—ନିର୍ଗୁଣ, ନିର୍ବିଶେଷ, ସର୍ବବ୍ୟାପୀ

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ବ୍ରହ୍ମ ମୂଖ୍ୟତଃ ନିର୍ଗୁଣ ଓ ସର୍ବବ୍ୟାପୀ ରୂପେ ବର୍ଣ୍ଣିତ ହୋଇଛନ୍ତି । ଏହା ମୁଖ୍ୟତଃ ଉପନିଷଦୀୟ ଚିନ୍ତାଧାରାରେ ଅନୁପ୍ରାଣିତ ।

ବଳରାମ ଦାସ ଗୁପ୍ତ ଗୀତାରେ ଲେଖିଛନ୍ତି—

ନାହିଁ ତାହାର ରୂପ ବର୍ଣ୍ଣ । ଅଦୃଶ୍ୟ ଅବର୍ଣ୍ଣ ଅଚିହ୍ନ
ଯାହାକୁ ବ୍ରହ୍ମ ବୋଲି କହି । ଅର୍କୁଳ ଶୂନ୍ୟ ବ୍ରହ୍ମ ସେହି ।

(୪ର୍ଥ ଅଧ୍ୟାୟ)

ଜଗନ୍ନାଥ ଦାସ ଭାଗବତର ଏକାଦଶ ସ୍କନ୍ଧରେ ବ୍ରହ୍ମଙ୍କ ବର୍ଣ୍ଣନା କରି ଲେଖିଛନ୍ତି—

ନିତ୍ୟ ନିର୍ଗୁଣ ଭଗବାନ । ସେ ନୁହନ୍ତି ଆଦି ଅବସାନ ।

ଅନୁରୂପ ଭାବରେ ଅଚ୍ୟୁତାନନ୍ଦ ଛୟାଳିଶ ପଟଳରେ ଲେଖିଛନ୍ତି—

ନିର୍ଗୁଣେ ନିର୍ଗୁଣ ସେହୁ ରୂପ ଅରୂପରେ ।
ଆଦିଅନ୍ତ ନାହିଁ ତାର ପୂରିଛି ଶୂନ୍ୟରେ । (୧୦ମ ପଟଳ)

ଜଗନ୍ନାଥ ଦାସଙ୍କର ଶିଷ୍ୟ ଦିବାକର ଦାସ ଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ନିର୍ଗୁଣ ବ୍ରହ୍ମଙ୍କର ବର୍ଣ୍ଣନା ପ୍ରଦାନ କରି ଲେଖିଛନ୍ତି—

ବ୍ରହ୍ମ ସଚ୍ଚିଦାନନ୍ଦ ଜାଣ । ନିର୍ବିକାର ଯେ ସେ ନିର୍ଗୁଣ ।
ନିତ୍ୟ ଯେ ପୁଣି ସର୍ବଗତ । ଅକ୍ଷୟ ଅବ୍ୟୟ ସେହିତ ।
ନିଷ୍କଳ ନିଷ୍କ୍ରିୟ ଯେ ଶାନ୍ତ । ନିରବଦ୍ୟ ନିରଞ୍ଜନ ତ ।
ସ୍ଥୂଳ ନୋହେ ସେ ଅଣୁ ନୋହେ । ହ୍ରସ୍ୱ ବା ଦୀର୍ଘ ସେ ତ ନୁହେଁ
ନାହିଁ ଯାହାର ପରିମାଣ । କେବଳ ନିର୍ବିଶେଷ ଜାଣ ।

(ଜ. ଚ.--୧୬୮ପୃ)

ଭକ୍ତିସ୍ଥା ଦାସ ଜ୍ଞାନ ସାଗର ଗ୍ରନ୍ଥରେ ବ୍ରହ୍ମଙ୍କର ବର୍ଣ୍ଣନା ପ୍ରଦାନ କରି ଲେଖିଛନ୍ତି—

ଅଦୃଶ୍ୟ ଅଗ୍ରୂହ୍ୟ ତହିଁ ଚୈତନ୍ୟରୁ ଭିନ୍ନ
ମନ ପବନୁ ବାହାର ଜାଣ ହୋ ଅର୍ଜୁନ ।
ପାଦ ପାଣି ନାହିଁ ତାଙ୍କ ନାହିଁ ହୃଦସ୍ଥଳ
ନାହିଁ ମୁଖ ପୃଷ୍ଠ ଗ୍ରୀବା ନାହିଁ କଳେବର ।
ନିର୍ବିକାର ନିରାମୟ ଅକ୍ଷୟ ଅବ୍ୟୟ
ଅଚିନ୍ତ୍ୟ ପୁରୁଷ ଶୂନ୍ୟପରେ ଶୂନ୍ୟମୟ ।

(ଅଷ୍ଟମ ପରିଚ୍ଛେଦ)

ଛତିଶ ଗୁପ୍ତଗୀତରେ ମଧ୍ୟ ଠିକ୍ ଏହି ଧରଣର ବର୍ଣ୍ଣନା ପରିଦୃଷ୍ଟ ହୋଇଥାଏ । ଯଥା—

ସେହି ଗୋଟି ଅନାଥନାଥଙ୍କୁ ଗୁ ଚହ୍ନି
ଅଦୃଶ୍ୟ, ଅଗ୍ରାହ୍ୟ ସଦା ଅଟେ ନାରାୟଣ ।
ତହିଁ ଯେ ଚେତନା ମନ ପବନ ବାହାର
ନାହିଁ ପାଦ ପାଣି ଶିର ସଦା ନିର୍ବିକାର ।
ଅନନ୍ତ ଅଚ୍ୟୁତ ନିରାମୟ ପୂର୍ଣ୍ଣ ଦେଖି
ନିଷ୍ପୃହ ହୋଇଲେ ତା ନିକଟେ ଭେଟ ପାଇ

(ଅଷ୍ଟମ ଅଧ୍ୟାୟ)

ଦ୍ୱାରକା ଦାସ ପରମ ଗୀତାରେ ବ୍ରହ୍ମଙ୍କର ପରିଚୟ ପ୍ରଦାନ କରି ଲେଖିଛନ୍ତି—

ଅରୂପ ଅବ୍ୟକ୍ତ ରୂପ ନାହିଁ । ଅରୂପାନନ୍ଦ ଅଚ୍ୟୁତ ଗୋସାଇଁ
ମସ୍ତକ ଶ୍ରବଣ ନାହିଁ ଯାହାର । ନୟନ ନାସା ମୁଖ ନାହିଁ ତାର
ବାହୁ ହୃଦୟ ପେଟପିଠି ନାହିଁ । କଟୀ, ଇନ୍ଦ୍ରିୟ ଗୁହ୍ୟ ଜାନୁ କାହିଁ ।

ନିର୍ଗୁଣ ଉପାସକ ଚୈତନ୍ୟ ଦାସ ବ୍ରହ୍ମ ବିଷୟକ ବର୍ଣ୍ଣନା ଦେଇ ଲେଖିଛନ୍ତି—

ସର୍ଜ୍ଜନା ସଂହାରଣ କରେ । ଆପଣେ ନିର୍ଗୁଣେ ସଞ୍ଚରେ
କେ କହିପାରେ ତାର ଭାବ । ବେଦ ନ ଜାଣେ ଯାର ଠାବ ।

(ନବମ ଅଧ୍ୟାୟ)

ଚନ୍ଦ୍ରମଣି ଦାସ ସୁଧାସାର ଗୀତାରେ ନିର୍ଗୁଣ ବ୍ରହ୍ମଙ୍କର ବର୍ଣ୍ଣନା କରି ଲେଖିଛନ୍ତି--

ନାହିଁ ପାଦପାଣି ଚକ୍ଷୁବର୍ଣ୍ଣ ନାହିଁ ରୂପରେଖ ଯାର
ନିତ୍ୟ ଆନନ୍ଦ ଆତ୍ମଜ୍ଞାନ ସ୍ୱରୂପ କେ କହି ମହିମା ତାର ।

(ପଞ୍ଚମ ବୋଲି)

ଏହିଭଳି ନିର୍ଗୁଣବ୍ରହ୍ମ ବର୍ଣ୍ଣନା ମୂଳକ ଅନେକ ଦୃଷ୍ଟାନ୍ତ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ଦେଖାଯାଇଥାଏ ।

ବ୍ରହ୍ମ—ଉଭୟ ଲିଙ୍ଗ—

ପୂର୍ବରୁ କୁହାଯାଇଛି ଯେ ଶ୍ୱେତାଶ୍ୱତର ଉପନିଷଦରେ ବ୍ରହ୍ମଙ୍କୁ ଉଭୟ ପୁରୁଷ ଓ ସ୍ତ୍ରୀ ତଥା କୁମାର ଓ କୁମାରୀ ବୋଲି କୁହାଯାଇଛି । ବ୍ୟାସଦେବ ମଧ୍ୟ ବ୍ରହ୍ମସୂତ୍ରରେ ଲେଖିଛନ୍ତି—

'ନସ୍ଥାନତୋଽପି ଉଭୟସ୍ଥ ଲିଙ୍ଗ ସର୍ବତ୍ର ହି'

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଏଭଳି ବର୍ଣ୍ଣନାର ମଧ୍ୟ ଅଭାବ ନାହିଁ । ଯଥା:—

(କ) ସ୍ତ୍ରୀ କି ପୁରୁଷ ବୋଲି ପୁଚ୍ଛା କଲୁ ତୁହି
ସ୍ତ୍ରୀ ଅଙ୍ଗ ସେହି ଜାଣ ପୁରୁଷ ଅଟଇ ।
( ବେଦଶାସ୍ତ୍ର ଜ୍ଞାନକଳ୍ପ-ଅଚ୍ୟୁତାନନ୍ଦ)

(ଖ) ଅଲକ୍ଷ୍ୟ ପୁରୁଷକୁ ଦେଖ, କଣୋଭା ପାଉଛୁ କରେଖ,
ପିତାହିଁ ଏହି ମାତାହିଁ ଏହି, ଲୋକ୍ତାହୋଇଣ ସର୍ବଠାଇ,'
( ହେତୁଉଦୟ ଭାଗବତ— ଶିଶୁ ଅନନ୍ତ)

(ଗ) "ଅଧେ ସ୍ତ୍ରୀ ଅଧେ ପୁରୁଷ ଅଟଇ । ଅର୍ଦ୍ଧାଙ୍ଗ ଚେଷ୍ଟା ବୋଲଇ ।"
(ସୁଧାସାରଗୀତା – ୨ୟ ବୋଲି)

## ବ୍ରହ୍ମ—ଆତ୍ମାରେ ଅବସ୍ଥିତ

ଉପନିଷଦ ମାନଙ୍କରେ ବ୍ରହ୍ମଙ୍କୁ ସର୍ବଭୂତସ୍ଥିତ ଆତ୍ମା ରୂପେ ବର୍ଣ୍ଣନା କରାଯାଇଅଛି । ଆତ୍ମାକୁ ଆଶ୍ରୟ କରି ପରମାତ୍ମା ଅବସ୍ଥାନ କରୁଥିବାରୁ ତାଙ୍କୁ ଆତ୍ମାରାମ କୁହାଯାଇ ଥାଏ । ସମସ୍ତ ପ୍ରାଣୀମାନଙ୍କର ହୃଦୟ ବା ଅନ୍ତରୂପକ ଗୁହାରେ ଅବସ୍ଥାନ କରୁଥିବାରୁ ସେ ବାସୁଦେବ ଅଟନ୍ତି ।

ବ୍ରହ୍ମସୂତ୍ରରେ ବ୍ୟାସଦେବ ଲେଖିଛନ୍ତି –

"ଅନେନ ଜୀବେନାତ୍ମନା ଅନୁପ୍ରବିଶ୍ୟ"
( ୩ । ୨ । ୨୨ )

ଅର୍ଥାତ୍- ସେ (ବ୍ରହ୍ମ) ଏହି ଜୀବାତ୍ମା ମଧ୍ୟରେ ଅନୁପ୍ରବେଶ କରି ।

କଠୋପନିଷଦରେ ଯମ ନଚିକେତାଙ୍କୁ କହିଛନ୍ତି—

"ଏଷ ସର୍ବେଷୁ ଭୂତେଷୁ ଗୂଢ଼ାତ୍ମାନ ପ୍ରକାଶ୍ୟତେ"

ଅର୍ଥାତ୍ ଏହି ଆତ୍ମା ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ଗୁପ୍ତ ହୋଇଥିବାରୁ ପ୍ରକାଶ୍ୟ ନୁହନ୍ତି । ଏହି ଉପନିଷଦରେ ଅନ୍ୟତ୍ର ବର୍ଣ୍ଣିତ ଅଛି—

"ଅଙ୍ଗୁଷ୍ଠ ମାତ୍ରଃ ପୁରୁଷୋ ମଧ୍ୟେ ଆତ୍ମନ ତିଷ୍ଠତି"
"ଏକସ୍ତଥା ସର୍ବ ଭୂତାନ୍ତରାତ୍ମା ରୂପଂରୂପଂ ପ୍ରତିରୂପୋ ବହିଶ୍ଚ"

(୨ | ୨ | ୦୧୫)

ଶ୍ରୀମଦ୍‌ଭଗବଦ୍ ଗୀତାରେ ମଧ୍ୟ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି—

"ଅବିଭକ୍ତଂ ଚ ଭୂତେଷୁ ବିଭକ୍ତମିବ ଚସ୍ଥିତଂ"

(୧୩ | ୧୬)

ଶ୍ୱେତାଶ୍ୱତର ଉପନିଷଦରେ କୁହାଯାଇଛି— ଶରୀର ରୂପକ ପିପ୍‌ଲ ବୃକ୍ଷରେ (ଅଶ୍ୱଥ୍ ବୃକ୍ଷ) ପରସ୍ପର ସଖ୍ୟଭାବ ଧାରଣ କରି ଦୁଇଟି ପକ୍ଷୀ ବାସ କରୁଛନ୍ତି। ସେଥିରୁ ଗୋଟିଏ ପକ୍ଷୀ (ଆତ୍ମା) ସେହି ବୃକ୍ଷର ଫଳକୁ (କର୍ମଫଳ ରୂପକ ସୁଖ ଓ ଦୁଃଖକୁ) ଖାଉଛି, ଅନ୍ୟଟି (ପରମାତ୍ମା, ତାହା ନଖାଇ କେବଳ ଦେଖୁଛି।

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନ ବୃକ୍ଷଂ ପରିଷସ୍ୱଜାତେ
ତୟୋରନ୍ୟଃ ପିପ୍‌ଲଂ ସ୍ୱାଦ୍ୱତ୍ତ୍ୟଶ୍ନନ୍ନନ୍ୟୋଅଭିଚାକଶୀତି

୪ | ୬

ଶ୍ୱେତାଶ୍ୱତର ଉପନିଷଦରେ ଜୀବାତ୍ମାର ଆକୃତି ସମ୍ବନ୍ଧରେ ବର୍ଣ୍ଣନା କରି କୁହାଯାଇଛି—ଏହା କେଶାଗ୍ରର ଦଶହଜାର ଭାଗରୁ ଏକଭାଗ ତୁଲ୍ୟ ସୂକ୍ଷ୍ମ ଏବଂ ଅନନ୍ତ। (୫ | ୯)

ଉପର ବର୍ଣ୍ଣିତ ଏହି ଉପନିଷଦୀୟ ବ୍ରହ୍ମତତ୍ତ୍ୱ ଓ ଆତ୍ମତତ୍ତ୍ୱ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ରୂପାୟିତ ହୋଇଛି ଏବଂ ବ୍ରହ୍ମଙ୍କର ସ୍ଥିତି ଆତ୍ମାରେ ରହିଛି ବୋଲି ଦର୍ଶାଯାଇଛି।

ଆତ୍ମା, ପରମାତ୍ମାଙ୍କର ଏକ ଅଂଶ ସ୍ୱରୂପ ହୋଇଛି ପରମାତ୍ମାଙ୍କ ପରି ନିତ୍ୟ, ଅବିନାଶୀ ଓ ନିର୍ଗୁଣ। ଆତ୍ମା ଓ ପରମାତ୍ମା ବର୍ଣ୍ଣନାରେ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ ମୁଖରିତ। ସେଥିରୁ କେତେକ ଉଦ୍ଧୃତି ଏଠାରେ ପ୍ରଦାନ କରାଯାଉଅଛି।

ଛତିଶଗୁପ୍ତଗୀତାରେ ବର୍ଣ୍ଣିତ ଅଛି, ବ୍ରହ୍ମ ଆତ୍ମାରୂପରେ ଜଗତରେ ପରିବ୍ୟାପ୍ତ—

ମୂର୍ଦ୍ଧେ ସେ ବ୍ୟାପି ଜଗତ, ଏକ ଆତ୍ମା ପ୍ରକାଶିତ
ମୋହ ବାନ୍ଧନେ ନାହିଁଟି ସଂସାରେ ଦେହ । ୧୦
( ସପ୍ତୋବିଂଶ ଅଧ୍ୟାୟ )

ଚୈତନ୍ୟଦାସ ନିର୍ଗୁଣମାହାତ୍ମ୍ୟରେ ଲେଖିଛନ୍ତି—

ସେ ବ୍ରହ୍ମରୂପର ମହିମା । କେ କହିପାରେ ଗୁଣସୀମା ।

X X X

ତାହାର ଅଂଶାଅଂଶ ବଳେ । ଜୀବ ଉପୁଜେ ମହୀତଳେ ।
ଅନାଦି ପ୍ରଭୁ ନିରାକାର । ସ୍ୱୟଂ ଅଛନ୍ତି ଏ ଶରୀର ।
ଦୃଶ୍ୟ ଅଦୃଶ୍ୟେ ଅଛି ବ୍ୟାପି । ତାହାର ଗଗନ ସ୍ୱରୂପୀ ।
( ଅଷ୍ଟମ ଅଧ୍ୟାୟ )

ପୁନଶ୍ଚ ସେ ଲେଖିଛନ୍ତି—

ଆତ୍ମା ସଙ୍ଗତେ ନିତ୍ୟ ଥାଇ । ଆତ୍ମାରୁ ଆତ୍ମା ପ୍ରକାଶଇ ।
ଆତ୍ମ ରୁ ଆତ୍ମା ସୃଷ୍ଟି କରେ । ଆତ୍ମାର ସଙ୍ଗତେ ବିହରେ ।
ଆତ୍ମାରୁ ଆତ୍ମାକରେ ଜାତ । ଆତ୍ମାର ସଙ୍ଗେ ଉଦେଅସ୍ତ ।
( ନବମ ଅଧ୍ୟାୟ )

ଶିବସୁନ୍ଦରଦାସ ଜ୍ଞାନସାଗର ଗ୍ରନ୍ଥରେ ବ୍ରହ୍ମଙ୍କର ସ୍ଥିତି ବିଷୟ ଦର୍ଶାଇବାକୁ ଯାଇ ଲେଖିଛନ୍ତି—

ସର୍ବପ୍ରାଣୀଙ୍କ ହୃଦେ ଆତ୍ମାରୂପେ
ବ୍ରହ୍ମ ବିରାଜୁ ଥାଇଟି ଆପେ ।
( ସପ୍ତମ ପରିଚ୍ଛେଦ )

ପୁନଶ୍ଚ ସେ ଆତ୍ମାକୁ ବ୍ରହ୍ମଙ୍କର ଅଂଶ ବୋଲି ବର୍ଣ୍ଣନା କରି ଲେଖିଛନ୍ତି—

ଆଦି ଆତ୍ମା ବୋଲିଣ ସଂସାରେ ଚଳୁଛି ।
ଆତ୍ମାରୁ ଅସଂଖ୍ୟ ଅଂଶ ଜନମ ଲଭୁଛି ।
( ଅଷ୍ଟମ ପରିଚ୍ଛେଦ )

ଚନ୍ଦ୍ରମଣି ଦାସ ସୁଧାସାର ଗୀତାରେ ଠିକ୍ ଏହିପରି ବର୍ଣ୍ଣନା କରି ଲେଖିଛନ୍ତି—

ସର୍ବ ଘଟେ ବାସ ନାହିଁ ଅବଶେଷ କାହିଁ ବ୍ରହ୍ମମାଏ ବ୍ୟାପି ।
ଚଟପଟବାସୀ ସଦା ଅବିନାଶୀ ଅସୂଜ୍ଞାନ ପୂର୍ଣ୍ଣବ୍ରହ୍ମ ।
ସଚ୍ଚିଦାନନ୍ଦ ପୁରୁଷ ଜ୍ୟୋତିର୍ମୟ ସର୍ବଘଟେ ଏକସମ ।
( ସପ୍ତମ ବୋଲି )

ପୁନଶ୍ଚ ଷୋଡ଼ଶ ବୋଲିରେ ସେ ଲେଖିଛନ୍ତି--
"ଯେ ଅଟଇ ଜୀବ ସେ ଅଟେ ପରମ ବିଧି ନିଷେଧରେ ଭିନ୍ନ"

## ବ୍ରହ୍ମ-ହଂସ—

ଶ୍ୱେତାଶ୍ୱତର ଉପନିଷଦରେ ଆତ୍ମାଙ୍କୁ ହଂସ ରୂପେ ସମ୍ବୋଧନ କରା-ଯାଇଛି । ଯଥା— "ନବଦ୍ୱାରେ ପୁରେ ଦେହୀ ହଂସୋ ଲେଲାୟତେ ବହିଃ" । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଏହାର ଅନୁସରଣରେ ଆତ୍ମାକୁ ହଂସ ଆଖ୍ୟା ଦିଆଯାଇ ବର୍ଣ୍ଣନା କରାଯାଇଛି ।

ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତାରେ ଉଲ୍ଲେଖ ଅଛି—

ଦେଖ ବାବୁ ତୋ ଦେହ ପୁଣ
ନାସିକା ଦ୍ୱାରେ ହଂସ ଗମନ
( ସପ୍ତମ ଅଧ୍ୟାୟ )

ଶିଶୁ ଅନନ୍ତଙ୍କର ଏକ ଭଜନରେ ଏହି ହଂସର ମନୋଜ୍ଞ ବର୍ଣ୍ଣନା ପ୍ରଦାନ କରାଯାଇଛି । ଯଥା—

ଅପୂର୍ବ ହଂସ ମହିମା ଦୃଶ୍ୟ ଗୋ
ରୂପ ରେଖ ନାହିଁ ଅଶେଷ ଶୋଭ

ଚନ୍ଦ୍ରମଣି ଦାସ ସୁଧାସାର ଗୀତାରେ ଲେଖିଛନ୍ତି—

ମନପବନର ସଙ୍ଗେ ରାଜହଂସ ଉଲଟି ପିଅଇ ପାଣି
ଅବନ୍ଧା ବନ୍ଧରେ ପାଣି ରହିଥିଲେ ପରମହଂସକୁ ଚହ୍ନି
( ଦ୍ୱିତୀୟ ବୋଲି )

## ବ୍ରହ୍ମ-ସଗୁଣ, ସବିଶେଷ, ନାମ, ରୂପଯୁକ୍ତ—

ଉପନିଷଦରେ କୁହାଯାଇଛି ବ୍ରହ୍ମ ଇଚ୍ଛାମୟ ପୁରୁଷ । ସେ ଜ୍ଞାନ, କ୍ରିୟା ଓ ବଳ ଏହି ତିନିଶକ୍ତିରେ ଯୁକ୍ତ । ତାଙ୍କର ଇଚ୍ଛାଶକ୍ତି ଯୋଗେ ସୃଷ୍ଟିର ଉନ୍ମେଷ ହୁଏ ଏବଂ କ୍ରିୟାଶକ୍ତି ଯୋଗେ ସୃଷ୍ଟି କାର୍ଯ୍ୟ ଚାଲେ ।

ଉପନିଷଦର ଏହି ଚିନ୍ତାଧାରାରୁ ପଞ୍ଚରାତ୍ର ଧର୍ମରେ ସଗୁଣ ବ୍ରହ୍ମକଳ୍ପନାର ବିକାଶ ଘଟିଥିଲା । ପଞ୍ଚରାତ୍ର ମତରେ (ସନତ୍ କୁମାର ସଂହିତା ଦ୍ରଷ୍ଟବ୍ୟ) ନିର୍ଗୁଣ ବ୍ରହ୍ମ ବା ଅଚିଂନ୍ତ୍ୟ ବାସୁଦେବଙ୍କ ସୃଷ୍ଟିକରିବା ଇଚ୍ଛାରୁ ମହାଲକ୍ଷ୍ମୀଙ୍କର ଆବିର୍ଭାବ ହୁଏ । ମହାଲକ୍ଷ୍ମୀ ହେଉଛନ୍ତି ତାଙ୍କର ଇଚ୍ଛାଶକ୍ତି । ଏହି ମହାଲକ୍ଷ୍ମୀଙ୍କଠାରୁ ଷଡୈଶ୍ୱର୍ଯ୍ୟଯୁକ୍ତ ବା ଷଡ଼ଗୁଣଯୁକ୍ତ ବାସୁଦେବଙ୍କର ଆବିର୍ଭାବ ଘଟେ । ସେ ହେଉଛନ୍ତି ସଗୁଣ ବ୍ରହ୍ମ । ତାଙ୍କଠାରୁ ଦୁଇଟି ଲେଖାଁ ଐଶ୍ୱର୍ଯ୍ୟ ବା ଗୁଣ ତିନୋଟି ବ୍ୟୂହରେ ପ୍ରକାଶିତ ହୁଏ । ସେହି ବ୍ୟୂହ ଗୁଡ଼ିକ ହେଉଛନ୍ତି ସଂକର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ । ଏମାନେ ହେଉଛନ୍ତି ବାସୁଦେବଙ୍କର ବ୍ୟୂହାବତାର । ଅନିରୁଦ୍ଧଙ୍କ ଠାରୁ ସତ୍ତ୍ୱଗୁଣାବତାର ବ୍ରହ୍ମା, ରଜୋଗୁଣାବତାର ବିଷ୍ଣୁ ଓ ତମୋଗୁଣାବତାର ମହେଶ୍ୱର -ଙ୍କର ଆବିର୍ଭାବ ହୁଏ । ବାସୁଦେବଙ୍କ ୩ଟି ବ୍ୟୂହରୁ ୧୨ଟି ବ୍ୟୂହାନ୍ତର ଓ ୩୯ଟି ବିଭବ ସୃଷ୍ଟି ହୁଏ । ଏମାନଙ୍କୁ ବାସୁଦେବଙ୍କର ବ୍ୟୂହାବତାର ଓ ବିଭବାବତାର କୁହାଯାଇ -ଥାଏ । ଏତଦ୍‌ବ୍ୟତୀତ ତାଙ୍କର ଅର୍ଚ୍ଚାବତାର (କାଷ୍ଠ ପାଷାଣାଦିରେ ଗଠିତ ପ୍ରତିମା) ରହିଛି । ସାମଗ୍ରିକ ଭାବେ ଏ ସମସ୍ତେ ହେଉଛନ୍ତି ସଗୁଣବ୍ରହ୍ମ ରୂପୀ ବାସୁଦେବଙ୍କର ବିଭିନ୍ନ ନାମ ଓ ରୂପରେ ପ୍ରସରଣଶୀଳ ରୂପ । ବାସୁଦେବଙ୍କର ଦ୍ୱାଦଶ ବ୍ୟୂହାନ୍ତର ବୈଷ୍ଣବ ଜଗତରେ ପୂଜନୀୟ ହେତୁ ସେମାନଙ୍କର ନାମକୁ ନେଇ ବିଭିନ୍ନ ମନ୍ତ୍ରମାନ କ୍ରମେ ସୃଷ୍ଟି ହୋଇଥିଲା । କେଶବ, ମାଧବ ଗୋବିନ୍ଦ, ଦାମୋଦର, ବାମନ, ନୃସିଂହ, ମଧୁସୂଦନ, ରାମ, କୃଷ୍ଣ ପ୍ରଭୃତି ବିଭିନ୍ନ ନାମ ଜପ ଓ ସେମାନଙ୍କର ମୂର୍ତ୍ତି ପୂଜା ପ୍ରଚଳନ ହେବା ଫଳରେ ସଗୁଣ ବ୍ରହ୍ମ ଉପାସନାର ଉଦ୍ଭବ ହୋଇଥିଲା । ସଗୁଣ ବ୍ରହ୍ମଙ୍କର ଅନେକ ନାମ ମଧ୍ୟରୁ କେଉଁନାମ ଶ୍ରେଷ୍ଠ ଏବଂ ନିତ୍ୟ ଜପ ଯୋଗ୍ୟ ତାହା କଳିସନ୍ତରଣୋପନିଷଦରେ ନିର୍ଣ୍ଣିତ ହୋଇଅଛି । ଯଥା ହରେରାମ ହରେରାମ ରାମରାମ ହରେହରେ ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ

ଏହା ମଧ୍ୟରୁ ହରି ହେଉଛନ୍ତି ସତ୍ୟଯୁଗର ଅବତାର ନୃସିଂହ । ରାମ ହେଉଛନ୍ତି ତ୍ରେତାଯୁଗର ଅବତାର ଓ କୃଷ୍ଣ ହେଉଛନ୍ତି ଦ୍ୱାପର ଯୁଗର ଅବତାର । ହରେ ରାମ କୃଷ୍ଣ ମହାମନ୍ତ୍ର ହେଉଛନ୍ତି ନାମ ବ୍ରହ୍ମ ଏବଂ ସଗୁଣବ୍ରହ୍ମ ପର୍ଯ୍ୟାୟବାଚୀ ।

ଶଙ୍କରାଚାର୍ଯ୍ୟ ବେଦାନ୍ତ ଭାଷ୍ୟରେ ବ୍ରହ୍ମଙ୍କର ନାମ ଓ ରୂପକୁ ସବିଶେଷ ଭାବ ବା ସଗୁଣଭାବ ସୂଚକ ବୋଲି ଲେଖିଛନ୍ତି । ସେ ବ୍ରହ୍ମଙ୍କର ଦ୍ୱିବିଧରୂପ ଦର୍ଶାଇବାକୁ ଯାଇ ଲେଖିଛନ୍ତି —

"ଦ୍ୱିରୂପଂହି ବ୍ରହ୍ମାବଗମ୍ୟତେ ନାମ ରୂପ ବିକାର ଭେଦୋପାଧି ବିଶିଷ୍ଟଂ ତଦ୍‌ବିପରୀତଂ ସର୍ବୋପାଧି ବିବର୍ଜ୍ଜିତଂ"

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତସାହିତ୍ୟରେ ନାମ ବ୍ରହ୍ମଙ୍କର ମହତ୍ତ୍ୱ ବର୍ଣ୍ଣନା ସଗୁଣ ବ୍ରହ୍ମୋପାସନାର ପରିଚୟ ଦେଇଥାଏ ।

ବଳରାମ ଦାସ ବିରାଟ ଗୀତାରେ ଲେଖିଛନ୍ତି—

ନାମଟି ସଂସାରରେ ସାର । ନାମ ବ୍ୟତୀତେ ନାହିଁ ଆର
ନାମକୁ ହୃଦେ କର ଦୃଢ଼ । ଯେ ନ ମାର୍ଗରେ ଯେ ନରୂଢ ।
( ୨ୟ ଅଧ୍ୟାୟ )

ପୁନଶ୍ଚ ନାମ ବ୍ରହ୍ମରୁ ସମସ୍ତ ସୃଷ୍ଟି ହୋଇଥିବା ବିଷୟ ସେ ଲେଖିଛନ୍ତି—

ନାମରୁ ବ୍ରହ୍ମା ବିଷ୍ଣୁ ଜାତ । ନାମରୁ ଜଗତ ସମ୍ଭୂତ ।
( ବି. ଗୀ. ୧ମ ଅଧ୍ୟାୟ )

ଅଚ୍ୟୁତାନନ୍ଦ ଛୟାଳିଶ ପଟଳରେ ଲେଖିଛନ୍ତି—

ନିଃବୀଜରୁ ନାମ ଜାତ ହୋଇଲେ ଯୁକତେ ।
ସେହି ନାମ ବ୍ରହ୍ମ ଅନାମରେ ଥାଏ ନିତ୍ୟେ

× × ×

ଚକ୍ଷୁ କର୍ଣ୍ଣ ନାସା ଜିହ୍ୱା ଆଦି ଅଙ୍ଗମାନ
ନାମ ବ୍ରହ୍ମରୁ ଉତ୍ପତ୍ତି ନୁହେଁ କିଛି ଆନ

(୩ୟ ପଟଳ)

ଓଡ଼ିଆ ଜ୍ଞାନମିଶ୍ରା ସାଧକ, ନିର୍ଗୁଣ ବ୍ରହ୍ମଙ୍କ ପରି ସଗୁଣବ୍ରହ୍ମ ବା ନାମ ବ୍ରହ୍ମଙ୍କୁ ମଧ୍ୟ ମୁକ୍ତିଦାତା ରୂପେ ଗ୍ରହଣ କରିଛନ୍ତି ।

ଚନ୍ଦ୍ରମଣି ଦାସ ଲେଖିଛନ୍ତି—

ନାମ ବ୍ରହ୍ମସାର ନାମ ବ୍ରହ୍ମେପାର ନାମବ୍ରହ୍ମେ ସାର ଲକ୍ଷ୍ୟେ
ଏହି ନାମବ୍ରହ୍ମ ନିରତେ ଘୋଷିଲେ ସେହିନାମେ ବ୍ରହ୍ମପାଏ
(ସୁଧାସାର ଗୀତା, ଅଷ୍ଟାଦଶ ବୋଲି)

ପୂର୍ବୋକ୍ତ 'ହରେ ରାମ କୃଷ୍ଣ' ମହାମନ୍ତ୍ର ମଧ୍ୟରୁ ରାମ ଓ କୃଷ୍ଣ ନାମକୁ ବିଶେଷଭାବେ ବ୍ରହ୍ମସ୍ୱରୂପ ରୂପେ ଓଡ଼ିଆ ଜ୍ଞାନମିଶ୍ରାଭକ୍ତି ସାହିତ୍ୟରେ ବର୍ଣ୍ଣନା

କରାଯାଇଅଛି । ପ୍ରଥମେ ରାମ ନାମର ମହତ୍ତ୍ୱସୂଚକ ଉଦାହରଣ ପ୍ରଦାନ କରାଯାଉଅଛି—

ବଳରାମ ଦାସ ବେଦାନ୍ତସାର ଗୁପ୍ତ ଗୀତାରେ ଲେଖିଛନ୍ତି—

'ପ୍ରକୃତ ନ ଜାଣଇ ମୋତେ । ଅସ୍ମାରେ ରମଇ ମୁଁ ନିତ୍ୟେ
ତେଣୁ ରାମନାମ ମୋର । ରମଇଁ ଆତ୍ମା ନିରନ୍ତର

(୬ଷ୍ଠ ଅଧ୍ୟାୟ)

ଜଗନ୍ନାଥ ଦାସ ତୁଳାଭିଣାରେ ଲେଖିଛନ୍ତି—

ରାମ ନାମ ଯେ ବେଦ ହୋଇ । ଶୂନ୍ୟବ୍ରହ୍ମରୁ ଜାତ ସେହି
ଛପନ କୋଟି ଜୀବ ଯେତେ । ଡାକନ୍ତି ରାମନାମ ନିତ୍ୟେ
ରାମ ବୋଲିଣ ବେଦାକ୍ଷର । ପୂରିଛି ଦେଖ ଏ ସଂସାର

(୯ମ ଅଧ୍ୟାୟ)

ପୁନଶ୍ଚ ଏହି ଗ୍ରନ୍ଥର ତୃତୀୟ ଅଧ୍ୟାୟରେ ସେ ଲେଖିଛନ୍ତି—

ରାମ ନାମଟି ଧରହଂସ । ଶରୀରେ କରିଅଛି ବାସ
ଏମନ ତାହା ନ ଚିହ୍ନଇ । ମିଛେ ହେଁ ଗୁରୁ କରୁଥାଇ

ନାଥ ଧର୍ମର ଶିଶୁବେଦ ଗ୍ରନ୍ଥରେ ମଧ୍ୟ ରାମନାମର ମହତ୍ତ୍ୱ ପ୍ରଖ୍ୟାପନ କରାଯାଇଅଛି ।

ଯଥା :—

ରାମନାମ ଯେ ଦୁଇଗୋଟି ଅକ୍ଷର
ଯେହୁ ତାହା ଚିହ୍ନିଲେ ନାହିଁ ଜପମନ୍ତ୍ର
(ଡକ୍ଟର ବଂଶୀଧର ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ, ଶିଶୁବେଦ)

ଶ୍ରୀହରି ଦାସ ମୟୂର ଚନ୍ଦ୍ରିକା ଗ୍ରନ୍ଥରେ ରାମନାମର ମହତ୍ତ୍ୱ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି —

ନିରାମୟ ବୋଲି ଯେ ଗୁରୁ ଅକ୍ଷର ହରଇ ଆହା କି ମନୋହର
ଆଦ୍ୟ ପ୍ରାନ୍ତ ତେଜ ମଧ୍ୟକୁ ଗ୍ରହିଲେ ତହିଁ ଦୃଶ୍ୟ ଯେଉଁ ଦୁଇ ଅକ୍ଷର
ସେହି ଟି ନବୀନ ହୋଇ ଜୀବଆତ୍ମା ଅଶେଷ ବ୍ରହ୍ମାଣ୍ଡେ ଅଛି ଗୋଟି
'ରାମ' ନାମ ବହି ଶୂନ୍ୟେଅଛି ରହି ଆପଣା ନାମକୁ ଆପେ ରଟି ।

(ପଞ୍ଚଦଶ ଚନ୍ଦ୍ରିକା)

ରାମ ନାମ ଭଳି କୃଷ୍ଣ ନାମକୁ ମଧ୍ୟ ବ୍ରହ୍ମଙ୍କର ସ୍ୱରୂପ ରୂପେ ଜ୍ଞାନମିଶ୍ରାଭକ୍ତି ସାହିତ୍ୟର ଅନେକ ସ୍ଥଳରେ ବର୍ଣ୍ଣନା କରାଯାଇଅଛି ।

ପଞ୍ଚରାତ୍ର ଧର୍ମ ବା ଭାଗବତ ଧର୍ମର ପ୍ରଚାର ସହିତ କୃଷ୍ଣଉପାସନାର ପ୍ରଚାର ସର୍ବଭାରତୀୟ ସ୍ତରରେ ଅତି ଦ୍ରୁତ ଗତିରେ ସାଧିତ ହୋଇଥିଲା । ଶ୍ରୀ ଚୈତନ୍ୟଙ୍କର ଓଡ଼ିଶା ଆଗମନ, ଓଡ଼ିଶାରେ ଅବସ୍ଥାନ ଓ କୃଷ୍ଣକୈନ୍ଦ୍ରିକ ପ୍ରେମଭକ୍ତିର ପ୍ରଚାର, ବଳରାମ ଆଦି ପଞ୍ଚସଖାଙ୍କୁ ବିଶେଷ ପ୍ରଭାବିତ କରିଥିଲା । ସର୍ବୋପରି ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରୁ ଶ୍ରୀ ଜଗନ୍ନାଥ ଗୋପାଳକୃଷ୍ଣ ରୂପେ ବର୍ଣ୍ଣିତ ହୋଇ ଗୋପାଳ ମନ୍ତ୍ରରେ ତାଙ୍କର ପୂଜା କରାଯିବାର ବ୍ୟବସ୍ଥା ପ୍ରବର୍ତ୍ତିତ ହେବା ଫଳରେ କୃଷ୍ଣ ଓଡ଼ିଶା ମାଟିରେ ପରମାରାଧ୍ୟ ହୋଇଥିଲେ । ଦ୍ୱିତୀୟ ନରସିଂହଦେବଙ୍କ ଦ୍ୱାରା ବିଭିନ୍ନ ସ୍ଥାନରେ ଅସଂଖ୍ୟ ଗୋପୀନାଥ ମନ୍ଦିର ପ୍ରତିଷ୍ଠା ହେବା ଯୋଗେ କୃଷ୍ଣ ଉପାସନା ଓଡ଼ିଶାର ଗଣ ଉପାସନାରେ ପରିଣତ ହୋଇଥିଲା । କୃଷ୍ଣ ନାମର ମହତ୍ତ୍ୱ ପ୍ରଖ୍ୟାପକ ଶ୍ରୀମଦ୍ଭାଗବତଗ୍ରନ୍ଥ ଯୋଗେ କୃଷ୍ଣନାମ ଜପ ମୋକ୍ଷ ପ୍ରାପ୍ତିର ଉପାୟ ରୂପେ ସ୍ୱୀକୃତ ହୋଇଥିଲା । ଏଥିପାଇଁ ଓଡ଼ିଆ ଜ୍ଞାନମିଶ୍ରାଭକ୍ତି ସାହିତ୍ୟରେ ଶ୍ରୀକୃଷ୍ଣ ବ୍ରହ୍ମ ସ୍ଥାନୀୟ ହୋଇଛନ୍ତି ଏବଂ କୃଷ୍ଣନାମ ଜପ ଦ୍ୱାରା ବ୍ରହ୍ମସାକ୍ଷାତ୍କାର ଓ ମୋକ୍ଷଲାଭ ସମ୍ଭବ ବୋଲି କୁହାଯାଇଛି । ଏଠାରେ ଓଡ଼ିଆ ଜ୍ଞାନମିଶ୍ରାଭକ୍ତି ସାହିତ୍ୟରୁ କେତେକ ଉଦ୍ଧୃତି ପ୍ରଦାନ କରାଯାଉଛି । ଯେଉଁଥିରୁ ସ୍ପଷ୍ଟ ହୋଇପିବ ଯେ କୃଷ୍ଣ ଏବଂ ତାଙ୍କର ନାମ ଜପର ଏଥିରେ ବ୍ରହ୍ମ ଓ ନାମ ବ୍ରହ୍ମ ରୂପେ ସମ୍ମାନିତ ହୋଇଛନ୍ତି—

(କ) ଭଜ କୃଷ୍ଣ ନାମକୁ ରେ । ଯେବେ ପାଇବୁ ତୁ ମୁକତିବାଟ
ରାମନାମ ଧାର । କୃଷ୍ଣ ଠାବ କର
ତେବେ ତୁ ଜାଣିବୁ ଯମର ନାଟ

ଅକ୍ଷର ପରଂବ୍ରହ୍ମକୁ । ଅଜପାରେ ପାଇ ତାହାକୁ
ବନ ବାହୁଡାଇ ଝୁଲି ଆସୁଥାଇ
ତ୍ରିଭଙ୍ଗୀ ଛନ୍ଦରେ କରଣନାଟ ।

(ଅଚ୍ୟୁତାନନ୍ଦ ରଚନାବଳୀ କବିତା ଖଣ୍ଡ ୨୩ ପୃ)

(ଖ) କୃଷ୍ଣ ନାମ ଗୋଟି ରାଜା ପରମ ଗୁପତ
ଋଗବେଦ ନ ଜାଣନ୍ତି ଚାରିର ତଦନ୍ତ

କୃଷ୍ଣ ନାମ ଗୋଟି ସତ ଅଉ ସବୁ ମିଛ
ନାମଭୁଲି ସଂସାରରେ ନାହିଁ ସମକକ୍ଷ

ମନ୍ମଥ ଚନ୍ଦ୍ରିକା ନବମ ପରିଚ୍ଛେଦ

(ଗ) ଶ୍ରୀପଦ ବ୍ରହ୍ମଜ୍ଞାନ ଧାମ । ସେ କୃଷ୍ଣ ନିରଞ୍ଜନ କୃଷ୍ଣ ବ୍ରହ୍ମ
ଅଣ ଅକ୍ଷରରୁ ବାହାର । ସେ ଭୂମି ଅକ୍ଷରୁ ବାହାର

ବଉଦ ବୃହ୍ମ ଲେଖନ, ଦୀନକୃଷ୍ଣ ଦାସ

(ଘ) କୃଷ୍ଣ ନାମରେ ପାପକ୍ଷୟ ଯେତେ
କରି ନ ପାରେ ପାପୀ ପାପ ତେତେ

ରସ କଲ୍ଲୋଳ

(ଙ) କୃଷ୍ଣ ନାମ ଗୋଟି ମନ୍ତ୍ର କରିଣ ହେବାସ୍ତ୍ରନକର ଧ୍ୟାନ
କୃଷ୍ଣନାମ ଗୋଟି ଅଜପାରେ ଜପ କୃଷ୍ଣନାମ ବ୍ରହ୍ମଜ୍ଞାନ
କୃଷ୍ଣନାମ ଗୋଟିଶିରେ ଜଟାକରି କୃଷ୍ଣନାମ କର ଧ୍ୟାନ ।
କୃଷ୍ଣ ନାମ ଗୋଟି ଯେ କରଇ ଧ୍ୟାନ ସେ ଅଟଇ ବ୍ରହ୍ମଜ୍ଞାନୀ ।

ସୁଧାସାର ଗୀତା, ୭ମ ବୋଲି

ଚ ବ୍ରହ୍ମ ଯେ କୃଷ୍ଣ ସେ । ରାଧିକା ପରମ । ଦୂତିକା ଜୀବ ।
ବଂଇଶୀ ଅନାହତ ଧ୍ୱନିକ କହୁ...... ।

ଜ୍ଞାନ ଚୂଡ଼ାମଣି, ବଳରାମ ଦାସ

## ବ୍ରହ୍ମ—ଓଁ କାର ର ବନ୍ଦୁରୂପ

ଓଡ଼ିଆ ଜ୍ଞାନମିଶ୍ରାଭକ୍ତି ସାହିତ୍ୟରେ ପ୍ରଣବ ବା ଓଁକାର ର ବନ୍ଦୁକୁ ବ୍ରହ୍ମ ବୋଲି ଚିହ୍ନିତ କରାଯାଇଛି । ବୈଦିକ ଚିନ୍ତା ଧାରାରେ ଓଁ କୁ ବ୍ରହ୍ମରୂପେ ଗ୍ରହଣ କରାଯିବାର ପରମ୍ପରା ରହିଆସିଛି । ତୈତ୍ତିରୀୟ ଉପନିଷଦରେ କୁହାଯାଇଛି—

ଓମିତି ବ୍ରହ୍ମ, ଓମିତିଦଂ ସର୍ବଂ,

୮।୧

ଶ୍ରୀମଦ୍ଭଗବଦ୍ ଗୀତାରେ ମଧ୍ୟ କୁହାଯାଇଛି—

'ଓମିତ୍ୟେ କାକ୍ଷରଂ ବ୍ରହ୍ମ ବ୍ୟାହରନ୍ ମାମନୁସ୍ମରନ୍'

ଓଡ଼ିଶାର ଜଗନ୍ନାଥ ଭକ୍ତ ସାଧକ ପ୍ରଣବ ବ୍ରହ୍ମ ଉପାସକ ଥିଲେ । ସେମାନେ ପ୍ରଣବକୁ ସୃଷ୍ଟିର ଉତ୍ସ ବୋଲି ସର୍ବତ୍ର ଘୋଷଣା କରିଛନ୍ତି । ସେମାନଙ୍କର ପ୍ରଣବ ତତ୍ତ୍ୱ ହେଉଛି— ପ୍ରଣବ ବା ଓଁ କାର ଉର୍ଦ୍ଧ୍ୱଭାଗରେ ଥିବା ବିନ୍ଦୁ ହେଉଛନ୍ତି ବ୍ରହ୍ମ । ଏହି ବିନ୍ଦୁରୁ ପ୍ରଣବର ବିସ୍ତାର ଘଟିଛି ଏବଂ ପ୍ରଣବରୁ ମନ୍ତ୍ର, ବେଦ, ଶାସ୍ତ୍ର ଓ ଜଗତର ପ୍ରସାର ହୋଇଛି । ଅଚ୍ୟୁତାନନ୍ଦ ବିନ୍ଦୁ ସଂଯୁକ୍ତ ପ୍ରଣବକୁ ଏକାକ୍ଷର ବ୍ରହ୍ମ ବୋଲି କହିଛନ୍ତି— "ଏକାକ୍ଷର ବ୍ରହ୍ମ ଏହି ବ୍ରହ୍ମ ଜ୍ୟୋତିରୂପ" ( ପ୍ରଥମ-ଅଧ୍ୟାୟ ଶୂନ୍ୟସଂହିତା ) ତୁଳାଭିଣାରେ ଜଗନ୍ନାଥ ଦାସ ଓଁ କାର ର ବିନ୍ଦୁକୁ ଜ୍ୟୋତିର୍ମୟ ବ୍ରହ୍ମଙ୍କର ମୂଳ ରୂପ କହିଛନ୍ତି । ଯଥା—

ମହାଶୂନ୍ୟ ସେ ଜ୍ୟୋତିରୂପ । ଜ୍ୟୋତିରୁ ଜାତ ମୂଳ ରୂପ,
ମୂଳରୁ ଅର୍ଦ୍ଧମାତ୍ରା ହେଲା । ମାତ୍ରାରୁ ଓଁ କାର ଜନ୍ମିଲା ।
ଓଁ କାର ବ୍ରହ୍ମ ଏ ଜଗତ । ଶୁଣ ପାର୍ବତୀ ଦେଇ ଚିତ୍ତ ।
[ ୧ମ ଅଧ୍ୟାୟ ]

ମନ୍ମଥ ଚନ୍ଦ୍ରିକା ଗ୍ରନ୍ଥରେ ଶ୍ରୀବତ୍ସଦାସ ପ୍ରଣବର ବିନ୍ଦୁରେ ବ୍ରହ୍ମଙ୍କର ସ୍ଥିତିକୁ ଦର୍ଶାଇବାକୁ ଯାଇ ଲେଖିଛନ୍ତି—

ଓଁ ଅକ୍ଷର ଅନନ୍ତ ବିଗ୍ରହ ସଂସାରେ ।
ତହିଁପରେ ଅର୍ଦ୍ଧମାତ୍ରା ବଇଠି ପ୍ରକାରେ ।
ଅର୍ଦ୍ଧମାତ୍ରା ପରେ ବିନ୍ଦୁ ବିଜେ ପରଂବ୍ରହ୍ମ ।
( ଊନବିଂଶ ପରିଚ୍ଛେଦ । )

ଛତିଶ ଗୁପ୍ତଗୀତାରେ ଓଁ କାରଙ୍କୁ ବ୍ରହ୍ମ ରୂପେ ଚିହ୍ନିତ କରାଯାଇଛି ।

ଯଥା— ଶୁଣ ହୋ କହିବା ବୀର
ସ୍ୱୟଂ ବ୍ରହ୍ମହିଁ ଓଁ କାର
ତ୍ରୟୋବିଂଶ ଅଧ୍ୟାୟ

ଏହିପରି ଓଡ଼ିଆଜଗନ୍ନାଥ ମିଶ୍ର ଭକ୍ତ ସାହିତ୍ୟରେ ବ୍ରହ୍ମଙ୍କୁ ବହୁ ସ୍ଥଳରେ ଓଁ କାରର ବିନ୍ଦୁ ରୂପେ ଚିହ୍ନିତ କରାଯାଇଅଛି ।

## ବ୍ରହ୍ମ-ଶବ୍ଦମୟ ଓ ଜ୍ୟୋତିର୍ମୟ —

ପୂର୍ବରୁ ଯୋଗତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ ବ୍ରହ୍ମଙ୍କର ଶବ୍ଦମୟ ଓ ଜ୍ୟୋତିର୍ମୟ ରୂପ ସମ୍ବନ୍ଧରେ ଆଲୋକପାତ କରାଯାଇ ଥିବାରୁ ଏଠାରେ ତାହାର

ସ୍ୱନସ୍ୱରୂପି କସ୍ୱାଯାଇନାହିଁ । ତେବେ ବ୍ରହ୍ମଙ୍କର ଶବ୍ଦରୂପ ଓ ଜ୍ୟୋତିରୂପ ସମ୍ପର୍କିତ ସାମାନ୍ୟ କେତେଗୋଟି ଉଦ୍ଧୃତ ଏଠାରେ ଦିଆଯାଉଛି । ଯଥା—

ଆଜ୍ଞାରେ ଭେଦବୁ ସିନା ନାଦ ଚେତେବେ ସାର ।
ନାଦ ଅନ୍ତେ ଜ୍ୟୋତିରୂପ ଦେଖିବୁ ମୋହର ।
(ଛତିଶ ଗୁପ୍ତଗୀତା— ଦ୍ୱାଦଶ ଅଧ୍ୟାୟ)

ସୂର୍ଯ୍ୟ ପ୍ରାୟ ଜ୍ୟୋତି ପ୍ରକାଶ ହୋଇଛି ପାଶଲେ ଦର୍ଶନ କର
ଅର୍ଜୁନ ଆଗରେ ଶ୍ରୀହରି କହିଲେ ଗୁପତ ଜ୍ଞାନ ବିଚାର
(ଛତିଶ ଗୁପ୍ତଗୀତା— ପ୍ରଥମ ଅଧ୍ୟାୟ)

ଅଷ୍ଟ ଯେ ମାତ୍ରାରେ ଏକାକ୍ଷରକୁ ଭଜିବ
ଜ୍ୟୋତି ବ୍ରହ୍ମଦର୍ଶନେ ଯେ ପୁଣିତ ହୋଇବ ।
(ଶୂନ୍ୟସଂହିତା— ତୃତୀୟ ଅଧ୍ୟାୟ)

ସମସ୍ତେ ଶବଦ ବ୍ରହ୍ମ ଆଶ୍ରିତେ ଅଛନ୍ତି
ନିଃଶବଦେ ସର୍ବେ ମିଶି କେହି ନ ଦିଶନ୍ତି
(ଶୂନ୍ୟ ସଂହିତା— ତୃତୀୟ ଅଧ୍ୟାୟ)

ଏ ଭାବେ କଲେ ନିତ୍ୟୋଧ୍ୟାନ । ପ୍ରସନ୍ନ ହୋନ୍ତି ଜ୍ୟୋତିବ୍ରହ୍ମ
ଜ୍ୟୋତି ଦର୍ଶନ ଯେବେ କରେ । ଜ୍ୟୋତି ମଣ୍ଡଳେ ସେ ବିହରେ ।
(ନିର୍ଗୁଣମାହାତ୍ମ୍ୟ— ସପ୍ତମ ଅଧ୍ୟାୟ)

ଏହିପରି ବ୍ରହ୍ମଙ୍କୁ ବିଭିନ୍ନ ରୂପରେ ଓଡ଼ିଆଜ୍ଞାନମିଶ୍ରା ଭକ୍ତିସାହିତ୍ୟରେ ବର୍ଣ୍ଣନା କରାଯାଇଅଛି । ଯେଉଁ ବ୍ରହ୍ମଙ୍କର ସ୍ୱରୂପ ଅଚନ୍ତନୀୟ, ଅବର୍ଣ୍ଣନୀୟ, ତାହାଙ୍କୁ ବୌଦ୍ଧିକ କଳ୍ପନାଧାରାର ବୁଝାଇବାର ଚେଷ୍ଟା ଏଥିରେ ପ୍ରତିଫଳିତ ହୋଇଛି ମାତ୍ର ।

ଚୈତନ୍ୟ ଦାସଙ୍କ ଭାଷାରେ—

ବେଦ ମଧ୍ୟେ ବ୍ରହ୍ମ ଲୁଚିଛି । ପ୍ରାଣୀଙ୍କି ଭୁଲାଇ ମାରୁଛି ।
ସେ ବ୍ରହ୍ମ ନୁହଇ କଳନା । କର୍ମ ଦେଖାଇ କରେ ବଣା ।
ସକଳ ଜୀବ ପରେ ସାକ୍ଷୀ । ନ ଦିଶେ ତାର ରୂପରେଖ
(ନିର୍ଗୁଣମାହାତ୍ମ୍ୟ— ଦଶମ ଅଧ୍ୟାୟ)

## (ଖ) ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ନୀଳାଚଳ କ୍ଷେତ୍ର ତତ୍ତ୍ୱ—

ଓଡ଼ିଶାରେ ଆତ୍ମପ୍ରକାଶ କରିଥିବା ଜ୍ଞାନମିଶ୍ରା ଭକ୍ତିଧର୍ମର କେନ୍ଦ୍ରବିନ୍ଦୁ ହେଉଛନ୍ତି ଶ୍ରୀ ଜଗନ୍ନାଥ । ପୂର୍ବରୁ କୁହାଯାଇଛି ଏହି ଧର୍ମର ମୂଳ ଉତ୍ସ ହେଉଛି ବେଦାନ୍ତ ଦର୍ଶନ, ସାଂଖ୍ୟଦର୍ଶନ ଓ ତନ୍ତ୍ର ମିଶ୍ରିତ ପଞ୍ଚୋପାସନା ଧର୍ମ । ପଞ୍ଚୋପାସନା ଧର୍ମର ପ୍ରଧାନ ପୀଠ ଥିଲା ଶ୍ରୀଜଗନ୍ନାଥ ପୀଠ । ସମଗ୍ର ଭାରତ ଭୂମି ଯେତେବେଳେ ମୋଗଲ ଶାସନାଧୀନ ହୋଇପଡ଼ିଥିଲା ଏବଂ ମୋଗଲ ଉତ୍ପୀଡ଼ନରେ ହିନ୍ଦୁଧର୍ମ ବିପର୍ଯ୍ୟସ୍ତ ହୋଇପଡ଼ିଥିଲା, ସେତେବେଳେ ଓଡ଼ିଶା ତାହାର ସ୍ୱାଧୀନତା ହରାଇ ନଥିଲା । ସ୍ୱାଧୀନ ଓଡ଼ିଶାରେ ସନାତନ ଧର୍ମ ବହୁଦିନ ପର୍ଯ୍ୟନ୍ତ ସୁରକ୍ଷିତ ହୋଇ ରହିଥିଲା । ସେତେବେଳେ ସନାତନ ଧର୍ମର କେନ୍ଦ୍ରପୀଠ ହୋଇ ଉଠିଥିଲା ଶ୍ରୀଜଗନ୍ନାଥ ଧାମ । ମୋଗଲମାନଙ୍କର ଭାରତ ପ୍ରବେଶ ପୂର୍ବରୁ ମଧ୍ୟ ବିଷ୍ଣୁପୀଠ ରୂପେ ଏହାର ଥିଲା ପ୍ରତିପତ୍ତି ନଥିଲା, ତାହା ନହୋଇଥିଲେ ସ୍କନ୍ଦ ପୁରାଣ, ପଦ୍ମ ପୁରାଣ, ବ୍ରହ୍ମପୁରାଣ ପ୍ରଭୃତି ବିଶିଷ୍ଟ ପୁରାଣମାନଙ୍କରେ ଏହାର ଏତେ ପ୍ରଶସ୍ତି କରାଯିବା ସମ୍ଭବ ହୋଇ ନଥାନ୍ତା । ଶ୍ରୀଜଗନ୍ନାଥପୀଠ ତାହାର ସ୍ୱକୀୟ ମହିମା ଯୋଗେ ବିଭିନ୍ନ ସମ୍ପ୍ରଦାୟର ମହାପୁରୁଷ ଓ ଆଚାର୍ଯ୍ୟମାନଙ୍କୁ ଏଠାକୁ ଆକର୍ଷଣ କରି ଆଣିବାରେ ସମର୍ଥ ହୋଇ ପାରିଥିଲା । ଅଦ୍ୱୈତବାଦୀ ଶଙ୍କର, ଦ୍ୱୈତବାଦୀ ମାଧ୍ୱ, ନିମ୍ବାର୍କ, ବଲ୍ଲଭ ଓ ବିଶିଷ୍ଟ । ଦ୍ୱୈତବାଦୀ ରାମାନୁଜ ଆଦି ଆଚାର୍ଯ୍ୟଗଣ ସେମାନଙ୍କ ନିଜ ନିଜର ଧର୍ମ ପ୍ରଚାର ପାଇଁ ଏଠାକୁ ଯେପରି ଆସି ସ୍ୱୀକୃତି ଲାଭ କରି ଯାଇଛନ୍ତି, ସେହିପରି ଉତ୍ତର ଭାରତର କବୀର, ନାନକଙ୍କ ଭଳି ଅନେକ ସନ୍ଥ ସ୍ୱଧର୍ମ ପ୍ରଚାର ପାଇଁ ଏଠାକୁ ଆସି ସ୍ୱ ସ୍ୱ ମତବାଦ ପ୍ରଚାର କରି ମଠମାନ ସ୍ଥାପନ କରି ଯାଇଛନ୍ତି । ଫଳତଃ ଶ୍ରୀଜଗନ୍ନାଥ ପୀଠ ହୋଇପଡ଼ିଥିଲା ସର୍ବଧର୍ମ ସମନ୍ୱୟ ପୀଠ । ଏହି ପୀଠର ମୂଳଧର୍ମ (ପଞ୍ଚୋପାସନା) ସହିତ ବିଭିନ୍ନ ସମ୍ପ୍ରଦାୟର ମତବାଦ ସମ୍ମିଶ୍ରିତ ହୋଇଯିବା ଫଳରେ ଏକପ୍ରକାର ସର୍ବଧର୍ମ ମତବାଦ ସମନ୍ୱୟ ଧର୍ମୀ ଏକଧର୍ମ ଏଠାରେ ପ୍ରାୟ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ବେଳକୁ ଆତ୍ମପ୍ରକାଶ କରିଥିଲା । ବୌଦ୍ଧାବତାର ରୂପେ ଗୃହୀତ ଶ୍ରୀଜଗନ୍ନାଥଙ୍କ ଯୋଗେ ସହଜଯାନ ଓ ବଜ୍ରଯାନର କେତୁଟା ଦୃଷ୍ଟିଭଙ୍ଗୀ ଏହି ଧର୍ମରେ ଅନ୍ତର୍ଲୀନ ହୋଇ ଯାଇଥିଲା । ସମସ୍ତ ପ୍ରକାର ମିଶ୍ରଣ ପ୍ରକ୍ରିୟା ଯୋଗେ ଓଡ଼ିଶା ଭୂଇଁରେ ବିଶେଷତଃ ଶ୍ରୀ ଜଗନ୍ନାଥ ଧାମରେ ଯେଉଁ ବୈଷ୍ଣବ ଧର୍ମଟି ଆତ୍ମପ୍ରକାଶ କରିଥିଲା, ତାହା ହେଉଛି ଆମର ଆଲୋଚ୍ୟ ଜ୍ଞାନମିଶ୍ରା ଭକ୍ତି ଧର୍ମ । ଏହାର ଇଷ୍ଟ ଥିଲେ ଅପାଣିପାଦ, ନାସା କର୍ଣ୍ଣ ବିହୀନ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ । ଉପନିଷଦ ବର୍ଣ୍ଣିତ ବ୍ରହ୍ମତତ୍ତ୍ୱ, ବୌଦ୍ଧ ଧର୍ମର ଶୂନ୍ୟବାଦ, ତାଙ୍କଠାରେ ମୂର୍ତ୍ତିମନ୍ତ ହେବାରେ ପ୍ରତିବନ୍ଧକ କରି ନଥିଲା । ପୁଣି ରାଧାଭାବ ସମୁଜ୍ଜ୍ୱଳ ଶ୍ରୀକୃଷ୍ଣ ଚୈତନ୍ୟଙ୍କର ଓଡ଼ିଶାରେ ଅବସ୍ଥାନ ।

ତାଙ୍କଦ୍ୱାରା ପ୍ରେମଭକ୍ତି ଧର୍ମ ପ୍ରଚାର ତଥା ନାମ ସଂକୀର୍ତ୍ତନ ଓ ନାମଜପ ଉପରେ ଗୁରୁତ୍ୱ ପ୍ରଦାନ ଆଦି ଘଟଣା ଏହି ଜ୍ଞାନମିଶ୍ରା ଭକ୍ତିଧର୍ମରେ କେତେକ ନୂତନତାର ସଂଯୋଗ କରିଥିଲା । ଏହା ଫଳରେ ପଞ୍ଚରାତ୍ର ଧର୍ମର ବାସୁଦେବ ରୂପୀ ବ୍ରହ୍ମସ୍ୱରୂପ ଶ୍ରୀ ଜଗନ୍ନାଥ ରାଧାକୃଷ୍ଣଙ୍କର ମିଳିତଯୁଗନଦ୍ଧତନୁ-ରୂପ ଧାରଣ କରିଥିଲେ ଏବଂ ଜ୍ଞାନମିଶ୍ରା ଭକ୍ତି ସାଧକ ସେମାନଙ୍କ ସାଧନା ମଧ୍ୟରେ ରାଧାକୃଷ୍ଣ ଲୀଳାରସ ଆସ୍ୱାଦନ, ନାମ ଜପ ଓ ନାମସଂକୀର୍ତ୍ତନକୁ ପ୍ରାଧାନ୍ୟ ଦେଇଥିଲେ ।

ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତି ଧର୍ମରେ ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବସ୍ୱ । ସେ ଉପନିଷଦର ନିର୍ଗୁଣ ବ୍ରହ୍ମ ଓ ଓଁକାର ବ୍ରହ୍ମ, ପାଂଚରାତ୍ର ଧର୍ମର ସଗୁଣ ବ୍ରହ୍ମ ବାସୁଦେବ, ଶୂନ୍ୟବାଦୀଙ୍କର ଶୂନ୍ୟ ପୁରୁଷ, ବୌଦ୍ଧ ଧର୍ମର ବୌଦ୍ଧାବତାର ଏବଂ ଚୈତନ୍ୟ ପନ୍ଥୀ ବୈଷ୍ଣବ ଧର୍ମର ରାଧାକୃଷ୍ଣ, ଏହିଭଳି ବିଭିନ୍ନ ରୂପ ନେଇ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଆବିର୍ଭୂତ ହୋଇଛନ୍ତି । କେବଳ ସେତିକି ନୁହେଁ ତନ୍ତ୍ରର ସମସ୍ତ ବୀଜ ମନ୍ତ୍ରର ପ୍ରତୀକ ରୂପେ ମନ୍ତ୍ରମୟୀ ତନୁ ମଧ୍ୟ ଧାରଣ କରିଛନ୍ତି । ଶ୍ରୀଜଗନ୍ନାଥଙ୍କର ଏହି ରହସ୍ୟମୟ ରୂପ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟକୁ ଆହୁରି ରହସ୍ୟମୟ କରି ତୋଳିଛି ।

ତେଣୁ ଏଠାରେ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ବର୍ଣ୍ଣିତ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ ସାମାନ୍ୟ ଆଲୋଚନା କରାଯାଉଛି ।

## ବୌଦ୍ଧାବତାର ରୂପେ ଶ୍ରୀଜଗନ୍ନାଥ —

ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧାବତାର ରୂପେ ଚିହ୍ନଣ କରାଯିବା ପଛରେ ଦୁଇଟି ପ୍ରଧାନ କାରଣ ରହିଛି । ପ୍ରଥମଟି ହେଉଛି ବଜ୍ରଯାନ ବୌଦ୍ଧ ଧର୍ମର ପ୍ରବର୍ତ୍ତକ ଇନ୍ଦ୍ରଭୂତି ତାଙ୍କ ଜ୍ଞାନସିଦ୍ଧି ଗ୍ରନ୍ଥର ଆରମ୍ଭରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ରୂପେ ବନ୍ଦନା କରିଛନ୍ତି ।

ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତମ୍
ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍
ସର୍ବଦଂ ସର୍ବ ସତ୍ତ୍ୱେଭ୍ୟଃ ସର୍ବଜ୍ଞଂ ବର ବଜ୍ରିଣମ୍
ଭକ୍ତ୍ୟାହଂ ସର୍ବଭାବେନ ବକ୍ଷେ ତତ୍ ସାଧନଂ ପରଂ । (୧ମ ଅଧ୍ୟାୟ)

ଇନ୍ଦ୍ରଭୂତି ଯେତେବେଳେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ବର୍ଣ୍ଣନା କରିଛନ୍ତି, ସେତେବେଳକୁ ବୌଦ୍ଧଧର୍ମ ଓ ବୈଦିକ ଧର୍ମ ମଧ୍ୟରେ ଥିବା ବ୍ୟବଧାନର

ବହୁତ ହ୍ରାସ ଘଟିସାରିଥିଲା । ବୈଦିକ ଧର୍ମର ଅନେକ ଚିନ୍ତାଧାରା, ହିନ୍ଦୁ ତନ୍ତ୍ରର ଅନେକ ମନ୍ତ୍ର, ଯନ୍ତ୍ର, ମୂର୍ତ୍ତିପୂଜା ଓ ସାଧନ ପ୍ରଣାଳୀ ସେତେବେଳକୁ ବୌଦ୍ଧ ଧର୍ମରେ ପ୍ରବେଶ କରିସାରିଥିଲା । ବୌଦ୍ଧତନ୍ତ୍ରର ଦେବଦେବୀ ସେହିପରି ହିନ୍ଦୁ ମାନସରେ ହିନ୍ଦୁ ଦେବତା ରୂପେ ଗୃହୀତ ହୋଇ ସାରିଥିଲେ । ସେଥିପାଇଁ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଶ୍ରୀଜୟଦେବ ବୁଦ୍ଧଙ୍କୁ ବିଷ୍ଣୁଙ୍କର ନବମ ଅବତାର ରୂପେ ବର୍ଣ୍ଣନା କରିବାକୁ କୁଣ୍ଠା ପ୍ରକାଶ କରି ନଥିଲେ । ଶ୍ରୀଜୟଦେବଙ୍କ ରଚିତ ଶ୍ରୀଗୀତଗୋବିନ୍ଦ-ରେ ବୁଦ୍ଧ ଓ ବିଷ୍ଣୁ ଏକ ଓ ଅଭିନ୍ନ ପ୍ରତିପାଦିତ ହେବା ଫଳରେ ଭାରତର ପ୍ରଧାନ ବିଷ୍ଣୁପୀଠ ନୀଳାଚଳ ଧାମରେ ପ୍ରଭୁ ବିଷ୍ଣୁ ରୂପୀ ଶ୍ରୀଜଗନ୍ନାଥଙ୍କଠାରେ ବୁଦ୍ଧତ୍ୱର ଆରୋପ ଘଟିଥିଲା । ବୋଧହୁଏ ସେଥିପାଇଁ ଆଦିକବି ସାରଳାଦାସ ତାଙ୍କ ମହା-ଭାରତର ବହୁ ସ୍ଥଳରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧାବତାର, ବଉଦ୍ଧ ରୂପ ଆଦି ରୂପେ ବର୍ଣ୍ଣନା କରିବାରେ ଦ୍ୱିଧା ପ୍ରକାଶ କରିନାହାନ୍ତି । ଯଥା—

ବନ୍ଦଇ ଜଗନ୍ନାଥ ନୀଳଗିରିବାସୀ
ବଉଦ୍ଧ ରୂପେ ନୀଳକନ୍ଦରେ ଛନ୍ତି ବସି
ବଳଭଦ୍ର ସୁଭଦ୍ରା ସୁଦର୍ଶନ ସହିତେ
ଚତୁର୍ଦ୍ଧା ରୂପେ ବିଜେ ନୀଳସୁନ୍ଦର ପର୍ବତେ ।'

(ସାରଳା ମହାଭାରତ, ମଧ୍ୟପର୍ବ, ପୃ ୫୭୫)

ସାରଳାଦାସଙ୍କଠାରୁ ଏହି ଯେଉଁ ପରମ୍ପରା ଆରମ୍ଭ ହୋଇଥିଲା, ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତ ସାଧକ ବୃନ୍ଦ ସେହି ପରମ୍ପରା ଅନୁସରଣରେ ଶ୍ରୀ ଜଗନ୍ନାଥଙ୍କୁ ବଉଦ୍ଧାବତାର ରୂପେ ଚିତ୍ରଣ କରିଛନ୍ତି ମାତ୍ର । ଏହାର ଅର୍ଥ ନୁହେଁ ସେମାନେ ପ୍ରଚ୍ଛନ୍ନ ବୌଦ୍ଧ ଥିଲେ । ବଳରାମ ଦାସଙ୍କର ଦାରୁବ୍ରହ୍ମ ଗୀତାରେ ବର୍ଣ୍ଣିତ ଅଛି—

ଷଷ୍ଠ ଦିବସ ଅନ୍ତରେଣ ପାଦ ଯେ ପାଣି ହେଲେ କ୍ଷୀଣ
ବଉଦ୍ଧ ରୂପ ହେବା ପାଇଁ ପାଦପାଣି ଗୁଡ଼ିଲେ ତହିଁ ।

ଶିଶୁ ରାମଦାସ ମଧ୍ୟ ଦେଉଳ ତୋଳାରେ ଲେଖିଛନ୍ତି—

'ଠାକୁରେ ବୋଇଲେ ରଜା ହୋଇଲୁ କି ବାଇ
କଳିଯୁଗେ ବସିବୁ ବଉଦ୍ଧ ରୂପ ହୋଇ ।'

କବି ଅରକ୍ଷିତ ଦାସ ମହୀମଣ୍ଡଳ ଗୀତାରେ ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧ ରୂପ ରୂପେ ଚିତ୍ରଣ କରି ଲେଖିଛନ୍ତି—

ଆଜ୍ଞାରେ ବୌଦ୍ଧ ରୂପ ହେଲେ
ନୀଳକନ୍ଦରେ ବିଜେ କଲେ

କବି ଦୀନକୃଷ୍ଣ 'ବୌଦ୍ଧ ବ୍ରହ୍ମଲେଖନ' ନାମକ ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କୁ ବାରମ୍ବାର ବୁଦ୍ଧଙ୍କ ଅବତାର ରୂପେ ଉଲ୍ଲେଖ କରିଥିବା ବିଷୟ ଡକ୍ଟର ନଗେନ୍ଦ୍ର ନାଥ ପ୍ରଧାନ ତାଙ୍କ 'ପ୍ରାଚୀନ ଓଡ଼ିଆ ସାହିତ୍ୟରେ ନିର୍ଗୁଣ ଧାରା' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । (ପୃ ୧୧୩)

ଯଥା— ବଉଦ୍ଧ ରୂପେ ନୀଳଗିରି । ଶ୍ରୀ ଜଗନ୍ନାଥ ବିଜେ କରି ।
ବଉଦ୍ଧ ନୀଳାଦ୍ରି ଗୋସାଇଁ । ବସିଛୁ ଯୋଗାରୂଢ଼ ହୋଇ ।

ଈଶ୍ୱର ଦାସ 'ଚୈତନ୍ୟ ଭାଗବତ'ରେ ଶ୍ରୀ ଜଗନ୍ନାଥଙ୍କୁ ବୌଦ୍ଧ ଅବତାର ରୂପେ ବର୍ଣ୍ଣନା କରି ଲେଖିଛନ୍ତି—

ବନ୍ଦଇ ନୀଳାଦ୍ରି ଗୋସାଇଁ
ଦାରୁ ସ୍ୱରୂପେ ଭାବଗ୍ରାହୀ

X X X

ଯା ନାମ ବୌଦ୍ଧ ଅବତାର
ମୋ ପ୍ରାଣ ଶରଣ ପଯ୍ୟର । (୭୪ ଅଧ୍ୟାୟ)

ଅଚ୍ୟୁତାନନ୍ଦ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧ ରୂପରେ ସମ୍ବୋଧନ କରିଥିବାର ଦେଖାଯାଇଥାଏ—

ଯଥା— ବୌଦ୍ଧ ରୂପ ଧରି ନାଥ ମଣ୍ଡପେ ବସିଛ
ଅରୂପାନନ୍ଦ ମୂରତି ଭଗତେ ଚାହୁଁଛ

(ଅଚ୍ୟୁତାନନ୍ଦ ରଚନାବଳୀ କବିତା ଖଣ୍ଡ—ପୃ ୫୪)

କଳିଯୁଗ ଯେବେ ବୁଦ୍ଧଙ୍କ ରୂପରେ ନୀଳାଚଳେ ଅଛୁ ରହି
ନିଶ୍ଚଳ ଆସନେ ବସି ଯୋଗାସନେ ସ୍ଥଳକରେ ଥିବେ ଗୁହିଁ ।

(ଶୂନ୍ୟ ସଂହିତା ବିଂଶ ଅଧ୍ୟାୟ)

## ଶ୍ରୀଜଗନ୍ନାଥ—ବ୍ରହ୍ମ

ଜ୍ଞାନମିଶ୍ରା ଭକ୍ତ ସାଧକ ଓଡ଼ିଆ ବୈଷ୍ଣବଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ ଥିଲେ ପାଣିପାଦ, କର୍ଣ୍ଣ, ନାସିକା ବର୍ଜିତ ନିର୍ଗୁଣ ବ୍ରହ୍ମ, ପୁଣି ସଙ୍କର୍ଷଣ, ସୁଭଦ୍ରା ଓ ସୁଦର୍ଶନ ଯୁକ୍ତ ସଗୁଣ ବ୍ରହ୍ମ ବାସୁଦେବ। ଦାରୁରେ ତାଙ୍କର ବିଗ୍ରହ ନିର୍ମିତ ହେତୁ ତାଙ୍କୁ ସେମାନେ ଦାରୁବ୍ରହ୍ମ ରୂପେ ସମ୍ବୋଧନ କରିଛନ୍ତି। ତାଙ୍କ ଦୃଷ୍ଟିରେ ବ୍ରହ୍ମ ସ୍ୱରୂପ ଶ୍ରୀଜଗନ୍ନାଥ ହେଉଛନ୍ତି ସୃଷ୍ଟିର ପାଳନ କର୍ତ୍ତା, ଏବଂ ସମସ୍ତ ଅବତାରର ଜନକ। ମୋକ୍ଷ ପ୍ରଦାନରେ ସେ ଏକମାତ୍ର ଅଧିକାରୀ। ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟର ଛନ୍ଦେ ଛନ୍ଦେ ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କର ମହିମା ବର୍ଣ୍ଣନା ମୁଖରିତ ହୋଇଛି।

ଶ୍ରୀଜଗନ୍ନାଥଙ୍କୁ ବ୍ରହ୍ମ ରୂପେ ବର୍ଣ୍ଣନା କରିବା ପରମ୍ପରା ଉପନିଷଦରୁ ଆରମ୍ଭ ହୋଇଛି।

ପୁରୁଷୋତ୍ତମ ତାପନୀୟୋପନିଷଦରେ ଲିଖିତ ଅଛି—

> ଅଥ ପୁରୁଷୋତ୍ତମୋ ଯସ୍ୟାଂ ସା ପୁରୁଷୋତ୍ତମାଭିଧାନା
> ପୁର୍ଯ୍ୟସ୍ତି ସାକ୍ଷାଦ୍ ବ୍ରହ୍ମ ଯତ୍ର ପରମ ସନ୍ନ୍ୟାସ ରୂପଃ କୃଷ୍ଣଃ

ଶ୍ରୀମଦ୍ଭଗବଦ୍ ଗୀତାର ବର୍ଣ୍ଣନାନୁଯାୟୀ—

କ୍ଷର ବ୍ରହ୍ମ ହେଉଛି ଜଗତ୍, ଅକ୍ଷର ବ୍ରହ୍ମ ଜୀବାତ୍ମା ଏବଂ ପୁରୁଷୋତ୍ତମ ହେଉଛନ୍ତି ପରଂବ୍ରହ୍ମ।

> ଯସ୍ମାତ୍ କ୍ଷରମତୀତୋହମକ୍ଷରାଦପି ଚୋତ୍ତମଃ
> ଅତୋଽସ୍ମି ଲୋକେ ବେଦେଚ ପ୍ରଥିତଃ ପୁରୁଷୋତ୍ତମଃ

ଅର୍ଥାତ୍ ମୁଁ କ୍ଷର ବ୍ରହ୍ମରୁ ଅତୀତ ଏବଂ ଅକ୍ଷର ବ୍ରହ୍ମରୁ ଉତ୍ତମ। ତେଣୁ ମୁଁ ବେଦରେ ଏବଂ ଲୋକରେ ପୁରୁଷୋତ୍ତମ ନାମେ କଥିତ। ଶ୍ରୀଜଗନ୍ନାଥଙ୍କର ପୁରୁଷୋତ୍ତମ ନାମ ଏହି ବ୍ରହ୍ମ ପର୍ଯ୍ୟାୟବାଚୀ।

ବଳରାମ ଦାସ ବେଦାନ୍ତ ସାର ଗୁପ୍ତ ଗୀତାରେ ଲେଖିଛନ୍ତି—

> ସେହି ଈଶ୍ୱର ନୀଳାଚଳେ
> କପଟେ ଦାରୁ ରୂପ ଧରେ। ୩୯।

ବେଦାନ୍ତ ସାର ବ୍ରହ୍ମ ଏହୁ
ବେଦହିଁ ବର୍ଣ୍ଣି ନପାରଇ । ୪୦ ।
(ଦ୍ୱାର୍ତ୍ତିଂଶ ଅଧ୍ୟାୟ)

ଶ୍ରୀଜଗନ୍ନାଥଙ୍କ ନିବାସସ୍ଥଳ ନୀଳାଚଳ ଓ ମର୍ତ୍ତ୍ୟଗୋଲକ ଏକ ଏବଂ ଶ୍ରୀଜଗନ୍ନାଥ ଏବଂ ଶ୍ରୀକୃଷ୍ଣ ହୋଇଛନ୍ତି ଏକ ।

ଏ ନୀଳଗିରି ନୀଳାସମ
ଏହୁ ଶ୍ରୀକୃଷ୍ଣ ନିଜ ଧାମ । ୫୯ ।
ଏ ନୀଳଗିରି ମର୍ତ୍ତ୍ୟ ଦୁଇ
ଅଭେଦ ଶରୀର ଅଟଇ । ୬୦ ।
ଦୀପରେ ଦୀପ ଲଗାଇଲେ
ତେଜେ ଯେମନ୍ତେ ସମତୁଲେ । ୬୧ ।
କର୍ମ କାରଣେ ଭିନ୍ନ ହୋଇ
ଶ୍ରୀକୃଷ୍ଣ ଜଗନ୍ନାଥ ଦୁଇ । ୬୨ ।
(ଅଷ୍ଟମ ଅଧ୍ୟାୟ)

ଅନ୍ୟତ୍ର ସେ ଲେଖିଛନ୍ତି—

କାର୍ଯ୍ୟ କାର୍ଯ୍ୟେ ଭିନ୍ନ ଭିନ୍ନ ହୋଇ
ଜଗନ୍ନାଥ ଶ୍ରୀକୃଷ୍ଣ ଏକ ଦେହୀ । ୯୫ । (ଏକବିଂଶ ଅଧ୍ୟାୟ)

ମର୍ତ୍ତ୍ୟରେ ଜାତ କୃଷ୍ଣ ହୋଇଛନ୍ତି ଶ୍ରୀଜଗନ୍ନାଥଙ୍କର ଏକ କଳା ।

ଆମ୍ଭର ଏକ ଏକ କଳା
ଦ୍ୱାରକା ପୁରରେ ରହିଲା
ସ୍ୱେ କୃଷ୍ଣ ଅଙ୍ଗରେ ଆମ୍ଭର
ଜନ୍ମ ହୋଇଲା ଦ୍ୱାରକାର
ସେ ଅମ୍ଭେ ଭିନ୍ନ ନୋହୁ ବୀର
ମାୟାରେ ଜନ୍ମ ମଥୁରାର । ୫୩ ।
(ନବମ ଅଧ୍ୟାୟ)

ମହାଦେବ ଦାସ ଭାଗବତ ଦ୍ୱାଦଶ ସ୍କନ୍ଧରେ ଶ୍ରୀଜଗନ୍ନାଥଙ୍କୁ ନିର୍ଗୁଣ ବ୍ରହ୍ମ ଅଚ୍ୟୁତ କୃଷ୍ଣ ବାସୁଦେବ ଆଦି ନାମରେ ସମ୍ବୋଧନ କରିଛନ୍ତି—

ହେ ଜଗନ୍ନାଥ ଜଗଦ୍ଭୂତ । ସୃଷ୍ଟି ପାଳକ ହେ ଅଚ୍ୟୁତ

X X X

ନିର୍ଗୁଣ ନିରଞ୍ଜନ ରୂପ । ପଞ୍ଚ ଭୂତର ଯେ ସ୍ୱରୂପ
ନମଇଁ ଜଗ୍ଗୁକୃଷ୍ଣ ଶ୍ୟାମ । ସର୍ବଭୂତରେ ଆତ୍ମା ରାମ । (୧ମ ଅଧ୍ୟାୟ)

ସେ ଯେ ଭଗବାନ ପୁରୁଷ । ବାସୁଦେବ ନିର୍ଗୁଣ ଅଂଶ
ନିର୍ଗୁଣେ ମଣ୍ଡିତ କେବଳ । ଉତ୍ପତ୍ତି ଅଂଶ ଆଦି ମୂଳ । (୧୧ ଅଧ୍ୟାୟ)

ଜଗନ୍ନାଥ ଦାସଙ୍କ ଶିଷ୍ୟ ଦିବାକର ଦାସ ଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ସର୍ବତ୍ର ଶ୍ରୀ ଜଗନ୍ନାଥ ଓ ନୀଳାଚଳ କ୍ଷେତ୍ରର ପ୍ରଶସ୍ତି କରିଛନ୍ତି । ଏହି ଗ୍ରନ୍ଥରେ ସେ ଶ୍ରୀଜଗନ୍ନାଥଙ୍କୁ ପରଂବ୍ରହ୍ମ ରୂପେ ପ୍ରତିପାଦନ କରି ଲେଖିଛନ୍ତି—

ପରମ ଆତ୍ମା ପରଂବ୍ରହ୍ମ । ନିର୍ଗୁଣ ନିତ୍ୟ ଯେ ପରମ
ନିଷ୍ପୃହ ପରମ ଈଶ୍ୱର । ନୀଳାଚଳର ଅଧୀଶ୍ୱର ।

(ଜଗନ୍ନାଥ ଚରିତାମୃତ)

ପୁନଶ୍ଚ ଲେଖିଛନ୍ତି— ଜଗନ୍ନାଥ ଯେ ଷୋଳକଳା।
ଚନ୍ଦ୍ର କଳାଏ ନିନ୍ଦିବଳା।
କଳାକି ଷୋଳକଳା କରି
ଗୋପେ ବଢିରେ ନରହରି । (୭ମ ଅଧ୍ୟାୟ)

ଦ୍ୱିତୀୟ ବଳରାମଦାସ କୃଷ୍ଣଗର୍ଭ ଗୀତାରେ ଲେଖିଛନ୍ତି—

ଶ୍ରୀଜଗନ୍ନାଥ ପରଂବ୍ରହ୍ମ । ଏହାଙ୍କ ଗର୍ଭଁ ସର୍ବେ ଜନ୍ମ ।

ଈଶ୍ୱର ଦାସ ଚୈତନ୍ୟ ଭାଗବତରେ ଶ୍ରୀଜଗନ୍ନାଥଙ୍କୁ ବ୍ରହ୍ମ ରୂପରେ ସ୍ତୁତି କରି ଲେଖିଛନ୍ତି—

ବନ୍ଦଇ ନୀଳଗିରି ବାସୀ । ସିଂହାସନରେ ବ୍ରହ୍ମରାଶି
ଅଖିଳ ବ୍ରହ୍ମାଣ୍ଡ ଠାକୁର । ଚତୁର୍ଦ୍ଧା ରୂପେ ଅବତାର

(ଷଷ୍ଟିତମ ଅଧ୍ୟାୟ)

ଯଶୋବନ୍ତ ଦାସ ମଧ୍ୟ ପ୍ରେମ ଭକ୍ତି ବ୍ରହ୍ମ ଗୀତାରେ ଲେଖିଛନ୍ତି—

ସେ କ୍ଷେତ୍ର ନୀଳାଚଳ ଧାମ । ନାମ ଯା ଶ୍ରୀ ପୁରୁଷୋତ୍ତମ
ସେ ବ୍ରହ୍ମପାଦେ ଧ୍ୟାୟି ଚିତ୍ତ । କହଇ ଦାସ ଯଶୋବନ୍ତ ।

(ପଞ୍ଚମ ଅଧ୍ୟାୟ)

ଅଚ୍ୟୁତାନନ୍ଦ ଦାସ ଶୂନ୍ୟ ସଂହିତା ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କୁ ଏକାକ୍ଷର ବ୍ରହ୍ମ ଓ ଦାରୁବ୍ରହ୍ମ ରୂପ ବର୍ଣ୍ଣନା କରି ଲେଖିଛନ୍ତି—

ବ୍ରହ୍ମ ଏକାକ୍ଷର ସେ ଯେ ଆପେ ନିରଂଜନ
ଦେହରୂପୀ ଜଗନ୍ନାଥ ଆପେ ଦାରୁବ୍ରହ୍ମ
ଭକ୍ତଙ୍କ ଭାବରେ ଆପେ ଦାରୁବ୍ରହ୍ମ ରୂପ
ଅଲେଖ ଭବାନୁଁ ଆସି ଦୃଶ୍ୟ ଜ୍ୟୋତି ରୂପ

(ଶୂନ୍ୟସଂହିତା—ପୃ ୨୩)

ପୁନଶ୍ଚ ଅନ୍ୟ ଏକ ଗୀତିକାରେ ଲେଖିଛନ୍ତି—

ହେ ପ୍ରଭୁ ଜଗନ୍ନାଥ ଆଦି ନିରାକାର
ତୋହର ଅଂଶାଂରେ ଜଗତ ସର୍ଜନା ସଂହାର
ପୂର୍ଣ୍ଣବ୍ରହ୍ମ ଅବତାର ତୁ ଅଖିଳପତି
ତୋହ ପଦରଜ ବିନା ନୋହେ ଗତି ମୁକ୍ତି

(ଅଚ୍ୟୁତାନନ୍ଦ ରଚନାବଳୀ—କବିତାଖଣ୍ଡ ପୃ ୧)

ବ୍ରଜ ଭବସ୍ଥା ଦାସ ମନ୍ମଥ ଚନ୍ଦ୍ରିକାରେ ଅନୁରୂପ ଭାବରେ ଶ୍ରୀଜଗନ୍ନାଥଙ୍କୁ ପୂର୍ଣ୍ଣବ୍ରହ୍ମ ରୂପେ ପ୍ରତିପାଦିତ କରିଛନ୍ତି—

ଯଥା - ଶ୍ରୀ ନୀଳଗିରିରେ ବିଜେ ଅପୂର୍ବ ପୁରୁଷ
ଯେଉଁଠାରେ କ୍ଷରିଛନ୍ତି ସର୍ବ ଅଂଶା ଅଂଶ

× × ×

ଏହି ପ୍ରଭୁ ବିଜେ ଆଉ ନାହିଁ ବଡ଼ ଜଣ
ଗତି ମୁକ୍ତି ଭକ୍ତି ପ୍ରଭୁ ଏହି ପୂର୍ଣ୍ଣବ୍ରହ୍ମ

(ପ୍ରଥମ ପରିଚ୍ଛେଦ)

ଏହିପରି ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର ଅନେକ ସ୍ଥାନରେ ଶ୍ରୀଜଗନ୍ନାଥଙ୍କୁ ବ୍ରହ୍ମ ରୂପେ ଚିତ୍ରଣ କରାଯାଇଛି । ବ୍ରହ୍ମଙ୍କର ଶବ୍ଦମୟ ରୂପ ବା ମନ୍ତ୍ରମୟୀ ତନୁ

କଲ୍ପନା ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ମୁଖ୍ୟତ ହୋଇଥିବାରୁ ଶ୍ରୀଜଗନ୍ନାଥ ମଧ୍ୟ ଏଥିରେ ଓଁକାର ବ୍ରହ୍ମ, ବୀଜ ବ୍ରହ୍ମ ରୂପ ଧାରଣ କରିଛନ୍ତି ।

## ଶ୍ରୀ ଜଗନ୍ନାଥ – ଓଁ କାର ବ୍ରହ୍ମ ବା ବୀଜମନ୍ତ୍ର

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଓଁ, ହ୍ରୀଂ, କ୍ଲୀଂ ଶ୍ରୀଂ ଗ୍ଲୀଂ, ଓ ଧୀ ଏହି ପଞ୍ଚବୀଜ ମନ୍ତ୍ର ଏବଂ ହରେ ରାମକୃଷ୍ଣ ମହାମନ୍ତ୍ରର ରୂପତତ୍ତ୍ୱ, ଜପଫଳ ଆଦି ବହୁ ଚର୍ଚ୍ଚିତ ହୋଇଛି ଏବଂ ଏହା ସହିତ ପ୍ରାୟ ସବୁଠି ରାଧାକୃଷ୍ଣ ଓ ଶ୍ରୀଜଗନ୍ନାଥ-ଙ୍କର ଚତୁର୍ଦ୍ଧାମୂର୍ତ୍ତିକୁ ସମ୍ପର୍କିତ କରାଯାଇଛି ।

ଅଚ୍ୟୁତାନନ୍ଦ ଶୂନ୍ୟ ସଂହିତା ଗ୍ରନ୍ଥରେ ଲେଖିଛନ୍ତି ।

କ୍ଲୀଂ ବୀଜମନ୍ତ୍ର ହେଉଛନ୍ତି ଶ୍ରୀ ଜଗନ୍ନାଥ ଏହି ବୀଜମନ୍ତ୍ରର ମହିମା ବର୍ଣ୍ଣନା କରି ସେ ଲେଖିଛନ୍ତି—

କାମବୀଜର ଯେ ଏକୁ ଆରେକ ମହିମା
କ୍ଲୀଂ ବୀଜ ବୋଲଣ ଯେହୁ ଶୁଦ୍ଧଭକ୍ତି ସୀମା
କିଶୋର ବୟସେ କୃଷ୍ଣ ଜଗନ୍ନାଥ ସେହି
ରସାନନ୍ଦ ସ୍ୱରୂପେ ସେ ଆପେ ଭାବଗ୍ରାହୀ

( ତୃତୀୟ ଅଧ୍ୟାୟ )

ସେ ପୁଣି ଶ୍ରୀଜଗନ୍ନାଥଙ୍କୁ ମହାମନ୍ତ୍ର ମନ୍ତ୍ରରାଜ ( ହରେରାମ କୃଷ୍ଣ ) ରୂପେ ପ୍ରତିପାଦିତ କରି ଲେଖିଛନ୍ତି—

ମହାମନ୍ତ୍ର ମନ୍ତ୍ରରାଜ ଜଗନ୍ନାଥ ଅଙ୍ଗ
ଲକ୍ଷ୍ମୀଙ୍କି ଘେନିଣ ବଳେ ସୁଭଦ୍ରାଙ୍କ ସଙ୍ଗ

ଉକ୍ତ ଗ୍ରନ୍ଥରେ ସେ ଶ୍ରୀ ଜଗନ୍ନାଥଙ୍କୁ ଏକାକ୍ଷର ପ୍ରଣବ ରୂପେ ଚିତ୍ରିତ କରି ଲେଖିଛନ୍ତି—

ବ୍ରହ୍ମ ଏକାକ୍ଷର ଯେ ଆପେ ନିରଞ୍ଜନ
ଦେହି ରୂପୀ ଜଗନ୍ନାଥ ଆପେ ଦାରୁବ୍ରହ୍ମ

( ଶୂନ୍ୟ ସଂହିତା—୨୩ ପୃ )

ବ୍ରହ୍ମତତ୍ତ୍ୱ ନାମକ ଗ୍ରନ୍ଥରେ ଶିଶୁଅନନ୍ତ ଦାସ ଅଶୁଦ୍ଧ ସଂସ୍କୃତ ଭାଷାରେ ଶ୍ରୀଜଗନ୍ନାଥଙ୍କର ମନ୍ତ୍ରମୟତନୁ ବର୍ଣ୍ଣନା କରି ଲେଖିଛନ୍ତି ।

ଅଙ୍କାଂର ଉକାରଂ ମକାରଂ ତଂ ଅବ୍ୟକ୍ତଂ ବ୍ରହ୍ମଂ ନସ୍‌କାରଂ
ଷଡକ୍ଷରଂ ବନ୍ଦ୍ୟତ୍ୟୁ ଭାଗକଂ । ଇସ୍ମ ସନ୍ଧ୍ୟ ଚକ୍ଷୁ ବନ୍ଦ
ମହାମନ୍ତ୍ର ଷଡ଼କ୍ଷରଂ । ଓଁ କାରଂ ଚ ମହାମନ୍ତ୍ରଂଚ

× × ×

ଜଗନ୍ନାଥ ପଞ୍ଚଦେହଂ ମନ୍ତ୍ରରାଜ ସ୍ଥିତଂ ବୃଦ୍ଧ

ଯଶୋବନ୍ତ ଦାସ ପ୍ରେମଭକ୍ତି ବ୍ରହ୍ମଗୀତାରେ ବୀଜମନ୍ତ୍ର ତତ୍ତ୍ୱ ବୁଝାଇବାକୁ ଯାଇ ଲେଖିଛନ୍ତି—

ବାମେ ଜଗନ୍ନାଥ ଯେହୁ
କ୍ଲୀଂ ଅଙ୍ଗରେ ବୀଜେ ସେହୁ [ ପଞ୍ଚମ ଅଧ୍ୟାୟ ]

ଜଗନ୍ନାଥ ଦାସ ଶ୍ରୀ ଜଗନ୍ନାଥଙ୍କୁ କ୍ଲୀଂ ବୀଜମନ୍ତ୍ର ରୂପ ଚିହ୍ନିତ କରିବା ସହିତ କ୍ଲୀଂ ଶବ୍ଦରେ ଥିବା କ, ଲ, ଇ ବର୍ଣ୍ଣକୁ ଯଥାକ୍ରମେ ଜଗନ୍ନାଥ ବଳଭଦ୍ର ଓ ଶ୍ରୀରାଧିକାଙ୍କଠାରେ ଚିହ୍ନାଇଛନ୍ତି···

ଯଥା— ଜଗନ୍ନାଥ ବନ୍ଦେ କାମ ବୀଜକୁ
ରାମ ହେତୁ ରଖ ତୋର ଚିତ୍ତକୁ
କିଶୋର କିଶୋରୀ କରନ୍ତି ରାସ
କାମ ବୀଜେ ତହିଁ କରି ନିବାସ
କ କାରରେ ହରି
କିଶୋରୀ ଯେନ କେଳି ସୁଖ କରି । । ୧

ଇ କାର ବଳଭଦ୍ର ରୂପ ସାଜେ
କ୍ରୀଡ଼ା କରନ୍ତି ସଖୀ ଗଣ ମାଝେ
ଲ କାର ରାଧିକା ବିଜୟ କରି
ଶ୍ରୀ କୃଷ୍ଣ ସଙ୍ଗତେ ଲୀଳା ବିହାରୀ
( ଅଚ୍ୟୁତାନନ୍ଦଙ୍କ ଜନ୍ମ ଶରଣ ୪୦ ପୃ

ଜଗନ୍ନାଥ ଦାସଙ୍କର ଶିଷ୍ୟ ହରିଦାସ 'ନିତ୍ୟନୀଳାଦ୍ରି ବିଳାସ' ନାମକ ଗ୍ରନ୍ଥରେ ମଧ୍ୟ କ୍ଲୀଂ ବୀଜମନ୍ତ୍ରକୁ ରାଧାକୃଷ୍ଣ ମିଳିତ ରୂପ ଶ୍ରୀ ଜଗନ୍ନାଥ ବୋଲି ଲେଖିଛନ୍ତି । ଶ୍ରୀ ଚୈତନ୍ୟ ଭାଗବତରେ ଈଶ୍ୱର ଦାସ ବୀଜମନ୍ତ୍ର ତତ୍ତ୍ୱ ଅବତାରଣା ପ୍ରସଙ୍ଗରେ କହିଛନ୍ତି—

ହ୍ରୀଂ ବୀଜ ଶେଷ ଯେ ପ୍ରକାଶ । ଶ୍ରୀଂ ବୀଜ ସୁଭଦ୍ରା ସଦୃଶ
କ୍ଲୀଂ ବୀଜ ଜଗନ୍ନାଥ ହୋଇ । ଏ ତିନ୍ତି ଭୋଗ ଯେ କରଇ । ୪୫
ପଞ୍ଚାଶତ୍ତ୍‌ ଅଧ୍ୟାୟ

କାମ ବୀଜରେ ଜଗନ୍ନାଥ । ସ୍ୱେକସ୍ୱେକରେ ଗର୍ଭଗତ । ୧୭୫
( ଏକପଞ୍ଚାଶତ୍‌ ଅଧ୍ୟାୟ )

ସେ ମଧ୍ୟ ଏହି ଗ୍ରନ୍ଥରେ ଶ୍ରୀ ଜଗନ୍ନାଥଙ୍କୁ ଶ୍ରୀରାଧାଙ୍କ ନିବାସ ଯନ୍ତ୍ର ରୂପେ ବର୍ଣ୍ଣନ କରିଛନ୍ତି ( ୫୦।୨୦୨ ), ତେଣୁ ଶ୍ରୀ ରାଧାଙ୍କୁ ସ୍ୱୟଂ ଜଗନ୍ନାଥ ବୋଲି ଲେଖିଛନ୍ତି ।

ଶ୍ରୀ ରାଧା ସ୍ୱୟଂ ଜଗନ୍ନାଥ
ସ୍ଥୂଳ ଧାରିଣୀ ରାଧା ନିତ୍ୟ ( ୫୦/୩୧୨ )

ଗୁରୁଭକ୍ତି ଗୀତାରେ 'ଗୋପୀଜନ ବଲ୍ଲଭାୟ ସ୍ୱାହା' ଏହି ଦଶାକ୍ଷର ମନ୍ତ୍ରକୁ ଶ୍ରୀ ଜଗନ୍ନାଥଙ୍କର ସ୍ୱରୂପ ରୂପେ ପ୍ରତିପାଦନ କରିବା ପାଇଁ କୁହାଯାଇଛି—

ଚବଣ ଗୋପାଳ ଶୁଣ ଦଶାକ୍ଷର ପୁଣ
ଗୋପୀ ଜନ ବଲ୍ଲଭାୟ ସ୍ୱାହା ବୋଲି ପୁଣ
କ୍ଲୀଂଉଁ ଅକ୍ଷର ସବୁ ମନ୍ତ୍ରଙ୍କର ବୀଜ
ଏ ଅକ୍ଷରୁ କ୍ଷର ଅଛି ଦଶାକ୍ଷର ବୃକ୍ଷ

କ୍ଲୀଂ ଅକ୍ଷରକୁ କିପରି ଦଶାକ୍ଷର ହୋଇଛି ତାହା ସେ ବୁଝାଇବାକୁ ଯାଇ କହିଛନ୍ତି—

ଲ — ଗୋପୀ
ଈ — ଜନ
କ (କୃଷ୍ଣ) — ବଲ୍ଲଭାୟ
ବିନ୍ଦୁ ( ଅନୁସ୍ୱାର ) — ସ୍ୱାହା

ଶେଷରେ ସେ ଲେଖିଛନ୍ତି—

ଏହି ଦଶ ଅକ୍ଷର ଯେ ଏକାକ୍ଷର ହୋଇ
ଜଗନ୍ନାଥ ସ୍ୱରୂପ ଏ ଏକାକ୍ଷର କହି
ମନ୍ତ୍ର ରୂପ ବନ୍ଧିଲେ ଯେ ସେ ରୂପ ଦେଖଇ । ୮
( ୪୮ ଗ୍ରନ୍ଥ )

ଶ୍ରୀ ଜଗନ୍ନାଥ ଓଁ କାର ରୂପ

ଯେମନ୍ତେ ଦାରୁ ବ୍ରହ୍ମ ଗୋପ୍ୟ । ଓଁ କାର ଜଗନ୍ନାଥ ରୂପ

( ପ୍ରେ. ଭ. ବ୍ର. ଗୀ. ୭ମ ଅଧ୍ୟାୟ )

ବ୍ରହ୍ମ ଏକାକ୍ଷର ଯେ ଆପେ ନିରଞ୍ଜନ
ଦେହ ରୂପୀ ଜଗନ୍ନାଥ ଆପେ ଦାରୁ ବ୍ରହ୍ମ ।

## ଶ୍ରୀଜଗନ୍ନାଥ ଶୂନ୍ୟରୂପ—

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଶୂନ୍ୟବାଦ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲା । ଭକ୍ତି ସାହିତ୍ୟର ଶୂନ୍ୟ ଅନସ୍ତିତ୍ୱ ବାଚକ ନ ହୋଇ ବ୍ରହ୍ମ ବାଚକ ଅଟେ । ଶ୍ରୀ ଜଗନ୍ନାଥ, ବ୍ରହ୍ମରୂପେ ଗୃହୀତ ହୋଇଥିବାରୁ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଶ୍ରୀଜଗନ୍ନାଥ ମଧ୍ୟ ଅନେକ ସ୍ଥଳରେ 'ଶୂନ୍ୟରୂପ' ରୂପେ ବର୍ଣ୍ଣିତ ହୋଇଛନ୍ତି । ଈଶ୍ୱର ଦାସ ଚୈତନ୍ୟଭାଗବତରେ ଶ୍ରୀ ଜଗନ୍ନାଥଙ୍କର ବନ୍ଦନା କରି ଲେଖିଛନ୍ତି—

ଶ୍ରୀ ଜଗନ୍ନାଥ ଆଦ୍ୟମୂଳ । ଶ୍ରୀ ଜଗନ୍ନାଥ ଶୂନ୍ୟ ଠୂଳ
ଶ୍ରୀ ଜଗନ୍ନାଥ ରୂପ ଗୋପ୍ୟ । ଯେତେକ ଅବତାର ରୂପ । ୭୦୮

( ୬୫ ଅଧ୍ୟାୟ )

'ଠୂଳଶୂନ୍ୟସାର' ପ୍ରାରମ୍ଭରେ ଅଚ୍ୟୁତାନନ୍ଦ ଲେଖିଛନ୍ତି--

ଓଁ ଶୂନ୍ୟ ଶୂନ୍ୟ ମହାଶୂନ୍ୟ
ଶୂନ୍ୟ ମଧ୍ୟେ ନିରାକାର
ଓ ନିରାକାର ଅଣାକାର । ଜଗନ୍ନାଥ ନମୋ ନମଃ

ଅନ୍ୟତ୍ର ସେ ଜଗନ୍ନାଥଙ୍କୁ ଠୂଳଶୂନ୍ୟ ରୂପେ ବନ୍ଦନା କରିବାକୁ ଯାଇ ଲେଖିଛନ୍ତି—

ଗରୁଡ଼ ପଛରେ ଉଭା ହୋଇଣ
ଭଗତ ଭାବେ ଯେ କଲେ ଜଣାଣ
ଠୂଳ ଶୂନ୍ୟକୁ ଲଗାଇଣ ଆଣି
ଶ୍ରୀମୁଖକୁ ଚାହିଁ ଅଚ୍ୟୁତ ଦାସ ।

( ଶରଣ ପଞ୍ଜର ୧୦-୧୧ ପଦ )

ଜଗନ୍ନାଥ ଦାସ ଶିଷ୍ୟ ଗୋପାଳ ଶ୍ରୀ ପାଦପଦ୍ମ ସୁଧାନିଧିରେ ଲେଖିଛନ୍ତି—

ସିଂହାସନ ପରେ ଚତୁର୍ଧାରୂପ ବିଜେ ଶ୍ରୀହରି
ବଳଦେବ ଜଗନ୍ନାଥ ସୁଭଦ୍ରା ଚକ୍ର ବେହାରି । ୮୫
ସହଜେ ପଶିଲେ ଚତୁର୍ଧା ରୂପ ବର୍ଣ୍ଣପ୍ରକାଶ
ମହା ଶୂନ୍ୟ ପୁରେ ବେହାର ଅଲେଖ ଯେ ପୁରୁଷ । ୮୬

ଶୂନ୍ୟବାଦ ବିଗ୍ରହ ବେଳେ ଏ ସମ୍ବନ୍ଧରେ ଆଲୋଚନା କରାଯାଇଥିବାରୁ ଏଠାରେ ତାହାର ପୁନରାବୃତ୍ତି କରାଯାଉନାହିଁ ।

## ଶ୍ରୀ ଜଗନ୍ନାଥ ଅବତାରୀ ପୁରୁଷ—

ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତିଧର୍ମ ପରମ୍ପରାରେ ଶ୍ରୀ ଜଗନ୍ନାଥ ହେଉଛନ୍ତି ଅବତାରୀ ବା ସ୍ୱୟଂ ଭଗବାନ୍ । ମତ୍ସ୍ୟ, କଚ୍ଛପ, ବରାହ ଆଦି ଦଶଅବତାର ତାଙ୍କଠାରୁ ଜାତ ହୋଇ ମର୍ତ୍ତ୍ୟରେ ସ୍ୱଲୀଳା ପ୍ରକାଶ କରନ୍ତି ଏବଂ ଲୀଳା ଶେଷପରେ ଶ୍ରୀ ଜଗନ୍ନାଥଙ୍କ ଦେହରେ ବିଲୀନ ହୁଅନ୍ତି । ଦିବାକର ଦାସ ଜଗନ୍ନାଥ ଚରିତାମୃତରେ ଲେଖିଛନ୍ତି ।

ଈଶ୍ୱର ଉପରେ ଈଶ୍ୱର । ପରମ ପରେ ପରାପର
ବ୍ରହ୍ମ ଉପରେ ବ୍ରହ୍ମ ଏହି । କୃଷ୍ଣ ଉପରେ କୃଷ୍ଣ ଯେହି
ଅନାଦି ଉପରେ ଅନାଦି । ସର୍ବ କାରଣ ପରେ ସିଦ୍ଧି
ଶ୍ରୀ ଜଗନ୍ନାଥ ମୂରତି । ଯେଉଁଥିରୁ ସର୍ବ ଉତପତ୍ତି

X X X

ପ୍ରେମହିଁ ଅଛି ଏ ମୂର୍ତ୍ତିରେ । ରସ ହିଁ ଅଛି ଯେଉଁ ଅଙ୍ଗରେ
ସାକ୍ଷାତ ପ୍ରେମ ବ୍ରହ୍ମ ଏହି । ଷୋଡ଼ଶ କଳାକୁ ବହନ୍ତି
ଏହାଙ୍କ କଳାମାନ ଯେତେ । ବିଷ୍ଣୁ ବିହରନ୍ତି ମେଦିନୀ

× × ×

ଶ୍ରୀ ଜଗନ୍ନାଥଟି ପରମ । ଏଥୁ ବାହାର କେତେ ବ୍ରହ୍ମ

× × ×

'ଏହି ଜଗନ୍ନାଥ ବାହାର । ହେଲେ ଅଶେଷ ଅବତାର
: ନାନା ପ୍ରକାରକୀର୍ତ୍ତି କଲେ । ଜଗତେ ମହାଶ୍ରେଷ୍ଠ ହେଲେ

ଅନ୍ୟତ୍ର ସେ ଏହି ଜଗନ୍ନାଥ ଚରିତାମୃତରେ ଲେଖିଛନ୍ତି—

"ଏ ରୂପେ ଯେତେ ଅବତାର
ଶ୍ରୀ ଜଗନ୍ନାଥରୁ ବାହାର
ପୃଥିବୀ ଭାର ଉଶ୍ବାସନ୍ତି
ଲେଉଟି ଶ୍ରୀ ଅଙ୍ଗେ ପଶନ୍ତି ।"

ପ୍ରେମଭକ୍ତି ବ୍ରହ୍ମ ଗୀତାରେ ଯଶୋବନ୍ତ ଦାସ ଲେଖିଛନ୍ତି—

ଦେଖ ସ୍ୱେ ନିତ୍ୟ ନୀଳାଚଳ
ସକଳ ତୀର୍ଥଙ୍କର ଆଳ

X X X

ସ୍ୱେ ସ୍ଥାନ ମୁକ୍ତି କ୍ଷେତ୍ର କହି
ପୃଥ୍ୱୀ ବୈକୁଣ୍ଠ ଏହୁ ବୋଲାଇ

ଯେବେ ପୃଥ୍ୱୀରେ ଦୁଷ୍ଟ ହୋନ୍ତି
ଦେବତା ବ୍ରାହ୍ମଣେ କଷନ୍ତି ।
ଧର୍ମ ନ ସ୍ଥାପି ଦୁଷ୍ଟ ଦେଖି
ପୃଥ୍ୱୀନପାରେ ଭାରସହି ।
ତେବେ ସକଳ ଦେବମାନେ
ଗୁହାରି କରନ୍ତି ସ୍ୱେ ସ୍ଥାନେ ।
ବ୍ରହ୍ମା ବଚନେ ହେତୁ କରି
ସେଥୁ ମୁଁ ଜାତ ଦେହଧରି ।
ସେ ଦୁଷ୍ଟଗଣ ସଂହାରଣ
ଆସଇ ନିତ୍ୟ ସ୍ଥାନେ ପୁଣ । ୨୨° (ପଞ୍ଚମ ଅଧ୍ୟାୟ)

ଈଶ୍ୱର ଦାସ ଚୈତନ୍ୟ ଭାଗବତରେ ଶ୍ରୀଜଗନ୍ନାଥଙ୍କର ଅବତାରତ୍ୱ ବର୍ଣ୍ଣନା କରି ଲେଖିଛନ୍ତି —

ଶ୍ରୀ ଜଗନ୍ନାଥ ମୂର୍ତ୍ତିପର । ବେଦାନ୍ତେ ଦୁର୍ଲ୍ଲଭ ଆବର
ଏ ଅଙ୍ଗ ଅବତାର ହୋଇ । ଅବତାର ଯସ୍ତୁ ଅଟଇ । ୯୩ ।

× × ×

ନାମତତ୍ତ୍ୱ ଯେ ଜଗନ୍ନାଥ । ଯୁଗ ପ୍ରୁରେଣ ଜନ୍ମ ଏଥ
ଅଂଶାଂଶୁ ଉଦ୍ଭବ ହୁଅଇ । ଦୁଷ୍ଟ ଦୈତ୍ୟଙ୍କୁ ନିବାରଇ । ୧୦୨ ।

( ଏକପଞ୍ଚାଶତ୍ ଅଧ୍ୟାୟ )

ଜ୍ଞାନମିଶ୍ରା ଭକ୍ତ ପରମ୍ପରାକୁ ଅନୁସରଣ କରି କବି ଧାନକୃଷ୍ଣ ରସକଲ୍ଲୋଳ କାବ୍ୟରେ ଠିକ୍ ଏହି କଥାହିଁ କହିଛନ୍ତି—

କମଳନୟନୀ କମଳା ପ୍ରାଣନାୟକ
କଳା ପଟଳରେ ଲୀଳା କରି ଅନେକ
କଲେ ଇଚ୍ଛାମନେ ହେବା କଂସ ଅନ୍ତକ
କରିବା ଉଣ୍ଣାସ ମହୀଶ୍ୱର ଯେତେକ (୧ମ ଛନ୍ଦ)

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ମଧ୍ୟ 'ବୈଦେହୀଶ ବିଳାସ'ରେ ଏହିଭଳି ଲେଖିଛନ୍ତି—

ବର୍ତ୍ତମାନଭୂତ ଭବିଷ୍ୟ ଘେନ । ବୀକ୍ଷଣେ ଅବତାଶ୍ନ ଏହି ଚହ୍ନି ।

## ନୀଳାଚଳ ବା ଶ୍ରୀକ୍ଷେତ୍ର— ନିତ୍ୟଗୋଲକ

ଶ୍ରୀ ଜଗନ୍ନାଥ ଯେଉଁ ଭଳି ଭାବରେ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଗୁରୁତ୍ୱ ଲାଭ କରିଛନ୍ତି ତାଙ୍କର ନିବାସସ୍ଥଳୀ ନୀଳାଚଳ ଧାମ ମଧ୍ୟ ସେହିଭଳି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ସ୍କନ୍ଦପୁରାଣ, ପଦ୍ମପୁରାଣ ଓ ପୁରୁଷୋତ୍ତମ ତାପିନୀ ପ୍ରଭୃତି ଗ୍ରନ୍ଥରେ ଏହି ନୀଳାଚଳ କ୍ଷେତ୍ରକୁ ବହୁ ଉଚ୍ଚସ୍ଥାନ ପ୍ରଦାନ କରି ଯାଇଥିବାର ଦେଖାଯାଇଥାଏ । ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତ ସାଧକଙ୍କ ଦୃଷ୍ଟିରେ ନୀଳାଚଳ ଧାମ ହେଉଛି ଭଗବାନ ଶ୍ରୀକୃଷ୍ଣଙ୍କର ନିତ୍ୟ ଗୋଲୋକସ୍ଥଳୀ, କେତେକ ସ୍ଥଳରେ ଏହାକୁ ମର୍ତ୍ତ୍ୟ ବୈକୁଣ୍ଠ ମଧ୍ୟ କୁହାଯାଇଛି ।

ବେଦାନ୍ତ ସାର ଗୁପ୍ତ ଗୀତା'ରେ ବଳରାମ ଦାସ ଲେଖିଛନ୍ତି—

ସେହି ନୀଳଗିରି ନିତ୍ୟସ୍ଥାନ । ତେଣୁ ଶ୍ରୀକୃଷ୍ଣ ନିଜ ଧାମ

ସେହୁ ନୀଳଗିରି ନିତ୍ୟ ଦ୍ୱାର । ଅଭିନ୍ନ ଅଭେଦ ଅଟଇ ।

ଓଡ଼ିଆ ଜ୍ଞାନ ମିଶ୍ରା ଭକ୍ତି ସାହିତ୍ୟରେ ନୀଳାଚଳର ପ୍ରଶସ୍ତି ବହୁସ୍ଥଳରେ ହୋଇଛି । ସେଥିରୁ କେତେକ ଦୃଷ୍ଟାନ୍ତ ଏଠାରେ ଦିଆଯାଉଛି—

ଯଥା—

(କ  ଦେଖ ଏ ନିତ୍ୟ ନୀଳାଚଳ । ସକଳ ତୀର୍ଥଙ୍କର ଆଳ
ଗୋପ ମଥୁରା ବୃନ୍ଦାବନ । ଦ୍ୱାରକା ଆଦି ଯେତେ ସ୍ଥାନ
ସକଳ ଏହି ସ୍ଥାନେ ପାଇ । ଆବରକାଶୀ ମଧହୋଇ
କୋଟି ତୀର୍ଥ ଏ କ୍ଷେତ୍ରରେ । ମହିମା କହିମା କହିଲେ ନସରେ । ୯୦ ।

( ପ୍ରେମଭକ୍ତି ବ୍ରହ୍ମଗୀତା — ୫ମ ଅଧ୍ୟାୟ )

ପରମ ବଇକୁଣ୍ଠ ସେହି । କ୍ଷେତ୍ରମାନଙ୍କ ରାଜା କହି
ସେହି ସେ ଗୋଲୋକ ଭୁବନ ଅର୍ଜ୍ଜୁନ ଶୁଣ ମୋ ବଚନ । ୧୮୫ ।

(ପ୍ରେ. ଭ ବ୍ର: ଗୀ ଅଧ୍ୟାୟ )

ଉତ୍କଳ ନାମଯେ ଦେଶରେ । ଆର୍ଯ୍ୟାବର୍ତ୍ତ ଅଗ୍ନି କୋଣରେ
ଦକ୍ଷିଣ ମହୋଦଧିତଟ । ସମୁଦ୍ର ଉତ୍ତରେ ପ୍ରକଟ
ନାମ ଯା ଶ୍ରୀ ପୁରୁଷୋତ୍ତମ । ସକଳ କ୍ଷେତ୍ର ତହୁଁ ଜନ୍ମ

( ଏକାଦଶ ଅଧ୍ୟାୟ )

(ମହାବେଦାତ୍ମ ଦାସଙ୍କ ଦ୍ୱାଦଶ ସ୍କନ୍ଧ ଭାଗବତ)

ପୁରୁଷୋତ୍ତମର ଗର୍ଭରୁ । ସର୍ବକ୍ଷେତ୍ର ଜାତ ତହିଁରୁ
ଅଯୋଧ୍ୟା ଦ୍ୱାରିକା ଯେ କାଶୀ । ମଥୁରା ବୃନ୍ଦାବନ ମିଶି
ଏହି କ୍ଷେତ୍ରରୁ ଜାତହୋଇ । ଶ୍ରେଷ୍ଠ ପୂଜା ଲଭିଲେ ସେହି

( ଜଗନ୍ନାଥ ଚରିତାମୃତ )

ନିତ୍ୟ ଯେ ନୀଳଗିରି ପେଣ୍ଡୁ । ନାମ ଗୁପତ ବଇକୁଣ୍ଠ

( ରସ ବିନୋଦ )

ମହା ପରମ ବଇକୁଣ୍ଠଧାମ । ଗୋଲୋକ ଅଟେ ଯାରନାମ
ସକଳ ବଇକୁଣ୍ଠ ପରେ ରାଜେ । ଯହିଁରେ ରାଧାକୃଷ୍ଣ ନିତ୍ୟବିଜେ

(ଦ୍ୱିତୀୟ ବଳରାମ ଦାସ କୃତ ବ୍ରହ୍ମାଣ୍ଡ ଭୂଗୋଳ ଚୂଡ଼ାମଣି)

କରନ୍ତି ନୀଳାଦ୍ରି ଦର୍ଶନ । ପ୍ରତ୍ୟକ୍ଷେ ବିଷ୍ଣୁର ସମାନ
କଳ୍ପ କଳ୍ପାନ୍ତେ ଯୋଗୀ କରି । ନପାନ୍ତି ଯାର ଲେଶ ଛରି ।। ୯ ।।
ପ୍ରଳୟ କାଳେ ନୁହେଁ ଅନ୍ତ । ସକଳ ସୃଷ୍ଟି ଗର୍ଭଗତ
ଉଦୟ କାଳେ ଉତପତ୍ତି । ଦେବତା ଅନ୍ନ ନ ଜାଣନ୍ତି ।। ୧୦ ।।

X X X

ବ୍ରହ୍ମା ଦ୍ୱାରେଣ ଦେବପତି । କ୍ଷଣେ ହେଁ ନ ପାରଇ ଗୁଡ଼ି

ଚୈତନ୍ୟ ଭାଗବତ ( ୭୫ ଅଧ୍ୟାୟ )

ଏମନ୍ତ ସେ ସ୍ଥାନ ନାମ ନୀଳଗିରି ଗୋଲୋକ ବୈକୁଣ୍ଠ ସେହି
ଗୁପତ ଗଙ୍ଗା ଯେ ତ୍ରିବେଣୀ ଯମୁନା ବହୁ ଅଛନ୍ତି ଯହିଁ
କାଶୀ ବିଶ୍ୱନାଥ ବସି ଥାଉଛନ୍ତି ଝର ବଚ୍ଛ ଉପରେ
ଆଦ୍ୟ ବିମଳା ଯହିଁରେ ବସିଛନ୍ତି ସିଦ୍ଧି ରସୁ ଗୁହ୍ୟକରେ ।

( ଗରୁଡ଼ଗୀତା—୨ୟ ଅଧ୍ୟାୟ )

## ଶ୍ରୀଜଗନ୍ନାଥ—ଶ୍ରୀରାଧାକୃଷ୍ଣ

ଶ୍ରୀଜଗନ୍ନାଥଙ୍କଠାରେ ରାଧାକୃଷ୍ଣଯୁଗଳରୂପ ଆରୋପ କରିବା ଉଦ୍ୟମ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ବହୁଳ ଭାବରେ ଦେଖିବାକୁ ମିଳିଥାଏ । ଖ୍ରୀଷ୍ଟୀୟ ୧୭ଶ ଶତାବ୍ଦୀ ସମୟ ମଧ୍ୟରେ ବୌଦ୍ଧଧର୍ମ, ତାନ୍ତ୍ରିକ ଧର୍ମ, ନାଥଧର୍ମ, ଶୈବ ଧର୍ମ ଓ ବୈଷ୍ଣବ ଧର୍ମ ପ୍ରଭୃତିର ପ୍ରବାହ ଶ୍ରୀକ୍ଷେତ୍ରରେ ଘଟି ଏ ସବୁର ଏକ ଅପୂର୍ବ ସମନ୍ୱୟ ଘଟି ସାରିଥିଲା । ଏ ଅପୂର୍ବ ସମନ୍ୱିତ ଧର୍ମର କେନ୍ଦ୍ର ବିନ୍ଦୁ ତଥା ଇଷ୍ଟଦେବ ଥିଲେ ଶ୍ରୀଜଗନ୍ନାଥ । ବିଭିନ୍ନ ସମୟରେ ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ଦେବ ଦେବୀ ରୂପେ କଳ୍ପନା କରାଯାଇଥିଲେ ହେଁ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରୁ ସେ ପାଞ୍ଚରାତ୍ର ଆଗମ ମତାନୁଯାୟୀ ବିଷ୍ଣୁ ବା ବାସୁଦେବ ରୂପରେ ଚର୍ଚ୍ଚିତ ହୋଇ-ଥିଲେ । ଏହା ଥିଲା ତାଙ୍କର ମୂଳରୂପ ।

ଶ୍ରୀ ରାମାନୁଜାଚାର୍ଯ୍ୟ ଶ୍ରୀଜଗନ୍ନାଥଙ୍କୁ ପାଞ୍ଚରାତ୍ର ଆଗମ ମତରେ ବାସୁଦେବ ରୂପେ ପୂଜା କରାଇବାର ବ୍ୟବସ୍ଥା ତତ୍କାଳୀନ ରାଜା ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା କରାଇଥିଲେ । ବାସୁଦେବଙ୍କର ଇଚ୍ଛା ଶକ୍ତି ବା ଭୋକ୍ତୃ ଶକ୍ତି ରୂପେ ମହାଲକ୍ଷ୍ମୀଙ୍କର ପ୍ରତିଷ୍ଠା ମଧ୍ୟ କରାଯାଇଥିଲା । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରୁ ୧୭ଶ ଶତାବ୍ଦୀ ପର୍ଯ୍ୟନ୍ତ

ସମସ୍ତ ମଧ୍ୟରେ ଶ୍ରୀଜଗନ୍ନାଥ ବାସୁଦେବ ପରିବର୍ତ୍ତେ ମାଧ୍ୱ ସମ୍ପ୍ରଦାୟ ଦ୍ୱାରା ଗୋପାଳ କୃଷ୍ଣ ରୂପେ ଉପସ୍ଥିତ ହେଲେ । ରାଜା ପୁରୁଷୋତ୍ତମ ଦେବ ଗୋପାଳ ଛନ୍ଦ ପଦ୍ଧତି ନାମକ ଗ୍ରନ୍ଥ ରଚନା କରି ଜଗନ୍ନାଥଙ୍କୁ ଗୋପାଳ ମନ୍ତ୍ରରେ ଅର୍ଚ୍ଚନା କରିବାକୁ ନିର୍ଦ୍ଦେଶ ଦେଇଥିଲେ । ବୈଷ୍ଣବଧର୍ମ ଜଗତରେ ଦ୍ୱାଦଶ ଶତାବ୍ଦୀରୁ ଅନ୍ୟ ଏକ ନୂତନ ଚିନ୍ତାଧାରାର ଅନୁପ୍ରବେଶ ମଧ୍ୟ ଘଟିଥିଲା । ତାହା ହେଉଛି ଶ୍ରୀକୃଷ୍ଣଙ୍କର ଶକ୍ତି ରୂପେ ଶ୍ରୀରାଧାଙ୍କର ପରିକଳ୍ପନା । ଦ୍ୱାଦଶ ଶତାବ୍ଦୀରେ ଆବିର୍ଭୂତ ଶ୍ରୀ ନିମ୍ବାର୍କ ପ୍ରଥମେ ଦଶଶ୍ଳୋକୀରେ ଏହାକୁ ରୂପ ଦେଇ ଲେଖିଥିଲେ—

ଅଙ୍ଗେ ତୁ ବାମେ ବୃଷ ଭାନୁଜା ମୁଦା
ବିରାଜମାନ ମନୁରୂପ ସୌଭଗମ୍
ସଖୀସହସ୍ରୈଃ ପରିସେବିତା ସଦା
ସ୍ମରେମ ଦେବୀଂ ସକଳେଷ୍ଟ କାମଦାଂ ।

ଶ୍ରୀ ନିମ୍ବାର୍କଙ୍କର କୃଷ୍ଣଶକ୍ତି ରୂପେ ଶ୍ରୀରାଧାଙ୍କର ପରିକଳ୍ପନା ଆହୁରି ବ୍ୟାପକ ତଥା ବହୁ ଚର୍ଚ୍ଚିତ ରୂପ ନେଇ ବଲ୍ଲଭ ସମ୍ପ୍ରଦାୟ, ଶ୍ରୀଚୈତନ୍ୟ ସମ୍ପ୍ରଦାୟ ଓ ରାଧାବଲ୍ଲଭୀ ସମ୍ପ୍ରଦାୟ ଦ୍ୱାରା ଉପସ୍ଥାପିତ ହୋଇଥିଲା । ଫଳତଃ ଧର୍ମ ଜଗତରେ ନବକଳ୍ପିତା ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ସହିତ ଅଚ୍ଛେଦ୍ୟ ସଂପର୍କ ନେଇ ଜନସମାଜକୁ ଅନୁରଞ୍ଜିତ କରିଥିଲେ । ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ଏହି ଅବିଚ୍ଛେଦ୍ୟ ଯୁଗଳଙ୍କ ରୂପ ପରିକଳ୍ପନା ଠିକ୍ ବୌଦ୍ଧ ଧର୍ମର ପ୍ରଜ୍ଞୋପାୟ କଳ୍ପନା ବା ଶୂନ୍ୟତା ଓ କରୁଣାର ମିଳନ ହେତୁ ଯୁଗନଦ୍ଧ ରୂପ କଳ୍ପନା ବା ଶିବଶକ୍ତିଙ୍କର ଭେଦରହିତ ଅର୍ଦ୍ଧନାରୀଶ୍ୱର ରୂପ କଳ୍ପନା ସଦୃଶ । ଶ୍ରୀରାଧାଙ୍କର ବୈଶିଷ୍ଟ୍ୟ ଓ ଶ୍ରୀକୃଷ୍ଣଙ୍କ ସହିତ ତାଙ୍କ ନିତ୍ୟ ଲୀଳା ସଂପର୍କକୁ କେନ୍ଦ୍ର କରି ପଦ୍ମପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ ସଦୃଶ ପୁରାଣମାନଙ୍କର ପୃଷ୍ଠା ସମୁଜ୍ଜଳ ହୋଇ ଉଠିଥିଲା । ଏ ଧରଣର ନବକଳ୍ପନାର ଅଭ୍ୟୁତ୍ଥାନ ପ୍ରଭାବରୁ ଶ୍ରୀ ଜଗନ୍ନାଥ ମୁକ୍ତ ହୋଇ ପାରିନଥିଲେ । ବସ୍ତୁତଃ ଶ୍ରୀଜଗନ୍ନାଥଙ୍କର ଶ୍ରୀକ୍ଷେତ୍ର, ରାଧାକୃଷ୍ଣଙ୍କର ନିତ୍ୟଲୀଳା କ୍ଷେତ୍ର ନିତ୍ୟ ଗୋଲକସ୍ଥଳୀ, ଶ୍ରୀକ୍ଷେତ୍ରର କଳ୍ପବଟ ନିତ୍ୟଗୋଲକର କଳ୍ପପାଦପ ଓ ରତ୍ନସିଂହାସନ କଳ୍ପପାଦପ ମୂଳସ୍ଥ ମଣିମଣ୍ଡପ, ବା ରତ୍ନପଲଙ୍କ, କମଳା ବିମଳାଦି ପାର୍ଶ୍ୱଦେବୀ ନିତ୍ୟସ୍ଥଳୀର ଷଡ଼ସଖୀ ରୂପେ ପରିକଳ୍ପିତ ହୋଇଥିଲେ । ସର୍ବୋପରି ଶ୍ରୀଜଗନ୍ନାଥ ରାଧାକୃଷ୍ଣଙ୍କର ମିଳିତଯୁଗଳଙ୍କ ରୂପ ପରିଗ୍ରହ କରିଥିଲେ । କେତେକ ସ୍ଥଳରେ ସୁଭଦ୍ରାଙ୍କୁ ମଧ୍ୟ ରାଧାରୂପେ ବା ରାଧାକୃଷ୍ଣଙ୍କର ସଂଯୋଗକାରିଣୀ ଯୋଗମାୟା ରୂପେ କଳ୍ପନା କରାଯାଇଥିଲା ।

ଶ୍ରୀଚୈତନ୍ୟଙ୍କର ଓଡ଼ିଶାରେ ଅବସ୍ଥାନ ବେଳକୁ ଶ୍ରୀଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ଯୁଗଳ ରୂପ ଭାବେ କଳ୍ପନା କରାଯାଇ ସାରିଥିଲା । ପ୍ରସିଦ୍ଧ ଜଗନ୍ନାଥାଷ୍ଟକରେ ଏହାର ସ୍ପଷ୍ଟ ଉଲ୍ଲେଖ ରହିଛି । ଯଥା—

ରସାନନ୍ଦୀ ରାଧା ସରସବପୁରାଲିଙ୍ଗନ ସୁଖୋ
ଜଗନ୍ନାଥ ସ୍ୱାମୀ ନୟନ ପଥ ଗାମୀ ଭବତୁ ମେ ।

ଶ୍ରୀ ଚୈତନ୍ୟ ଜଗନ୍ନାଥାଷ୍ଟକ ଶ୍ଳୋକଟିକୁ ଅତ୍ୟନ୍ତ ଭକ୍ତି ସହିତ ଗାନ କରୁଥିଲେ । ଉକ୍ତ ଶ୍ଳୋକର ପ୍ରଣେତା ରୂପେ ଶଙ୍କରାଚାର୍ଯ୍ୟ ଜଗନ୍ନ ଅପଣ୍ଡିତରାଜ ଓ ଶ୍ରୀଚୈତନ୍ୟ ଆଦିଙ୍କୁ ଚିହ୍ନିତ କରାଯାଇଥାଏ । ତେବେ ଯେ ଯାହାହେଉ ଉକ୍ତ ଜଗନ୍ନାଥାଷ୍ଟକର ରଚନା କାଳ ହେଉଛି ଖ୍ରୀଷ୍ଟୀୟ ଷୋଡ଼ଶ କିମ୍ବା ତତ୍ପୂର୍ବବର୍ତ୍ତୀ ରଚନା ।

ଶ୍ରୀଜଗନ୍ନାଥଙ୍କର ପୀଠକୁ ନିତ୍ୟଗୋଲକସ୍ଥଳୀ ରୂପ ଦେବାର ଉଦ୍ୟମ ମଧ୍ୟ ପୁରୁଷବୋଧିନୀ ସୂକ୍ତ ବା ପୁରୁଷୋତ୍ତମ ତାପିନୀରେ ଲକ୍ଷ୍ୟ କରାଯାଇଥାଏ । ଉକ୍ତ ତାପିନୀର ରଚନା କାଳ ପଞ୍ଚଦଶ ଶତାବ୍ଦୀ ବୋଲି ଅନୁମାନ କରାଯାଇଥାଏ । ଏଥିରେ କୁହାଯାଇଛି—ମହତ୍ ପଦ ଗୋକୁଳାକ୍ଷ ମଥୁରାମଣ୍ଡଳର ଅଷ୍ଟଦଳ ପଦ୍ମକେଶର ମଧ୍ୟସ୍ଥ ସପ୍ତାବରଣ ବେଷ୍ଟିତ ରତ୍ନସିଂହାସନ ହେଉଛି ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ରତ୍ନସିଂହାସନ । ଏଠାରେ ଅର୍ଥାତ୍ ଶ୍ରୀଜଗନ୍ନାଥଙ୍କ ରତ୍ନସିଂହାସନରେ ରାଧାକୃଷ୍ଣ ନିତ୍ୟ ଲୀଳା କରୁଛନ୍ତି । ଏଠାରେ ଥିବା ରାଧାଙ୍କଠାରୁ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ସମ୍ଭୂତ ହୋଇଛନ୍ତି । ଉଦାହରଣ ରୂପେ କିଛି ଅଂଶ ଏଠାରେ ଦିଆଯାଇ ପାରେ । ଯଥା—ଶ୍ରୀପୁରୁଷୋତ୍ତମାଭିଧାୟିନୀ ପୁଣ୍ୟସ୍ୟଂ ସାକ୍ଷାତ୍ ବ୍ରହ୍ମଃ, ଯତ୍ର ପରମ ସନ୍ନ୍ୟାସଃ କୃଷ୍ଣଃ ଯତ୍ର ନ୍ୟଗ୍ରୋଧ କଳ୍ପପାଦପଃ ଯତ୍ର ଲକ୍ଷ୍ମୀର୍ଜାମ୍ବବତୀ, ରାଧିକା, କମଳା, ଚନ୍ଦ୍ରାବଳୀ, ସରସ୍ୱତୀ ବିମଳା ଇତି ସାକ୍ଷାତ୍ ବ୍ରହ୍ମ ସ୍ୱରୂପା ଜଗନ୍ନାଥଃ ଅହଂ...... ।

ବଳରାମ ଦାସ ପ୍ରମୁଖ ପଞ୍ଚସଖା ଓ ତାଙ୍କର ଅନୁଗାମୀ ଅନ୍ୟ ଜ୍ଞାନମିଶ୍ରା ଭକ୍ତ ଉପାସକ ବୃନ୍ଦ ସେମାନଙ୍କ ସାହିତ୍ୟରେ ଶ୍ରୀଜଗନ୍ନାଥଙ୍କୁ ଯେପରି ଓଡ଼ିଶାର ଧର୍ମ ଓ ସାହିତ୍ୟର କେନ୍ଦ୍ରବିନ୍ଦୁ କରିବାକୁ ଚେଷ୍ଟା କରିଛନ୍ତି ସେହିପରି ନବ ଅଭ୍ୟୁତ୍ଥିତ ଧର୍ମ ଚେତନା ତଥା ଦେବ ଦେବୀ କଳ୍ପନାରେ ତାଙ୍କୁ ରୂପାୟିତ କରିଛନ୍ତି ମଧ୍ୟ । ଉଦ୍ଦେଶ୍ୟ ହେଉଛି ଧର୍ମୀୟ ଦୃଷ୍ଟିଭଙ୍ଗୀର ବିବର୍ତ୍ତନ ସହିତ ଶ୍ରୀଜଗନ୍ନାଥଙ୍କୁ ଖାପ ଖୁଆଇ କାଳେ କାଳେ ତାଙ୍କୁ ଗଣ ଦେବତାର ଆସନ ପ୍ରଦାନ କରିବା । ଏହାକୁ ସେମାନଙ୍କର ଜଗନ୍ନାଥୈକ ପ୍ରାଣତା କୁହାଯାଇପାରେ ମଧ୍ୟ । ବଳରାମ ଦାସ

ପ୍ରମୁଖ ପଞ୍ଚସଖା ଓ ତାଙ୍କ ଅନୁଗାମୀଙ୍କର ଅସଂଖ୍ୟ ରଚନା ଏପର୍ଯ୍ୟନ୍ତ ଅନାବିଷ୍କୃତ ଓ ଅନାଲୋଚିତ । ଯାହା ପୁଣି ଆବିଷ୍କୃତ ଓ ପ୍ରକାଶିତ ହୋଇଛି ତାହାର ସଂଖ୍ୟା ଏତେ ଅଧିକ ଯେ ସେ, ସବୁକୁ ସୀମିତ କଳେବର ମଧ୍ୟରେ ଆଲୋଚନା କରିବା ମଧ୍ୟ ସମ୍ଭବପର ନୁହେଁ ।

ପଞ୍ଚସଖାଙ୍କ ମଧ୍ୟରୁ ଜଗନ୍ନାଥ ଦାସଙ୍କ କୃତିରେ ବିଶେଷ ଭାବରେ ଶ୍ରୀଜଗନ୍ନାଥଙ୍କର ପ୍ରସଙ୍ଗ ଓ ବୈଶିଷ୍ଟ୍ୟ ଉପସ୍ଥାପିତ ହୋଇଥିବାର ଦେଖାଯାଇଥାଏ । ତାଙ୍କର ଷୋଳ ଚଉପଦୀ ଗ୍ରନ୍ଥ ଏପର୍ଯ୍ୟନ୍ତ ଅପ୍ରକାଶିତ । ଏଥିରେ ମୁଖ୍ୟତଃ ଶ୍ରୀଜଗନ୍ନାଥଙ୍କ ପୀଠକୁ ନିତ୍ୟଗୋଲୋକସ୍ଥଳୀ ରୂପେ ଓ ଶ୍ରୀଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ଅଭେଦ୍ୟ ଯୁଗଳ ରୂପ ଭାବେ ବର୍ଣ୍ଣନା କରାଯାଇଅଛି । କବି ଜଗନ୍ନାଥ ଦାସ ବର୍ଣ୍ଣନା କରି ଲେଖିଛନ୍ତି—

ଶ୍ରୀଜଗନ୍ନାଥ ମୂରତି ପରମବ୍ରହ୍ମ ତତ୍ତ୍ୱ ଜ୍ୟୋତି
ସ୍ୱେମନ୍ତ ପୁରବେ ରାଧାକୃଷ୍ଣ ବିଳସେ
ବେନି ପଞ୍ଚ ଆବରଣ ସ୍ୱେକ ଦୁଷ୍ୱେକ ଦ୍ୱିଗୁଣ
ଷଟ୍‌କୋଣ ପ୍ରେମ ଶଯ୍ୟାରେ ପ୍ରେମ ବିଳାସେ
ପ୍ରେମାନନ୍ଦ ଶକତି ଯେଣି ମହାନନ୍ଦ ଆସ୍ୱାଦ ସେ ସୁରସ ଯେଣି ।

କବିଙ୍କ ମତରେ ଶ୍ରୀ ଜଗନ୍ନାଥ ହେଉଛନ୍ତି ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ । ଶ୍ରୀଜଗନ୍ନାଥଙ୍କର ବଇଠିଠାରୁ ହସ୍ତ ପର୍ଯ୍ୟନ୍ତ ଶୁଭ୍ର ଅଂଶ ଶ୍ରୀରାଧା ଏବଂ ହସ୍ତଠାରୁ ଊର୍ଦ୍ଧ୍ୱ ଅଂଶ ହେଉଛନ୍ତି ଶ୍ରୀକୃଷ୍ଣ ଏହିଭଳି ଉଭୟ ଏକାନ୍ତ ଘନ—ଆଲିଙ୍ଗିତ ଅବସ୍ଥାରେ କଳ୍ପତରୁ ମୂଳରେ ଲୀଳା ରଚନା କରୁଛନ୍ତି ।

ରାଧାକୃଷ୍ଣସ୍ୱେକ ହୋଇଣ ସୁଖେ ଲୀଳା କରନ୍ତି । ୧ ।

କି ଉପମା ଦେବି ଶ୍ରୀମୁଖ ଯହିଁ ବଚନ ନାହିଁ
ସିଂହାସନ ପରେ ବସିଲ ଯୋଗମାୟା ସେଠାଇଁ । ୨ ।

ପ୍ରଭୁପାଦ ବଇଠି କଟିଯାଏ ମୁଖେ କେ କହିପାରୁ
ବେନି କୁଚଘଟେ ଲୁଚିଛି ପ୍ରେମେ ସ୍ୱେ ମହାମେରୁ । ୩ ।

ରାଧାମୁଖ ପଙ୍କଜ ରସପାନେ କୃଷ୍ଣ ମୁଖ ଲୁଚିଛି
ନାସାଶ୍ରବଣ କପୋଳାଦି କିଛି ବାରି ନୋହୁଛି । ୪ ।

ସହଜେ ଲୁଚିଛି ଶ୍ରୀଭୁଜ କୋଳାଗତ ଲମ୍ପଟେ
ଜଗନ୍ନାଥ ଦାସ ଭେଟିଛି ସନ୍ଥଜନଙ୍କ ବାଟେ । ୫ ।

ନିତ୍ୟ ମିଳାଦ୍ରି ଗ୍ରନ୍ଥ ନାମକ ଅନ୍ୟଏକ ଗ୍ରନ୍ଥରେ ଜଗନ୍ନାଥ ଦାସ ଲେଖିଛନ୍ତି —ଏହି କ୍ଷେତ୍ରବର ଶ୍ରୀକ୍ଷେତ୍ର ବ୍ରହ୍ମ ସ୍ୱରୂପ ଅଟେ । ଏହା ଅନନ୍ତ ଓ ନିର୍ଗୁଣ ଭାବରେ ବ୍ୟାପ୍ତ । ଏହା ହେଉଛି ନିତ୍ୟ ଗୋଲୋକସ୍ଥଳୀ । ଏଠାରେ ଥିବା ବାଇଶି ପାବଚ୍ଛ, ଜଗମୋହନ, କଳାଗ୍ରଏଟ, ମଣୋହି କୋଠା ପ୍ରଭୃତି ସପ୍ତ ଆବରଣ, ଏସବୁକୁ ଅତିକ୍ରମ କଲାପରେ ରତ୍ନମଣ୍ଡପ ରୂପକ ରତ୍ନ ସିଂହାସନ ପଡ଼ିବ । • ସେଠାରେ ମଧ୍ୟରେ ଶ୍ରୀକୃଷ୍ଣ ବନ୍ଦ୍ର ବ୍ରହ୍ମ ବା ଶ୍ରୀଜଗନ୍ନାଥ ରୂପରେ ରହିଛନ୍ତି । ତାଙ୍କର ଉଭୟ ପାର୍ଶ୍ୱରେ ଶ୍ରୀରାଧା ଓ ଚନ୍ଦ୍ରାବଳୀ ରହିଛନ୍ତି ଏବଂ ଶ୍ରୀକୃଷ୍ଣ ରୂପୀ ଶ୍ରୀଜଗନ୍ନାଥଙ୍କ ସହିତ ତାଙ୍କର ନିତ୍ୟ ଲୀଳା ସମ୍ପନ୍ନ ହେଉଛି । ବ୍ରଜ ଲୀଳାରେ ଯେପରି ଅଷ୍ଟକାଳ ସେବା ରହିଛି, ଏଠାରେ ସେହିପରି ଶ୍ରୀ ଜଗନ୍ନାଥଙ୍କଠାରେ ଅର୍ପିତ ଭିନ୍ନଧୂପ ଓ ପାଞ୍ଚ ଅବକାଶ ହେଉଛି ବ୍ରଜମଣ୍ଡଳର ଅଷ୍ଟକାଳ ଲୀଳା । ଶ୍ରୀ ଜଗନ୍ନାଥ ହିଁ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ମିଳିତ ରୂପ । ଏହାଙ୍କୁ ଧ୍ୟାନରେ ପ୍ରେମ ଭକ୍ତି ନିବେଦନ କରିବା ପାଇଁ ସେ ଲେଖିଛନ୍ତି । ଶ୍ରୀଜଗନ୍ନାଥଙ୍କଠାରେ ରାଧାକୃଷ୍ଣଙ୍କର ଯୁଗଳ ରୂପ ପରିକଳ୍ପନା ଜଗନ୍ନାଥ ଦାସଙ୍କ ଶିଷ୍ୟ ପରମ୍ପରାରେ ସୁରକ୍ଷିତ ହୋଇଥିଲା । ଜଗନ୍ନାଥ ଦାସଙ୍କର ଶିଷ୍ୟ ଗୋପାଳ ଦାସଙ୍କ 'ପାଦପଦ୍ମ ସୁଧାନିଧି' ନାମକ ଗ୍ରନ୍ଥରେ ଏହି ତତ୍ତ୍ୱର ଅବତାରଣା କରି ଲେଖିଛନ୍ତି—

ଶ୍ରୀଜଗନ୍ନାଥଙ୍କ ବଇଠି ଯେହୁ, ପ୍ରେମ ରୂପା ଦୃଷ୍ଟା ଅନ୍ତର ସେହୁ ।
ଶ୍ରୀଜଗନ୍ନାଥଙ୍କର ଦୁଇଭୁଜ, ରାଧିକାଙ୍କ ଅଟେ ପଦ୍ମ ପଙ୍କଜ ।
କୋଟି ଚନ୍ଦ୍ର ଚକ୍ଷୁ ଯାହାକୁ ବୋଲୁ, ରାଧିକା କେନ କୁଚ ତାହା ବୋଲୁ । ୭° ।
ରଙ୍ଗା ଅଧରେ ଯେ ରଙ୍ଗ ଦେଖାଟି, ଯୋଗମାୟା ଅଙ୍ଗ ଅଛଇ ଘୋଟି ।

କବିଙ୍କ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି ଅଣାକାର, ଯୋଗମାୟାଙ୍କ ସ୍ପର୍ଶ ହେଉଥିବୁ ସେ ଆକାର ଧାରଣ କଲାପରି ଦେଖାଯାଉଛନ୍ତି । ରାଧାଙ୍କ ପ୍ରକୃତି କାରଣ ହେଉଛି ଯୋଗମାୟାଙ୍କର ଦେହ ।

ରାଧିକା ପ୍ରକୃତି କରଣ ଯୋଗମାୟାଙ୍କ ଦେହ
ଡ଼ଙ୍କ ସ୍ୱବର୍ଣ୍ଣ ଝଲୁଛୁ ମଧ୍ୟେ ଯଶୋଦା ପୁଅ ।

ଜଗନ୍ନାଥ ଦାସଙ୍କର ଶିଷ୍ୟ ପରମ୍ପରାରେ ଆବିର୍ଭୂତ କବି ଦିବାକର ଦାସ ଉପରୋକ୍ତ ରାଧାକୃଷ୍ଣ ପରିକଳ୍ପନାର ଆରୋପ ଶ୍ରୀ ଜଗନ୍ନାଥଙ୍କଠାରେ ସୁନ୍ଦର ଭାବରେ କରିଛନ୍ତି । ତାଙ୍କ ମତରେ ଶ୍ରୀରାଧା କୃଷ୍ଣଙ୍କର ନିତ୍ୟଲୀଳାପୀଠ ଶ୍ରୀ ବୃନ୍ଦାବନ ନୁହେଁ । ଏଇ ଶ୍ରୀକ୍ଷେତ୍ର ହେଉଛି ନିତ୍ୟ ଗୋଲକ ସ୍ଥଳ ଏବଂ ମୂଳ ଲୀଳାପୀଠ । ତେଣୁ ସେ ଲେଖିଛନ୍ତି—

ବଡ଼ଦେଉଳ ଯେ ବୋଲଇ
ସହସ୍ର ଦଳ ପଦ୍ମ ସେହି ।

ଅବଲୀଳା କ୍ରମେ କବି ମନ୍ଦିର ବେଢ଼ାକୁ ସହସ୍ରଦଳ କମଳର, ଶତଦଳ, ସପ୍ତାବରଣ ଜଗମୋହନକୁ ଷୋଳଦଳ, କଳାହାଟକୁ ବତିଶ ଦଳ ଓ ମଧ୍ୟ ବେଢ଼ାକୁ ଚଉଷଠୀ ଦଳ କହିଛନ୍ତି । ଶ୍ରୀଜଗନ୍ନାଥଙ୍କ ରତ୍ନସିଂହାସନକୁ ସହସ୍ରଦଳ ଚକ୍ରରେ ଥିବା ଷଟ୍‌କୋଣ କୁହାଯାଇଛି । ନୀଳାଚଳର ଶିଖ ହେଉଛି କୁଞ୍ଜବନ । ବଳଦେବ ହେଉଛନ୍ତି ଯୋଗମାୟା, ଏଠାରେ ପରଂବ୍ରହ୍ମ ଜଗନ୍ନାଥଙ୍କ ଭିତରେ ରାଧାଙ୍କ ସହିତ ଶ୍ରୀକୃଷ୍ଣ ନିତ୍ୟ ଲୀଳା କରୁଛନ୍ତି ।

କୋଟିଏ ଯୁଗ ଯେବେ ଯାଇ, ଏ କ୍ରୀଡ଼ା କେବେ ଭଙ୍ଗ ନୋହି
ରାଧାକୃଷ୍ଣ ଏକ ଶରୀରେ, ଅଛନ୍ତି ସୁପ୍ରେମ ଭାବରେ

ରାଧାକୃଷ୍ଣଙ୍କର ନିବିଡ଼ ଆଲିଙ୍ଗନକୁ ଶ୍ରୀଜଗନ୍ନାଥଙ୍କ ବିଗ୍ରହଠାରେ କିପରି ଅନୁଭବ କରାଯିବ ତାହାର ବିବରଣୀ ଦେବାକୁ ଯାଇ ସେ ଲେଖିଛନ୍ତି—

ଶ୍ରୀକୃଷ୍ଣ ମୁଖ ପଶ୍ଚିମକୁ, ରାଧାଙ୍କ ମୁଖ ଯେ ପୂର୍ବକୁ
ଭାବେ ଅତି ଲଗ୍ନ ହୋଇ, ନୀଳକନ୍ଦରେ ଛନ୍ତି ରହି । ୧୫୭ ।
ରତି ଲାବଣ୍ୟ ଭାବରେଣ, କୃଷ୍ଣଚନ୍ଦ୍ର ବଶ ହୋଇଣ । ୧୫୮ ।
ବଇଠି ପ୍ରାପ୍ତେ ସେ ଝଶଭ, ଶ୍ରୀକୃଷ୍ଣ ପାଦ ବେନି ସେହି । ୧୫୯ ।

ଜଗନ୍ନାଥ ଦାସଙ୍କ ଶିଷ୍ୟ ହରିଦାସଙ୍କ 'ନିତ୍ୟ ନୀଳାଦ୍ରି ବିଳାସ' ଗ୍ରନ୍ଥରେ ମଧ୍ୟ ଠିକ୍ ସେହି ଭଳି ବର୍ଣ୍ଣନା ପରିଲକ୍ଷିତ ହୋଇଥାଏ । ଉକ୍ତ ଗ୍ରନ୍ଥର ବର୍ଣ୍ଣନାନୁଯାୟୀ ନୀଳାଚଳ ଧାମ ହେଉଛି ବାସ୍ତବ ନିତ୍ୟଗୋଲକ ସ୍ଥଳୀ । ମନ୍ଦିରର ବିଭିନ୍ନ ଅଂଶକୁ କବି ପାରମାର୍ଥିକ ଦୃଷ୍ଟିରେ ଗୋକୁଳାକ୍ଷ ମହତ୍ ପଦରେ ଥିବା ସହସ୍ର ଦଳ କମଳର ବିଭିନ୍ନଦଳ ରୂପେ ବର୍ଣ୍ଣନା କରିଛନ୍ତି । ଏହି ସହସ୍ରଦଳ, କମଳର ମଧ୍ୟଭାଗ ହେଉଛି ବେଢ଼ାର ମଧ୍ୟଭାଗ । ଏଦ୍ୱାର ରକ୍ଷାକର୍ତ୍ତ୍ରୀ ହେଉଛନ୍ତି ତ୍ରିପୁରା । ଭୋଗ ମଣ୍ଡପ ହେଉଛି ବତିଶଦଳ ଏବଂ ଚନ୍ଦ୍ରାବଳୀ ଏଦ୍ୱାର ଦ୍ୱାରୀ । କଳାହାଟ ହେଉଛି ୧୬ ଦଳ । ଏଠାରେ ରକ୍ଷାକର୍ତ୍ତ୍ରୀ ହେଉଛନ୍ତି ବିମଳା । ତାହାପରେ ଥିବା ମଣୋହି କୋଠା ହେଉଛି ଅଷ୍ଟଦଳ ଏବଂ ଏଠାରେ ପ୍ରେମରୂପାଙ୍କର ଅବସ୍ଥାନ ରହିଛି । ମଣୋହି କୋଠାର ପରବର୍ତ୍ତୀ ଅର୍ଗଳ ଦ୍ୱାରକୁ କବି ଷଡ଼ଦଳ ରୂପେ ବର୍ଣ୍ଣନା କରି ସେଠାରେ ଦ୍ୱାରୀରୂପେ ବୃନ୍ଦାବତୀଙ୍କର ନାମୋଲ୍ଲେଖ

କରିଛନ୍ତି । ତାହାପରେ ବଳଦେବଙ୍କୁ ମିଶାଇ ଗୋଲୋକର ସପ୍ତାବରଣ ଶ୍ରୀମନ୍ଦିର ଅଛି ବୋଲି କବି ଲେଖିଛନ୍ତି । ଷଡ଼ଦଳ ପରେ ତ୍ରିକୋଣରେ ଭଦ୍ରା ବା ସୁଭଦ୍ରା ଶ୍ୟାମା ରୂପରେ ଅବସ୍ଥାନ କରୁଛନ୍ତି । ରତ୍ନସିଂହାସନ ହେଉଛି ନିତ୍ୟଗୋଲକର ରତ୍ନମଣ୍ଡପ । ଏଠାରେ ରାଧା ଓ ଚନ୍ଦ୍ରାବଳୀଙ୍କ ମଧ୍ୟରେ ବନ୍ଧ୍ରୁ ବ୍ରହ୍ମରୂପୀ ଶ୍ରୀଜଗନ୍ନାଥ ରହିଛନ୍ତି । ସେ ହେଉଛନ୍ତି କାମବୀଜ ବା କ୍ଲୀଂ । ତାଙ୍କ ଭିତରେ ରାଧାକୃଷ୍ଣ ନିବିଡ଼ ଆଲିଙ୍ଗନରତ ଅବସ୍ଥାରେ ରହିଛନ୍ତି । ପାରମ୍ପରିକ ରୀତିରେ ଜଗନ୍ନାଥଙ୍କର ଧିନ ଧୂପ ଓ ପାଞ୍ଚ ଅବକାଶକୁ କବି ରାଧାକୃଷ୍ଣଙ୍କର ଅଷ୍ଟକାଳଲୀଳା ଆଖ୍ୟା ଦେଇଛନ୍ତି ।

ଜଗନ୍ନାଥ ଦାସ ଓ ତାଙ୍କର ଶିଷ୍ୟ ପ୍ରଶିଷ୍ୟଙ୍କ ସାହିତ୍ୟ ବ୍ୟତୀତ ପଞ୍ଚ-ସଖାନ୍ତର୍ଗତ ଅନ୍ୟାନ୍ୟମାନଙ୍କ ରଚନାରେ ମଧ୍ୟ ପୂର୍ବୋକ୍ତ ଦୃଷ୍ଟିଭଙ୍ଗୀ ପରିଲକ୍ଷିତ ହୋଇଥାଏ । ବୟୋଜ୍ୟେଷ୍ଠ ବଳରାମଦାସଙ୍କ ବେଦାନ୍ତସାର ଗୁପ୍ତ ଗୀତାର ଏକାଦଶ ଅଧ୍ୟାୟରେ ଉଲ୍ଲେଖ ଅଛି - ଶ୍ରୀ କ୍ଷେତ୍ର ହେଉଛି ନିତ୍ୟ ବୃନ୍ଦାବନ, ବଳଦେବ ହେଉଛନ୍ତି ଅନନ୍ତ ବା ଶେଷ ଦେବ । ସୁଭଦ୍ରା ହେଉଛନ୍ତି ପ୍ରେମରୂପା ଏବଂ ସ୍ୱୟଂ ଶ୍ରୀ ଜଗନ୍ନାଥ ହେଉଛନ୍ତି ରାଧାକୃଷ୍ଣଙ୍କର ମିଳିତରୂପ ।

"ଯା ବୋଲେ ଜଗତ ସୋଦର, ସେ ରାଧାକୃଷ୍ଣ କଳେବର,
ଅଭିନ୍ନ ଅଙ୍ଗ ସେ ଅଟଇ, ଶ୍ରୀ ରାଧାକୃଷ୍ଣ ରୂପ ଦୁଇ"

ଶ୍ରୀ ଜଗନ୍ନାଥଙ୍କ ମୂର୍ତ୍ତିର ଶୁଭ୍ରରଙ୍ଗ ଶ୍ରୀ ରାଧା ଓ କୃଷ୍ଣରଙ୍ଗ ହେଉଛନ୍ତି ଶ୍ରୀକୃଷ୍ଣ ଏବଂ ନୀଳାଦ୍ରି ହେଉଛି ନିତ୍ୟରାସ ସ୍ଥଳ । ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ବେଢ଼ାରେ ଥିବା ବିଭିନ୍ନ ଦେବୀଙ୍କୁ ସେ ନିତ୍ୟ ଗୋଲୋକ ସ୍ଥଳୀର ଷଡ଼ସଖୀ ରୂପେ ଚିହ୍ନିତ କରିଛନ୍ତି । ପୁନଶ୍ଚ ତାଙ୍କ ମତରେ ଗୁଣ୍ଡିଚା ମନ୍ଦିର ହେଉଛି ଗୋପପୁର ବା ବାରହ ବୃନ୍ଦାବନ । ଏଠାରେ ଶ୍ରୀକୃଷ୍ଣ ଗୁପ୍ତରାସକେଳି କରନ୍ତି ।

ବଳରାମ ଦାସଙ୍କ ତୁଲ୍ୟ ଅଚ୍ୟୁତାନନ୍ଦ ମଧ୍ୟ ଶ୍ରୀ ଜଗନ୍ନାଥଙ୍କ ବିଶାଳ ତନୁ ମଧ୍ୟରେ ରାଧାକୃଷ୍ଣଙ୍କର ସନ୍ଧାନ ନେଇଛନ୍ତି । ତାଙ୍କଦ୍ୱାରା ରଚିତ ପରମ ରାହାସ ଗ୍ରନ୍ଥରେ ଉଲ୍ଲେଖ ଅଛି—

ଶ୍ରୀ ପୁରୁଷୋତ୍ତମ ଦେହରେ ଦେଖ
ଶଙ୍ଖନାଭି ମଧ୍ୟେ ରୂପ ଅନେକ
ଅନନ୍ତ ଉପରେ ବଇଠା ଦେଖ,
ବଇଠା ଉପରେ ରୂପ ନିରେଖ,

ରାଧାକୃଷ୍ଣର ଭାବ ସ୍ୱେଚ୍ଛ ସ୍ଥଳେ
ଅଚ୍ୟୁତ କହଇ ରଖ ମନରେ ।

ଅଚ୍ୟୁତାନନ୍ଦଙ୍କ ଶିଷ୍ୟ ପରମ୍ପରାରେ ଏହି ଚନ୍ଦ୍ରାଧାରର ପ୍ରତିଧ୍ୱନି ମଧ୍ୟ ଶୁଣିବାକୁ ମିଳିଥାଏ । କବି ରାଧିକାଦାସ "ମନୁଥ'ଚନ୍ଦ୍ରିକା ଟୀକା ଜ୍ଞାନ ଲହରୀ" ଗ୍ରନ୍ଥରେ ଶ୍ରୀ ଜଗନ୍ନାଥଙ୍କର ଯୁଗଳ ଭାବକୁ ରୂପଦେଇ ଲେଖିଛନ୍ତି—

ରତ୍ନ ସିଂହାସନ ପରେ କିଶୋର କିଶୋରୀ
ଚିତ୍ରମା ଚମ୍ପି ହୁଅନ୍ତେ ଦୁଇ ପ୍ରେମ ଝରି
ଗୁପ୍ତଯୁଗେ ରାଧାକୃଷ୍ଣ ମୂରତି ବହିରେ ।
ରାଧାକୃଷ୍ଣ ବିଜେଛନ୍ତି ଅନନ୍ତ ଯୁଗରେ,
ଚଉଷଠୀ ଗୋପୀ ସେବନ କରନ୍ତି ସାହାସ
ଗୋପୀମାନେ ହୋଇ ନାନା ସୁବେଶ ସେ ବେଶ ।

ପଞ୍ଚସଖା ଗୋଷ୍ଠୀର ଅନ୍ୟତମ କବି ଯଶୋବନ୍ତ ଦାସ ପ୍ରେମଭକ୍ତି ବ୍ରହ୍ମଗୀତା' ଗ୍ରନ୍ଥର ପଞ୍ଚମ ଅଧ୍ୟାୟରେ ଶ୍ରୀକ୍ଷେତ୍ରକୁ ନିତ୍ୟ ଗୋଲୋକ-ସ୍ଥଳୀ ରୂପେ ଆଖ୍ୟାୟିତ କରିଛନ୍ତି । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ନିତ୍ୟ ଗୋଲୋକସ୍ଥଳୀ ଦେଖାଇବାକୁ ଯାଇ ଶ୍ରୀକ୍ଷେତ୍ରକୁ ହିଁ ନିତ୍ୟ ଗୋଲୋକସ୍ଥଳୀ ରୂପେ ଦେଖାଇଛନ୍ତି ବୋଲି ଏଥିରେ ବର୍ଣ୍ଣିତ ହୋଇଅଛି । ଉକ୍ତ ଗ୍ରନ୍ଥର ବର୍ଣ୍ଣନାନୁଯାୟୀ ଶ୍ରୀଜଗନ୍ନାଥ ମନ୍ଦିରର କଳପାଟଛରୁ ନିତ୍ୟସ୍ଥଳୀ ଆରମ୍ଭ ହୋଇଛି । ବୃନ୍ଦାବତୀ ସେଠାରେ ଦ୍ୱାରୀ ରୂପରେ ଅଛନ୍ତି । ମଣୋହି କୋଠା ହେଉଛି ତ୍ରିପୁରାଙ୍କ ସ୍ଥାନ । ବଳଭଦ୍ର ଶ୍ରୀ' ବୀଜ ବା ଶ୍ରୀରାଧା ଅଟନ୍ତି ।

ସୁଭଦ୍ରା ଅଙ୍ଗ ରାଧାପ୍ରଣି
ନିତ୍ୟରେ ନିଜ ରୂପେ ବଖାଣି

ଅନ୍ୟତ୍ର ସେ ଶ୍ରୀମନ୍ଦିରର ଦଧିନଉତିକୁ ପ୍ରେମ ପଲଙ୍କ କଳସକୁ ଶ୍ରୀରାଧା ଓ ନୀଳଚକ୍ରକୁ ଶ୍ରୀକୃଷ୍ଣ ରୂପେ ବର୍ଣ୍ଣନା କରିଛନ୍ତି ।

ପଞ୍ଚସଖାନ୍ତର୍ଗତ ଶିଶୁ ଅନନ୍ତ ଦାସଙ୍କ ରଚନାରେ ନୀଳାଦ୍ରିକୁ ନିତ୍ୟ ଗୋଲୋକର ଆଖ୍ୟା ଦିଆଗଲେ ହେଁ ଦୃଷ୍ଟି—ଭଙ୍ଗୀରେ ସାମାନ୍ୟ ପାର୍ଥକ୍ୟ ପରି-ଲକ୍ଷିତ ହୋଇଥାଏ । 'କଳ୍କୀ ଭାଗବତରେ' ସେ ଲେଖିଛନ୍ତି--ଅନନ୍ତ ସର୍ପର୍ ଚତୁର୍ଥଫଣା ଉପରେ ନୀଳଗିରି ଅବସ୍ଥାନ କରିଛି । ଏହା ଉପରେ ପଦ୍ମଫୁଲ

ଫୁଟିଛି ଏବଂ ତାହା ଉପରେ ଏକ ଶଂଖ ଅଛି । ଏହାମଧ୍ୟରେ ଏକ ପଦ୍ମଫୁଲର କେଶରରେ ଶ୍ରୀଜଗନ୍ନାଥ କିଶୋରୀ ରାଧାଙ୍କ ସହିତ ନିତ୍ୟ ରାସରେ ମଗ୍ନ ହୋଇ ରହିଛନ୍ତି ।

ବଳରାମ ଦାସ ଆଦି ପଞ୍ଚସଖାଙ୍କ ବ୍ୟତୀତ ଅନ୍ୟ ଜ୍ଞାନମିଶ୍ରା ଭକ୍ତି ଉପାସକ ବୈଷ୍ଣବ କବି ଶ୍ରୀକ୍ଷେତ୍ରକୁ ନିତ୍ୟ ଗୋଲକ ରୂପେ ଘୋଷଣା କରିଯାଇଛନ୍ତି । ଦ୍ୱାରିକା ଦାସଙ୍କର ଶିବ ପୁରାଣରୁ ଏ ଧରଣର ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଏଥିରେ ଉଲ୍ଲେଖ ଅଛି—

ଦେଉଳ ସିଂହଦ୍ୱାରେ ପୂର୍ବକୁ ଯେଉଁ ବାଟ
ଗୋବର୍ଦ୍ଧନ ଗିରି ସେ ଦେଉଳ ଗୁମୁଟ ।
ବୃନ୍ଦାବନ ସେଇ-ଠାଇଁ ନନ୍ଦର ନଗର
ବାଇଶି ପାବଚ୍ଛୁ ସେଇଟି ମୁକତି ହାଟଘର
ଗୋପପୁର ପାଟଣା ସେ ଦୁଇପନ୍ତି ହୋଇ
ଗୋପୀମାନେ ବସନ୍ତି ତହିଁ ପସରାମାନ ଦେଇ
ପୂର୍ବପୀଠ ସେହି ତହିଁ ରାଧାକୃଷ୍ଣ ସ୍ୱେ ଅଛନ୍ତି
ସେହି ତାଙ୍କୁ ଭଜ ସେହିଟି ବୃନ୍ଦାବନ-ପତି
ସେହି କୃଷ୍ଣଟି ନୁହନ୍ତିଟି ଅବତାର
ଯେତେ ଅବତାର ଶ୍ରେଣୀ ତାଙ୍କ ଅଙ୍ଗରୁ ବାହାର
ଦୁଷ୍ଟ ସଂହାରଣ ବସ୍ତ୍ରମନ୍ତି ତହିଁ ଯାଇଁ
ପୂର୍ଣ୍ଣବ୍ରହ୍ମଙ୍କୁ ଭଜନ୍ତି ସେ ରାଧାକୃଷ୍ଣ ଦୁଇ ।

ଅନୁରୂପ ଭାବରେ କବି ଈଶ୍ୱର ଦାସ 'ଚୈତନ୍ୟ ଭାଗବତ'ରେ ମଧ୍ୟ ଲେଖିଛନ୍ତି—

ଶୁଣି କହନ୍ତି ବଂଶୀଧର । ସପ୍ତଦ୍ୱୀପ ପରେ ବଇର ।
ପଦ୍ମ କେଶର ଶୋଭା ପାଇ । ତଡ଼ିତ ଜ୍ୟୋତି ପ୍ରକାଶଇ ।
ରେଖ ରୂପରେ ସେ କେଶର । ମହାନିତ୍ୟରେ ସେ ବିହାର ।
ତପୂରେ ରାଧା ଠାକୁରାଣୀ । ମହାନିତ୍ୟର ଶିରୋମଣି ।
ନୀଳାଦ୍ରି ଦେବ ଘେନି ସଙ୍ଗ । ବିହାର କୋଟି କୋଟି ଯୁଗ ।

ଶ୍ରୀକ୍ଷେତ୍ରକୁ ନିତ୍ୟ ଗୋଲୋକସ୍ଥଳୀର ଆଖ୍ୟା ଦେବାରେ କବି ଦୀନକୃଷ୍ଣ ଦାସ ଏକ ନୂତନ ଦୃଷ୍ଟିଭଙ୍ଗୀ ପୋଷଣ କରିଥିବାର ଦେଖାଯାଇଥାଏ । ସେ

'ରସବିନୋଦ' ଗ୍ରନ୍ଥରେ ନିତ୍ୟ ଗୋଲୋକ ସ୍ଥଳୀକୁ ଶ୍ରୀକ୍ଷେତ୍ର ରୂପେ ଚିହ୍ନିତ କରି ଏହାର ପରିସୀମାକୁ ଯାଜପୁରଠାରୁ ଆରମ୍ଭ କରିଛନ୍ତି । ଏଠାରେ ସ୍ମରଣ କରି-ଯାଇପାରେ ଯାଜପୁରଠାରୁ ଶ୍ରୀକ୍ଷେତ୍ର ପର୍ଯ୍ୟନ୍ତ ଅଞ୍ଚଳ ମଧ୍ୟରେ ପୂର୍ବ କାଳରେ ତନ୍ତ୍ର ଉପାସନା ପ୍ରବଳ ଥିଲା ଏବଂ ବୌଦ୍ଧଧର୍ମ ତଥା ବ୍ରାହ୍ମଣ୍ୟ ଧର୍ମର ପ୍ରସାର ମଧ୍ୟ ଏହି ସ୍ଥାନରେ ସର୍ବାଧିକ ଥିଲା । କବି ନିତ୍ୟ ଗୋଲୋକର ଆୟତନ ଦେବାକୁ ଯାଇ ଯାଜପୁରରୁ ଏହାର ଆରମ୍ଭ କରିବା ସଙ୍ଗେ ସଙ୍ଗେ ଯାଜପୁରକୁ ହରଷ ବୃନ୍ଦାବନ ଆଖ୍ୟା ଦେଇଛନ୍ତି । ଏହା ହେଉଛି ଶେଷଦେବଙ୍କର ନାଭି ମଣ୍ଡଳ ଏବଂ ଏହାର ଅଧିଷ୍ଠାତ୍ରୀ ହେଉଛନ୍ତି ବିରଜା ଦେବୀ । ଭୁବନେଶ୍ୱରକୁ କବି ରହସ୍ୟ ବୃନ୍ଦାବନ ରୂପେ ଚିହ୍ନିତ କରି ଭୁବନେଶ୍ୱରୀଙ୍କୁ ଆଦିଶକ୍ତି ତଥା ଅଧିଷ୍ଠାତ୍ରୀ ଆଖ୍ୟା ପ୍ରଦାନ କରିଛନ୍ତି । ସେହିପରି କବି ଖଣ୍ଡଗିରିକୁ ବୃନ୍ଦାବନର ଦ୍ୱିତୀୟ ଆବରଣ ଓ ସୁଫଳ ବୃନ୍ଦାବନ କହିଛନ୍ତି । କବିଙ୍କ ମତରେ ବୃନ୍ଦାବନର ତୃତୀୟ ଆବରଣ ହେଉଛି ତୁଳସୀ କ୍ଷେତ୍ର ଏବଂ ଏଠାରେ କଳ୍ପବୃକ୍ଷ ବଳଦେବ ଓ ଦ୍ୱାଦଶ ଗୋପୀ ରହିଛନ୍ତି । ଶ୍ୱେତ-ଚନ୍ଦନଘାଟ (ସମ୍ଭବତଃ ଚନ୍ଦନପୁର)କୁ କବି କାଳିନ୍ଦୀତୀର ରୂପେ ବର୍ଣ୍ଣନା କରିଛନ୍ତି । ନୀଳାଚଳ ରୂପୀ ନିତ୍ୟ ସ୍ଥଳରେ ପ୍ରବେଶ କରିବା ନିମିତ୍ତ ପ୍ରାର୍ଥନା କରିବାକୁ ହୁଏ । ସଂସ୍କୃତ ପଦ୍ମପୁରାଣରେ ଅଛି—ଅର୍ଜୁନ ନିତ୍ୟ ଗୋଲୋକରେ ପ୍ରବେଶ କରିବା ପୂର୍ବରୁ କୁଳକୁଣ୍ଡରେ ସ୍ନାନ କରି ଗୋଲୋକ ମଧ୍ୟକୁ ପ୍ରବେଶ କରିବା ପାଇଁ ତ୍ରିପୁରାଙ୍କୁ ପ୍ରାର୍ଥନା କରିଥିଲେ । ସମ୍ଭବତଃ ଏହି ପ୍ରସଙ୍ଗକୁ ସ୍ମରଣ କରି କବି ଉପରୋକ୍ତ କଥା କହିଛନ୍ତି । 'ରସବିନୋଦ' ଗ୍ରନ୍ଥର ବର୍ଣ୍ଣନାନୁଯାୟୀ ପ୍ରକୃତ ଗୋଲୋକସ୍ଥଳୀ ହେଉଛି ଶ୍ରୀମନ୍ଦିର । ମଣୋହି କୋଠା ହେଉଛି ସପ୍ତାବରଣ । କଳାହାଟ ହେଉଛି ପ୍ରେମ କାଳିନ୍ଦୀ । ରତ୍ନ ସିଂହାସନର ଚତୁପାର୍ଶ୍ୱ ଚୁତ କାଳିନ୍ଦୀ ଓ ବେଢ଼ା ମଧ୍ୟସ୍ଥ କଳ୍ପବଟ ହେଉଛି କଦମ୍ବ ବୃକ୍ଷ । କଳାହାଟଠାରୁ ଗ୍ରୁମ୍ବ ଅର୍ଗଳି ସ୍ଥାନ ମଧ୍ୟରେ ଭଦ୍ରା, ଉବ୍ୟା, ମେଧା, ବିଶାଖା, ଶରଧା ଓ ସୁମେଧାଦି ଷଡ଼ସଖୀ ରହି ସେବା କରୁଛନ୍ତି । ଜଗମୋହନ ରୂପକ ଅଷ୍ଟଦଳରେ ଲଳିତା, ଶ୍ୟାମଳା, ଶ୍ରୀମତୀ, ଧନ୍ୟା, ହରିପ୍ରିୟା, ବିଶାଖା, ଶଶୀରେଖା ଓ ପଦ୍ମା ଆଦି ଅଷ୍ଟସଖୀ ସେବାରେ ନିଯୁକ୍ତ ଅଛନ୍ତି । ଗୁଣ୍ଡିଚା ଘର ହେଉଛି ବିରହ ବୃନ୍ଦାବନ ।

ଶ୍ରୀଜଗନ୍ନାଥଙ୍କ ବିପୁଳ ତନୁହିଁ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ଘନ ଆଲିଙ୍ଗିତ ରୂପ । ଏ ସମ୍ବନ୍ଧୀୟ କବିଙ୍କର ବର୍ଣ୍ଣନା ବେଶ୍ ଉପଭୋଗ୍ୟ । ଯଥା—

ଏବେ କପଟ ଦାରୁ ରୂପେ, ନିତ୍ୟରେ ବିନେ ନିଜ ରୂପେ ।
ପ୍ରାଣପ୍ରିୟାକୁ ସଙ୍ଗେ ଘେନି, ଯୁଗଳ ହୋଇଛନ୍ତି ବେନି ।
ଏକ ଅଙ୍ଗରେ ପ୍ରୀତି ବଶେ, ଦୁଇ ଅଙ୍ଗରେ ନାହିଁ ଲେଶେ ।

×　　　　×　　　　×

ମଣି ମଣ୍ଡପ ବେଦୀପରେ, ଯୁଗଳ ପ୍ରେମ ସୁଖ ଭରେ ।
ପ୍ରଭୁଙ୍କୁ କୋଳାଗ୍ରତ କରି, ଭଡ଼ିଣ ବେନି ଭୁଜେ ଧରି ।
ଚରଣେ ଚରଣ ଯୁଗଳ, ଜାନୁରେ ଛନ୍ଦ ଜାନୁମୂଳ ।
କଟିକି କଟି ପ୍ରୀତି ଭାବେ, ନାଭି ଉଦର ଏକ ଠାବେ ।
ହୃଦକୁ ହୃଦ ପଦ୍ମ ଭିଡ଼ା, ମଧ୍ୟରେ ଟଳେ ନାହିଁ ଛଡ଼ା
ଭୁଜରେ ଭୁଜ ଭିଡ଼ାଭିଡ଼ି, କଣ୍ଠରେ କଣ୍ଠ ଅଛୁ ଜଡ଼ି ।
ଅଧରେ ଲଗାଇ ଅଧର, ନାସାରେ ଦେଇ ନାସାଦ୍ୱାର ।
କର୍ଣ୍ଣକୁ କର୍ଣ୍ଣ ଲାଗି ରହି, ମୁଖରେ ମୁଖ ପଦ୍ମ ଦେଇ ।
ଲୋଚନେ ଲୋଚନକୁ ବନ୍ଧେ, ବେନି ଭାଲରେ ବେନି ଛନ୍ଦେ ।
ଅଲକା-ବଳୀ ତଥି ପରେ, ଯୁଗଳ ଭାବେ ଏକଠାରେ ।

(୪ର୍ଥ ଅଧ୍ୟାୟ)

ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତି ସାଧକ କବିମାନଙ୍କର ଦୃଢ଼ମତ ହେଉଛି ଶ୍ରୀଜଗନ୍ନାଥପୀଠ ହେଉଛି ମର୍ତ୍ତ୍ୟ ଗୋଲୋକ । ଏଠାରେ ଶ୍ରୀଜଗନ୍ନାଥ ଅବତାରୀ ପୁରୁଷ ଓ ପ୍ରକୃତି ରୂପିଣୀ ରାଧାଙ୍କ ସହିତ ଅଙ୍ଗାଙ୍ଗୀ-ଯୁଗଳ ଭାବରେ ଲୀଳାରତ । ଏଥିରେ ପରକୀୟା ପ୍ରେମଗନ୍ଧ ବା ନଗ୍ନ ରତିବନ୍ଧ ଜନିତ ଶ୍ରମସ୍ୱେଦ, ହୁଂକୃତସ୍ୱନ ତା ଅନାବୃତ ଦେହର ବିଭତ୍ସ ରୂପ ନାହିଁ । ଅଛି ପ୍ରକୃତି ପୁରୁଷର ଚିରନ୍ତନ ପବିତ୍ର ମିଳନ ମାଧୁରୀ । ଓଡ଼ିଶାର ଯୋଗ ପିଣ୍ଡିତ, ଧାର୍ମିକ ସଂଯମ ସମୁଜ୍ଜ୍ୱଳ ମାଟିରେ ଏହି କଳ୍ପନା ଛଡ଼ା ଅନ୍ୟ କିଛି କରାଯାଇ ନପାରେ । ଏହାହିଁ ହେଉଛି ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ ତଥା ଓଡ଼ିଶା ମାଟିର ରାଧାକୃଷ୍ଣ ପ୍ରେମଲୀଳା ବର୍ଣ୍ଣନାରେ ଥିବା ମୌଳିକତା ।

## (ଗ) ରାଧାକୃଷ୍ଣ ତତ୍ତ୍ୱ

ଓଡ଼ିଆ ଜ୍ଞାନମିଶ୍ରାଭକ୍ତି-ସାଧକମାନେ ଯଦିଓ ସାଧନା କ୍ଷେତ୍ରରେ ଶୁଦ୍ଧାମାର୍ଗୀ ସାଧକମାନଙ୍କ ଠାରୁ ଭିନ୍ନ ଥିଲେ, ତଥାପି ସେମାନେ ରାଧାକୃଷ୍ଣଙ୍କୁ ଲୁପ୍ତକଳ୍ପନା ପରିସର ମଧ୍ୟରେ ଉଚ୍ଚସ୍ଥାନ ଦେଇଅଛନ୍ତି । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଶ୍ରୀନିମ୍ବାର୍କ, ବିଲ୍ୱମଙ୍ଗଳ ଓ ଜୟଦେବ ରାଧାଙ୍କୁ ଯେଉଁ ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଅର୍ପଣ କରିଥିଲେ, ତାହା ରାଧାକୃଷ୍ଣ ଉପାସନାରେ ଏକ ନୂତନ ସ୍ପନ୍ଦନ ଆଣିଥିଲା । ଶ୍ରୀଜଗନ୍ନାଥ-ପୀଠରେ ଏହି ମତବାଦର ପ୍ରଚାର ଓ ଶ୍ରୀମନ୍ଦିରରେ

'ଗୀତଗୋବିନ୍ଦ' ସେବା ପ୍ରଚଳିତ ହେବାରୁ ଓଡ଼ିଶାର ବୈଷ୍ଣବୀୟ ଚେତନା ଭିତରେ ରାଧାକୃଷ୍ଣ ସମ୍ପର୍କିତ ପ୍ରଭାବ ବିସ୍ତାର କରିବା ସମ୍ଭବ ହୋଇଥିଲା । ଓଡ଼ିଶାର ଗଜପତି ରାଜା ପ୍ରତାପରୁଦ୍ରଙ୍କ ଶାସନକାଳରେ ବିଶିଷ୍ଟ ସ୍ଥାନ ଅଧିକାରୀ ରାୟ ରାମାନନ୍ଦଙ୍କର ରାଧାକୃଷ୍ଣ କୈନ୍ଦ୍ରିକ ପ୍ରେମଭକ୍ତି ସାଧନା, ଶ୍ରୀଚୈତନ୍ୟଙ୍କ ରାଧାକୃଷ୍ଣ ପ୍ରେମଲୀଳା ପ୍ରଚାର ଓ ସର୍ବୋପରି ପ୍ରତାପରୁଦ୍ରଙ୍କର ଏଥିପ୍ରତି ଅନୁରାଗ, ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତ-ଉପାସକମାନଙ୍କୁ ବିଶେଷ ପ୍ରଭାବିତ କରିଥିଲା । ତେଣୁ ସେମାନେ ସ୍ୱସାଧନାମାର୍ଗ ମଧ୍ୟରେ ରାଧାକୃଷ୍ଣଙ୍କ ରୂପକଳ୍ପନା ଦ୍ୱାରା ଉଲ୍ଲେଖ କରୁଥିଲେ । ରାଗ ନୁଗା ପ୍ରେମଭକ୍ତିର ରାଧାକୃଷ୍ଣ ତତ୍ତ୍ୱ ଉପସ୍ଥାପନାଠାରୁ ଏମାନଙ୍କର ରାଧାକୃଷ୍ଣ ତତ୍ତ୍ୱ ଉପସ୍ଥାପନା ଭଙ୍ଗୀ ପୃଥକ ଥିଲା । ଏମାନେ ରାଧାକୃଷ୍ଣଙ୍କୁ ବିଭିନ୍ନ ଦୃଷ୍ଟି କୋଣରୁ ବିଚାର କରି ତାହାର ତାତ୍ତ୍ୱିକ ରୂପ ପ୍ରଦାନ କରିଥିଲେ । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାହିତ୍ୟକୁ ଅନୁଧ୍ୟାନ କଲେ ଦେଖାଯାଏ, ଏହି ସମ୍ପ୍ରଦାୟର ସାଧକମାନେ ରାଧାକୃଷ୍ଣଙ୍କୁ ଶରୀର ମଧ୍ୟରେ ଅର୍ଥାତ୍ ଜୀବ-ପରମ, ପ୍ରକୃତି-ପୁରୁଷ, ଆତ୍ମା-ପରମାତ୍ମା, କୁଳକୁଣ୍ଡଳିନୀ-ଜ୍ୟୋତିବ୍ରହ୍ମ ରୂପେ ଯେଉଁଭଳି ଉପଲବ୍ଧି କରିଛନ୍ତି, ସେହିପରି ରାଧାକୃଷ୍ଣଙ୍କୁ ମନ୍ତ୍ର-ଯନ୍ତ୍ର ମଧ୍ୟରେ ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଓଁକାର, ଶୂନ୍ୟ ଭାବରେ ମଧ୍ୟ କଳ୍ପନା କରିଅଛନ୍ତି । କେତେକ ମଧ୍ୟ ରାଧାକୃଷ୍ଣଙ୍କୁ ଶ୍ରୀଜଗନ୍ନାଥଙ୍କ ସହିତ ଏକୀଭୂତ କରି ରାଧାକୃଷ୍ଣଙ୍କର ପୀଠ ଓ ଲୀଳା ବିଳାସକୁ ଶ୍ରୀଜଗନ୍ନାଥ କ୍ଷେତ୍ର ମଧ୍ୟରେ ନିର୍ଦ୍ଦେଶ କରିଅଛନ୍ତି । ବର୍ତ୍ତମାନ ନିମ୍ନରେ ଏହାର ବିସ୍ତୃତ ଆଲୋଚନା କରାଯାଉଅଛି ।

## ରାଧାକୃଷ୍ଣ : ଜୀବ ଓ ପରମ

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ-ଉପାସକଗଣ ଶରୀର ମଧ୍ୟସ୍ଥ ଜୀବ ଓ ପରମକୁ ରାଧାକୃଷ୍ଣ ବୋଲି ଅଭିହିତ କରିଛନ୍ତି । ସେମାନଙ୍କ ମତରେ ଜୀବ ହେଉଛି ରାଧା ଏବଂ ପରମ ହେଉଛନ୍ତି କୃଷ୍ଣ । ଏ ଶରୀର ମଧ୍ୟସ୍ଥ ଏହି ଜୀବ ଓ ପରମର ଲୀଳା ହେଉଛି ରାଧାକୃଷ୍ଣ ଲୀଳା । ରାଧାକୃଷ୍ଣଙ୍କର ଏବଂବିଧ ତାତ୍ତ୍ୱିକ ପରିକଳ୍ପନା ମଧ୍ୟରେ ଶୃଙ୍ଗାରରସର ସ୍ପର୍ଶ ନାହିଁ । କବି ନାପିତ ନିଳୋଚନ 'ଗୀତଗୋବିନ୍ଦ'ର ମାର୍ମିକ ରୂପ ଉଦ୍‌ଘାଟନ କରି ଯେଉଁ 'ଗୋବିନ୍ଦ ଗୀତା' ରଚନା କରିଛନ୍ତି, ସେଥିରେ ରାଧାକୃଷ୍ଣଙ୍କର ଏହି ପରିକଳ୍ପନା ସୁନ୍ଦର ଭାବେ ଉପସ୍ଥାପିତ ହୋଇଛି ।

କବିଙ୍କ ମତରେ—

> "ଶୁଣିମା ସୁଜନେ ଜନେଂ ସାବଧାନ ହୋଇ ।
> ରାଧିକା ଯେ ଜୀବ କୃଷ୍ଣ ପରମ ଅଟଇ ।

ସେହିକ ହୋଇଥାନ୍ତି ଲୀଳା ପାଇଁ ଅବତରି ।
ଅଧ ଊର୍ଦ୍ଧେ କଳ୍ପିଣ ବିନୋଦ ଲୀଳା କରି । ।୬୦।

( ସପ୍ତମ ଗାଥା )

ଭକ୍ତ ଏହି ଜୀବ ପରମ ବା ରାଧାକୃଷ୍ଣଙ୍କର ଉତ୍ପତ୍ତି ପ୍ରସଙ୍ଗରେ କହନ୍ତି—

"ଯେତେବେଳେଣ ସବୁ ହିଁ ଶୂନ୍ୟ ଚନ୍ଦ୍ର ସୂର୍ଯ୍ୟ ଆଦି ନାହିଁ
ସେହି ନିରାକାର ଅଜ୍ୟୋତି ଅଶ୍ରୁତି ଆପଣା ସୁଖରେ ରହି
ସବୁ ହିଁ ଶୂନ୍ୟ ଶୂନ୍ୟ ଭୁବନ ଦେଖିଣ କଳ୍ପିଲେ ମନ
ଇଦଭଂ ଆକାଶ ନାମ ସେ ହୋଇଲା ନିଶବଦ ଉତପନ
ସ୍ମରଣ ସ୍ମର ନାମ ଅଛର ଆଦ୍ୟ ଜ୍ୟୋତିନାଦ ସେହି
ନିଶବଦରୁ ଉଦେ ହୋଇ ଶବଦ ଜ୍ୟୋତି ଶକ୍ତିଧରି ରହି
ସେ ଜ୍ୟୋତି ନାଦ ଛରି ଶବଦ ଦୁଇ ପ୍ରକାରେ ହୋଇଲେ
ଅର୍ଦ୍ଧେ ଊର୍ଦ୍ଧେ ଦୁଇ କଳ୍ପନା କରିଣ ନାଦ ଜ୍ୟୋତି ବୋଲାଇଲେ
ଜୀବ ପରମ ଦୁଇ ସ୍ୱଭାବ ପ୍ରକୃତି ପୁରୁଷ ସେହି
ସେହି ଦୁଇ ନାଦ ବିନ୍ଦୁ ସେ ବୋଲନ୍ତି ପ୍ରାଣପ୍ୟାନ ନାମ ସେହି
ନୁହନ୍ତି ଭିନ୍ନ ସେହିକ ଜୀବନ ଊର୍ଦ୍ଧ ଅର୍ଦ୍ଧେଣ କଳ୍ପିଲେ
କଳ୍ପିଣ ସୁଷମ୍ନ ମାର୍ଗେ ଅବତରି ନେଇ ନାଡ଼ିରେ ଚଳିଲେ ।"

ସୁତରାଂ 'ଗୀତଗୋବିନ୍ଦ'ର ରାଧା ହେଉଛନ୍ତି ଦେହର ନିମ୍ନ ଭାଗରେ ଥିବା କୁଳକୁଣ୍ଡଳିନୀ ସ୍ୱରୂପିଣୀ ଜୀବାତ୍ମା ଏବଂ କୃଷ୍ଣ ହେଉଛନ୍ତି ଦେହର ଶୀର୍ଷ ସ୍ଥଳରେ ଥିବା ସହସ୍ର ଦଳ ଚକ୍ରର ଜ୍ୟୋତିର୍ମୟ ବ୍ରହ୍ମ । ରାଧାକୃଷ୍ଣ ବା ଜୀବ ପରମ ଲୀଳା ଏହି ଦେହ ମଧ୍ୟରେ ହିଁ ସର୍ବଦା ସମ୍ପାଦିତ ହେଉଛି ବୋଲି ଜ୍ଞାନମିଶ୍ରା ଭକ୍ତି ସାଧକ ବୃନ୍ଦ ବିଶ୍ୱାସ କରନ୍ତି । ପରମ ନିଜର ବିପୁଳ ଜ୍ୟୋତି ଜ୍ୱାଳାରେ ଅଧୀର ହୋଇ ଜୀବର ଆଲିଙ୍ଗନ ଖୋଜୁଥିବା କଥା କବି ନାପିତ ବିଲୋଚନ ପ୍ରକାଶ କରିଅଛନ୍ତି—

"ଜୀବ କଇ ବରି କରି ହରି ମୋହି
ସେହ୍ନା ତେଜ ଜ୍ୟୋତିରେ ଅଧୀର ଦେହି ।"

'ଗୀତଗୋବିନ୍ଦ'ରେ ଯେଉଁଠି ସଖୀ ରାଧାଙ୍କ ପାଦରୁ ନୂପୁର କାଢ଼ି ଓ ନୀଳ ଓଢ଼ଣା ପରିହରଣ କରି କୁଞ୍ଜକୁ ଯିବାପାଇଁ କହୁଛନ୍ତି, ଜ୍ଞାନମାର୍ଗୀ କବି ବିଲୋଚନ ତାହାର ଏକ ତାତ୍ତ୍ୱିକ ରୂପ ପ୍ରଦାନ କରି 'ଗୋବିନ୍ଦଗୀତା'ର ଏକାଦଶ ଗାଥାରେ କହୁଛନ୍ତି—

ସତ୍ତ୍ୱରଜାଦି ତ୍ରିଗୁଣ ହେଉଛି ଜୀବରୂପୀ ରାଧାଙ୍କର ନୂପୁର । ଜୀବରୂପୀ ରାଧା ଏହି ନୂପୁରକୁ ପରିତ୍ୟାଗ କରି ଅର୍ଥାତ୍ ଗୁଣାତୀତ ହୋଇ କୃଷ୍ଣଙ୍କୁ ଗମନ କରୁ । ଅନାହତ ପୁର ହେଉଛି କୃଷ୍ଣ ସଦନ । ସେଠାରେ କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ ଆଦି ପଞ୍ଚମହାଭୂତ ଓ ମନ, ବୁଦ୍ଧି, ଅହଙ୍କାର ଲୀନ ହୋଇ ଥିବାରୁ ତାହା ନିବିଡ଼ ଅନ୍ଧକାର ହୋଇଛି । ଅନାହତ ଧ୍ୱନି ହେଉଛି ବଂଶୀ ଧ୍ୱନି । ଏହା ସହସ୍ରଦଳ ତଳସ୍ଥ ଜ୍ୟୋତିପୁରରୁ ସ୍ଫୁରିତ ହୋଇ ଜୀବ ରୂପକ ରାଧାକୁ ଆକର୍ଷଣ କରୁଛି । କବିଙ୍କ ମତରେ ଜ୍ୟୋତିପୁର ହେଉଛି ଏକ ସାଙ୍କେତିକ ସ୍ଥାନ । ରାଧାଙ୍କର ବସନ ହେଉଛି ଜୀବର ମାୟା, କଳ୍ପନା ଓ ଅହଂଗୁଣ । ଏହାକୁ ବିଗଳିତ କରିଦେଇ ଅର୍ଥାତ୍ କାଟିଦେଇ, କଟିରୁ ମେଖଳା ତ୍ୟାଗକରି ଅର୍ଥାତ୍ ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଓ କାମ, କ୍ରୋଧକୁ ତ୍ୟାଗକରି ଜୀବ ରୂପକ ରାଧା ପରମ ରୂପକ କୃଷ୍ଣଙ୍କ ସଙ୍ଗରେ ରତି ପ୍ରବୃତ୍ତ ହେବାକୁ ବ୍ୟଗ୍ର ହେଉଛି । ରାଧାଙ୍କ ସହିତ କୃଷ୍ଣଙ୍କର ବିପରୀତ ରତି ବିଷୟକୁ ଉଲ୍ଲେଖ କରିବାକୁ ଯାଇ କବି ଲେଖିଛନ୍ତି—

"ରତି ବିପରୀତ ଧ୍ୟାନ ଉଜାଣି ଜହେ
ଲହେ ଲଗିଲେ ସମାଧି ଠୁଳ ହୋଏ ।"

(ଏକାଦଶ ଗାଥା)

ରାଧାକୃଷ୍ଣଙ୍କର ଏହି ପ୍ରେମଲୀଳାକୁ କବି ଜୀବ-ପରମର ଲୀଳା ଭାବେ ଉଲ୍ଲେଖ କରି ସେଥିରେ ପରକୀୟା ପ୍ରେମ ପ୍ରସଙ୍ଗ ଆଦୌ ନଥିବା କଥା ଘୋଷଣା କରିଛନ୍ତି । ସେ ରାଧାଙ୍କର ସ୍ୱରୂପକୁ ସ୍ପଷ୍ଟକରି ପୁନଶ୍ଚ କହିଛନ୍ତି—

"ରାଧା ଯେ ଓଁକାର ଜୀବସ୍ୱରୂପୀ । ଅଶେଷ ବ୍ରହ୍ମାଣ୍ଡେ ଅଛଇ ବ୍ୟାପି
ଅଣ ଅକ୍ଷର ଅକ୍ଷର ଧାରଣା । ଶ୍ରୀକୃଷ୍ଣ ଆତ୍ମା ସେ ଅଶେଷ ଠଣା ।"

'ଗୋବିନ୍ଦ ଗୀତା'ରେ ନାପିତ ତ୍ରିଲୋଚନ ରାଧାକୃଷ୍ଣଙ୍କୁ ଜୀବ ଓ ପରମ ରୂପେ ଅଭିହିତ କରି ସେମାନଙ୍କର ପ୍ରେମଲୀଳାର ଯେଉଁଭଳି ତତ୍ତ୍ୱମୂର୍ତ୍ତି ଉପସ୍ଥାପନା କରିଛନ୍ତି, ତାହା ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତି ଉପାସକ ବୃନ୍ଦଙ୍କ ରଚନା ସମୂହରେ ପରିଲକ୍ଷିତ ହୋଇଛି । କବି ଯଶୋବନ୍ତ ଦାସ ତାଙ୍କର ପ୍ରେମଭକ୍ତି ବ୍ରହ୍ମ ଗୀତାରେ ରାଧାକୃଷ୍ଣଙ୍କୁ ଜୀବ ପରମ ଭାବେ ଗ୍ରହଣ କରିଥିବା ଦେଖାଯାଏ । ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟ-ସଂହିତା' ଗ୍ରନ୍ଥରେ ମଧ୍ୟ ରାଧାକୃଷ୍ଣ ଜୀବ ପରମ ରୂପେ ବର୍ଣ୍ଣିତ ହୋଇ ଅଛନ୍ତି । ଏଥିରେ ରାଧାଙ୍କୁ ଜୀବାତ୍ମା ଓ କୃଷ୍ଣଙ୍କୁ ପରମାତ୍ମା ରୂପେ ବର୍ଣ୍ଣନା କରାଯାଇ କୁହାଯାଇଛି—

"ଶୃଙ୍ଗାର ଅର୍ଦ୍ଧମାତ୍ରା ବୋଲନ୍ତି ଭକ୍ତ
ଜୀବ ଆତ୍ମା ରାଧା ବୋଲି ପରମ ମୁରାରି ।
ଅଧେ ରାଧା ଅଧେ କୃଷ୍ଣ ଅର୍ଦ୍ଧ ଆତ୍ମା ଏକ
ଅର୍ଦ୍ଧ ଅର୍ଦ୍ଧ ଯୁଗ୍ମ ରୂପ ଜାଣନ୍ତି ବିବେକ ।
ଯୁଗହୋଇ ଯୁଗଳ ସେ ବୋଲାନ୍ତି ଯେଣୁ
ଦ୍ୱିଅର୍ଦ୍ଧେ ପରମବ୍ରହ୍ମ ନାମ ତେଣୁ ।"

(ପ୍ରଥମ ଭାଗ, ଦ୍ୱିତୀୟ ଅଧ୍ୟାୟ)

ଅଚ୍ୟୁତାନନ୍ଦଙ୍କ ଭଣିତାରେ ମିଳୁଥିବା 'ଗୁରୁଭକ୍ତିଗୀତା ତୃତୀୟଖଣ୍ଡର ପଞ୍ଚବିଂଶ ପଟଳରେ ରାଧାକୃଷ୍ଣଙ୍କୁ ଜୀବ ପରମ ବୋଲି କୁହାଯାଇଛି । ଶିଶୁ ଅନନ୍ତ ମଧ୍ୟ ତାଙ୍କର "ହେତୁ ଉଦୟ ଭାଗବତ"ରେ ରାଧାକୃଷ୍ଣଙ୍କୁ ଜୀବପରମ ଭାବେ ଉଲ୍ଲେଖ କରିଛନ୍ତି । ଯଥା—

"ଜୀବଟି ରାଧା ଅଙ୍ଗ ହୋଇ । ପରମ କୃଷ୍ଣ ଅଙ୍ଗ ସେହି ।"

(୨ୟ ଅଧ୍ୟାୟ)

ପଞ୍ଚସଖାଯୁଗର ବୟୋଜ୍ୟେଷ୍ଠ କବି ବଳରାମ ଦାସ ତାଙ୍କର ଏକ ଅପ୍ରକାଶିତ ଗ୍ରନ୍ଥ 'ଜ୍ଞାନଚୂଡ଼ାମଣି"ରେ ରାଧାକୃଷ୍ଣଙ୍କ ଲୀଳାକୁ ଜୀବ ଓ ପରମର ଲୀଳା ରୂପେ ବର୍ଣ୍ଣନା କରିଛନ୍ତି । ଏଥିରେ କୁହାଯାଇଛି— "ବ୍ରହ୍ମ ଯେ କୃଷ୍ଣ ସେ, ରାଧିକା ପରମ, ଦୂତିକା ଜୀବ, ବଇଁଶୀ ଅନାହତ ଧ୍ୱନିକି କହି ।" ଆତ୍ମା ପରମାତ୍ମାଙ୍କର ମିଳନ ହିଁ ରାଧାକୃଷ୍ଣଙ୍କର ମିଳନ । ସନ୍ଥକବି 'ଭକ୍ତଚରଣ ଦାସ' ରାଧାକୃଷ୍ଣଙ୍କ ବିଭିନ୍ନ ଲୀଳାର ତାତ୍ତ୍ୱିକ ବର୍ଣ୍ଣନା କରି ତାଙ୍କର ମିଳନକୁ ଜୀବ ପରମର ବା ଚନ୍ଦ୍ର ସୂର୍ଯ୍ୟର ମିଳନ କହିଛନ୍ତି । ନାଥସିଦ୍ଧମାନେ ଏହି ଚନ୍ଦ୍ର ସୂର୍ଯ୍ୟର ମିଳନକୁ ଗୁରୁତ୍ୱ ଦେଇଥାନ୍ତି । ସେମାନଙ୍କ ମତରେ ଶରୀରର ମୂଳାଧାର ଚକ୍ରରେ ସୂର୍ଯ୍ୟ ଊର୍ଦ୍ଧ୍ୱମୁଖ ହୋଇ ଅବସ୍ଥାନ କରୁଛନ୍ତି ଏବଂ ସହସ୍ରାର ଚକ୍ରରେ ଚନ୍ଦ୍ର ଅଧୋମୁଖ ଅବସ୍ଥାନ କରୁଛନ୍ତି । ସୂର୍ଯ୍ୟଙ୍କୁ ଶକ୍ତି ଓ ଚନ୍ଦ୍ରଙ୍କୁ ଶିବରୂପରେ ସେମାନେ କଳ୍ପନା କରନ୍ତି । ଏ ଉଭୟଙ୍କର ମିଳନ ହେଉଛି ଶିବ ଶକ୍ତିର ମିଳନ ଏବଂ ତାହା ସମ୍ପାଦନ କରିବା ଯୋଗୀର କର୍ତ୍ତବ୍ୟ । (Obseure Religious cult, P. 236) ଉକ୍ତ କଳ୍ପନାକୁ ଜ୍ଞାନମିଶ୍ରା ଭକ୍ତ ସାଧକ ଓଡ଼ିଶୀ ବୈଷ୍ଣବ କବିଗଣ ରାଧାକୃଷ୍ଣ ମିଳନ କଳ୍ପନାରେ ରୂପାନ୍ତରିତ କରିଥିଲେ ତାହା ଭକ୍ତଚରଣ ଦାସଙ୍କ ରଚନାରୁ ଲକ୍ଷ୍ୟ କରାଯାଇଥାଏ । ଯଥା—

"ଏମନ୍ତ ଘରେ ରହି ଲୀଳା କରୁଛନ୍ତି ବେନି
ରାଧା ପଛେ ଗୃହୁଁଛନ୍ତି ଆଗମକୁ ଜାଣି

ଆସୁଛୁ ପରମ ବାନ୍ଧି ଯାଉଅଛୁ ଜୀବ
ଗଲ ଯେ ଅଗଲା ପାର୍ଥି ବୁଝକର ଠାବ
ତଳ ଉପର ଯେ ଦେଖା କରୁଅଛୁ ସେହି
ତଳ ଭାଗ ସୂର୍ଯ୍ୟ ଯେ ଉପର ଚନ୍ଦ୍ର କହି
ଟେକୁଅଛୁ ପଡ଼ୁଅଛୁ ପୁଣି ମିଶି ଯାଇ
ରାମ ନାମ ବେଢ଼ ଏ ଯେ ପାଳଟି ଫେରାଇ ।
( ଜ୍ଞାନସାଗର, ଅଷ୍ଟମ ପରିଚ୍ଛେଦ )

କବି ଶ୍ରୀହରି ଦାସ ମଧ୍ୟ ତାଙ୍କର 'ମୟୁର ଚନ୍ଦ୍ରିକା ଗ୍ରନ୍ଥରେ ରାଧାକୃଷ୍ଣଙ୍କୁ ଜୀବ ପରମ ରୂପେ ଗ୍ରହଣ କରି 'ଜୀବ ପରମଟି ରାଧାଗୋବନ୍ଦ' ବୋଲି କହିଛନ୍ତି । ( ଚତୁର୍ଥ ଚନ୍ଦ୍ରିକା )

## ରାଧାକୃଷ୍ଣ : ପ୍ରକୃତି ଓ ପୁରୁଷ—

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାଧକମାନେ ରାଧାକୃଷ୍ଣଙ୍କୁ ପ୍ରକୃତି ଓ ପୁରୁଷ ଭାବେ ଗ୍ରହଣ କରି ସେମାନଙ୍କର ତାତ୍ତ୍ୱିକ ବର୍ଣ୍ଣନା କରିଅଛନ୍ତି । ପଞ୍ଚସଖାଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ କବି ବଳରାମ ଦାସ 'ବେଦାନ୍ତସାର ଗୁପ୍ତଗୀତା'ରେ ଏହି ତତ୍ତ୍ୱକୁ ଉପସ୍ଥାପନ କରିଛନ୍ତି । ରାଧା ହେଉଛନ୍ତି ପ୍ରକୃତି ଓ କୃଷ୍ଣ ହେଉଛନ୍ତି ପୁରୁଷ । ଶରୀର ମଧ୍ୟସ୍ଥ ଷଡ଼ଚକ୍ରପରେ ଥିବା ସହସ୍ରଦଳ ଚକ୍ରରେ ପୁରୁଷ ପ୍ରକୃତିଙ୍କୁ ନେଇ ବିହାର କରୁଅଛୁ । ଏଠାରେ କଳ୍ପବୃକ୍ଷ ମୂଳରେ ରାସ ମଣ୍ଡପ ଅଛୁ । ଏହା ହେଉଛୁ ମହାଶୂନ୍ୟର ସ୍ଥାନ ଏବଂ ଏଠାରୁ ସୁଷୁମ୍ନା ମାର୍ଗର ରନ୍ଧ୍ର ଆରମ୍ଭ ହୋଇଛୁ । ଏଠାରେ ଚିନ୍ତାମଣି ନାମକ ଏକ ରତ୍ନ ମଣ୍ଡପ ଉପରେ ଏକ ରତ୍ନ ପଲଙ୍କ ପଡ଼ିଅଛି । ତାହା ଉପରେ ସହସ୍ରଦଳ ବିଶିଷ୍ଟ ପଦ୍ମ ଫୁଲର କେଶରରେ ପ୍ରକୃତି ପୁରୁଷ ବିହାର କରୁଛନ୍ତି ।

## -ସହସ୍ରଦଳ ଚକ୍ର ରାଧାକୃଷ୍ଣଙ୍କ କେଳିକୁଞ୍ଜ—

ଏହି ଜୀବ ଓ ପରମ ତଥା ପ୍ରକୃତି ଓ ପୁରୁଷ ରୂପୀ ରାଧାକୃଷ୍ଣଙ୍କର 'କେଳିକୁଞ୍ଜ ଭାବେ ଜ୍ଞାନମିଶ୍ରା ଭକ୍ତି ସାଧକଗଣ ଶରୀର ମଧ୍ୟସ୍ଥ ସହସ୍ରଦଳ ଚକ୍ରକୁ ନିର୍ଦ୍ଦେଶ କରିଅଛନ୍ତି । ଶରୀର ମଧ୍ୟରେ ରାଧାକୃଷ୍ଣ ଅବସ୍ଥାନ କରୁଥିବା କଥା ସେମାନେ ବାରମ୍ବାର ଘୋଷଣା କରିବା ସଙ୍ଗେ ସଙ୍ଗେ ଯୋଗ ମାଧ୍ୟମରେ ଷଡଚକ୍ର ସାଧନା ଦ୍ୱାରା ଜୀବ ପରମଙ୍କୁ ଏକତ୍ର କରି ସେମାନଙ୍କର ନିତ୍ୟ ରାସଲୀଳା ସନ୍ଦର୍ଶନ କରାଯାଇ ପାରିବ ବୋଲି କହିଛନ୍ତି । କବି ନାପିତ ତ୍ରିଲୋଚନ ତାଙ୍କର

'ଗୋବିନ୍ଦଗୀତା'ରେ ଅନନ୍ତଦଳ ବିଶିଷ୍ଟ ସହସ୍ରଦଳ କମଳକୁ ରାଧାକୃଷ୍ଣଙ୍କର କେଳିକୁଞ୍ଜ କହିଛନ୍ତି । ପ୍ରତ୍ୟେକ ଦଳ ହୋଇଛି ଏକ ଏକ ନାୟିକାରୂପୀ । ଏହି ଗ୍ରନ୍ଥର ତୃତୀୟ ଗାଥାରେ ସେ କହିଛନ୍ତି—

"ସେ କୁଞ୍ଜ ସଦନ ଶୋଭା ଅନନ୍ତ ଯେ ଦଳ
କୃଷ୍ଣ ଜ୍ୟୋତି ଲଗି କୃଷ୍ଣ ପ୍ରିୟେ ଅବତାର ।"

ଏହାର ସପ୍ତମ ଗାଥାରେ ଏହାର ଏକ ପ୍ରାଞ୍ଜଳ ବର୍ଣ୍ଣନା ପ୍ରଦତ୍ତ ହୋଇଛି ।

"ଗୋପୀମାନେ ଅଟନ୍ତି ଯେ ଅନନ୍ତ କମଳ
ରାଧିକା ଅଟନ୍ତି ଯେ କମଳେ କେଶର
ମଧୁକର ଅଟନ୍ତି ଯେ କାଳିଆ କହ୍ନାଇ
ଅନନ୍ତ କମଳ ଦଳ ମଧ୍ୟରେ ଭ୍ରମଇ
ଭ୍ରମି ଭ୍ରମି କେଶର ଚୁମ୍ବିବା ପାଇଁ ମନ
ମଧୁ ଲୁବ୍ଧେ ଭ୍ରମେ ତେଣୁ କେଶର ମଧ୍ୟେଣ
ପଦ୍ମଦଳ ତ୍ୟାଗିଣ କେଶର ଖୋଜେ ରହି
ସେମନ୍ତ କରି ଗୋପୀଙ୍କି ତ୍ୟାଗିଲେ ମାଧୋଇ
ପୂର୍ଣ୍ଣ ମଧୁ ରାଧିକା ସେ ରାଧାକୁ ଲୋଡ଼ଇ
ଧ୍ୟାନ ନିର୍ମଳେ ଚନ ଦୋଷ ଖଣ୍ଡିବା ପାଇଁ ।"

କବି ବଳରାମ ଦାସ ସହସ୍ରଦଳ ଚକ୍ରର ମଣିମୟ ବେଦୀ ପରେ ରାଧାକୃଷ୍ଣ ଲୀଳା କରୁଥିବା କଥା କହିଛନ୍ତି । ଶରୀରର ଷଡ଼ଚକ୍ର ଭେଦ କରି ପାରିଲେ ରାଧାକୃଷ୍ଣଙ୍କର ଜ୍ୟୋତିର୍ମୟ ରୂପ ଦର୍ଶନ ସମ୍ଭବ ହୁଏ ।

"ପଞ୍ଚମକୁ ଭେଦ ଷଷ୍ଠ ଉପରେ ।
ରାଧାକୃଷ୍ଣଙ୍କୁ ଗୋ ଦେଖ ନେତ୍ରରେ ।
ଦୃଷ୍ଟି ଗୋ, ଦୁଃଖ ସୁଖ ହିଁ ଯାନ୍ତି ।
ଜନ୍ମ ମରଣକୁ ଭୟ ନ ଆଛି ।
ଅଦ୍ଭୁତରୂପା ରମାକୁ ଘେନି ।
ବାମରେ କଉତ ସେହି କାମିନୀ ।
ସମସ୍ତ ବର୍ଣ୍ଣକ ଯୋଡ଼ାଇ ଅଛି ।
ପାଞ୍ଚ ବର୍ଣ୍ଣ ଜ୍ୟୋତି ଉଦେ କରୁଛି ।

ଦୃଷ୍ଟି ଗୋ ସେହି ଜ୍ୟୋତିର ବର୍ତ୍ତି ।
ସହସ୍ର ଅରୁଣ ନୁହେଁ ସମାନ ।
ଏମନ୍ତ ସ୍ୱରୂପ ବଟ ତଳରେ ।
ରାଧାକୃଷ୍ଣ ବଜେ ମଣି ବେଦୀରେ ।

( ରହାସମାଳା, ପୃ ୭୪ )

ବ୍ରହ୍ମସଂହିତାରେ କଳ୍ପିତ ହୋଇଥିବା ଭଗବାନଙ୍କର ଦୀପ୍ତିମାଳିନୀ ସ୍ୱରୂପଭୂତା ଶକ୍ତି ରମାଦେବୀ କିପରି ଉତ୍କଳୀୟ ଜ୍ଞାନମିଶ୍ରା ସାଧକଙ୍କ ଚିନ୍ତାଧାରାରେ ଶ୍ରୀରାଧା ରୂପେ ଗୃହୀତ ହୋଇଛନ୍ତି, ତାହା ଏହି ଉକ୍ତିରୁ ସ୍ପଷ୍ଟ ଅନୁମାନ କରିହୁଏ ।

ଅଚ୍ୟୁତାନନ୍ଦଙ୍କ ରଚନାରେ ମଧ୍ୟ ଏହି ପରି କଳ୍ପନା ପରିଲକ୍ଷିତ । ସେ ତାଙ୍କର 'ରସାମୃତସିନ୍ଧୁ' ନାମକ ଏକ ଗ୍ରନ୍ଥରେ ଶରୀରର ନୟନ ଉପରସ୍ଥାନକୁ ଗୋପପାଟଣା ଓ ନୟନକୁ କିଶୋର କିଶୋରୀ ରାଧାକୃଷ୍ଣଙ୍କ ବାସସ୍ଥାନ ବୋଲି ଉଲ୍ଲେଖ କରିଅଛନ୍ତି । ଶରୀରର ଭ୍ରୂଦ୍ୱୟର ଉପରସ୍ଥାନ ହେଉଛି ସହସ୍ରାର ଚକ୍ର । ଏହାକୁ କବି ଅନନ୍ତଙ୍କର ସହସ୍ର ଫଣାଭାବେ ଗ୍ରହଣ କରିଛନ୍ତି । ଅନନ୍ତଙ୍କର ସହସ୍ର ଫଣାରେ ସହସ୍ର ଗୋପୀ ଓ ମଧ୍ୟରେ ରାଧାକୃଷ୍ଣ ଲୀଳା କରୁଥିବା ସେ କହିଛନ୍ତି । ଏହା ହେଉଛି ରାଧାକୃଷ୍ଣଙ୍କ ନିତ୍ୟରାସ । ସହସ୍ରଦଳ ଓ ପଦ୍ମ ମଧ୍ୟରେ ଥିବା ରତ୍ନ ମଣ୍ଡପ ହେଉଛି କେଳିକୁଞ୍ଜ, ଯେଉଁଠାରେ ନିତ୍ୟରାସଲୀଳା ଲାଗି ରହିଛି । ଏହି ରତ୍ନ ମଣ୍ଡପକୁ କବି ପୁଣି ଓଁ କାର ବିନ୍ଦୁ ବା କାମକଳା କହିଛନ୍ତି । ଓଁ କାରର ବିନ୍ଦୁ ତଳକୁ ଚଉଷଠୀ ଦଳ ପାଖୁଡ଼ା ବିଶିଷ୍ଟ ଏକ ପଦ୍ମ ରହିଛି ଓ ସେଥିରେ ରାଧାକୃଷ୍ଣ ଲୀଳା କରୁଛନ୍ତି । ଚଉଷଠୀ ଦଳପଦ୍ମର ପ୍ରତ୍ୟେକ ଦଳରେ ଗୋଟିଏ ଗୋଟିଏ ଗୋପୀ ଓ କୃଷ୍ଣ ଅବସ୍ଥାନ କରୁଛନ୍ତି । ତାହା ଉପରକୁ ବତିଶ ପାଖୁଡ଼ାର ପ୍ରତି ପାଖୁଡ଼ାରେ ଗୋଟିଏ ଗୋପୀ ଓ ଗୋଟିଏ କୃଷ୍ଣ ରହିଛନ୍ତି । ସେହି ପରି ତଥିପରେ ଥିବା ଷୋଳ ପାଖୁଡ଼ାର ପ୍ରତି ପାଖୁଡ଼ାରେ ମଧ୍ୟ ଏକ ଗୋପୀ ଓ କୃଷ୍ଣ ରହିଛନ୍ତି । ଷୋଳ ପାଖୁଡ଼ା ଉପରେ ଅଷ୍ଟଦଳରେ ଅଷ୍ଟନାୟିକା ଓ ତାପରେ ଷଡ଼ଦଳରେ ଷଡ଼ ନାୟିକା ରହି ରାଧାଙ୍କ ସେବା କରୁଅଛନ୍ତି । ଷଡ଼ଦଳର ଉପରେ ଥିବା ତ୍ରିଦଳର ମଧ୍ୟରେ କୃଷ୍ଣ ଓ ଉଭୟ ପାର୍ଶ୍ୱରେ ରାଧା-ଚନ୍ଦ୍ରାବଳୀ ଅବସ୍ଥାନ କରିଛନ୍ତି । ତଥିପରେ ଥିବା ଦ୍ୱିଦଳରେ ରାଧାକୃଷ୍ଣ ଯୁଗଳ ଲୀଳା କରୁଛନ୍ତି ଏବଂ ଦ୍ୱିଦଳ ପରେ ଥିବା ଏକ ଦଳରେ ରାଧାକୃଷ୍ଣ ଅଭିନ୍ନ ଭାବେ କାମକଳା ମଧ୍ୟରେ ମହାସୁଖରେ ମଗ୍ନ ରହିଛନ୍ତି ।

ରସାମୃତସିନ୍ଧୁ'ରେ ପ୍ରତିପାଦିତ ଏହି ସମସ୍ତ ତତ୍ତ୍ୱକୁ କବି 'ପରମ ରହାସ' ଗ୍ରନ୍ଥରେ ବୁଝାଇବାକୁ ଯାଇ କହିଛନ୍ତି—ଚଉଷଠୀ ଦଳ ହେଉଛି ସମସ୍ତ ବ୍ରହ୍ମାଣ୍ଡ ଓ ବ୍ରହ୍ମାଦିଙ୍କର ଆଶ୍ରୟ ସ୍ଥଳ । ଷୋଳ ଦଳ ହେଉଛି ଷୋଳ ବୈକୁଣ୍ଠ, ଅଷ୍ଟଦଳ

ହେଉଛି ଅଷ୍ଟପୀଠବଂଶୀଙ୍କର ସ୍ଥାନ, ଷଡ଼ଦଳ ହେଉଛି ଗୋପାଳ ମୂର୍ତ୍ତି ଦର୍ଶନ ସ୍ଥାନ, ଦ୍ୱିଦଳ ହେଉଛି ରାଧାକୃଷ୍ଣ ମିଳନ ସ୍ଥାନ ଓ ଏକ ଦଳ ହେଉଛି ସଚ୍ଚିଦାନନ୍ଦ ମନ୍ଦିର । ଶରୀର ମଧ୍ୟରେ ରାଧାକୃଷ୍ଣ ଦର୍ଶନ କରି ହୃଦୟରେ ରାଧାକୃଷ୍ଣ ଭାବ ପୋଷଣ କରିବା ହେଉଛି ସର୍ବଶ୍ରେଷ୍ଠ ସାଧନା ।

'ଜ୍ଞାନସାଗର ବୋଲି' ନାମକ ଏକ ଗ୍ରନ୍ଥରେ ଅଚ୍ୟୁତାନନ୍ଦ ସହସ୍ରଦଳ ପଦ୍ମକୁ ରାଧାଙ୍କର ଜୀବନ ବୋଲି କହିଛନ୍ତି । ସେ କହନ୍ତି—ଭ୍ରୂଲତା ମଧ୍ୟରେ ନାସାକୁ ବାଟ ଅଛି, ଯାହା ତ୍ରିବେଣୀ ଘାଟ ନାମରେ ଖ୍ୟାତ । ଏଥିରେ ସୂଚ୍ୟଗ୍ର ପ୍ରମାଣ ବାଟ ଅଛି ଓ ସେଠାରେ ତଳ ରୂପା ପ୍ରାୟ ଏକ କବାଟ ଲାଗିଛି । ଏଠାରୁ ତିନି ଶାଖା ହୋଇ ଡ଼ାଳ ବାହାରିଛି ଓ ଅନନ୍ତ ଏହାର ମୂଳ । ଏହି ଡ଼ାଳରେ ଚାରିଟି ପତ୍ର ଅଛି ଓ ମୂଳରୁ ସହସ୍ରଦଳ ପଦ୍ମ ବାହାରିଛି । 'ମଣିବନ୍ଧ ଗୀତା'ରେ ଅଚ୍ୟୁତାନନ୍ଦ ଭ୍ରୂଦ୍ୱୟ ମଧ୍ୟସ୍ଥ ସ୍ଥାନକୁ ମଣିବନ୍ଧ ଆଖ୍ୟା ଦେଇ ସେଠାରେ ରାଧା-କୃଷ୍ଣଙ୍କର ଅବସ୍ଥିତିକୁ ଦର୍ଶାଇଅଛନ୍ତି । ସେଠାରେ ମଣିର ବେଦୀ, ମଣିର ସିଂହାସନ, ମଣି ପାବଚ୍ଛ, ମଣି ପ୍ରାଙ୍ଗଣ ଓ ମଣି ମଣ୍ଡପ ଅଛି । ମଣି ମଣ୍ଡପ, ତ୍ରିକୋଣ, ଷଟ୍‌କୋଣ ଓ ଅଷ୍ଟକୋଣରେ ଶୋଭା ପାଉଛି ଓ ସେଥିରେ ଅଷ୍ଟପୁର ଅଛି । ମଣିବନ୍ଧ ପୁରରେ ରସିକ ନାଗର କୃଷ୍ଣ ରସିକନୀ ରାଧାଙ୍କ ସହିତ ଅନବରତ ରାସଲୀଳା କରୁଛନ୍ତି । ସାଧକ ରସିକନୀ ଅଙ୍ଗ ଧାରଣ କଲେ ସେଠାରେ ପ୍ରବେଶ କରିପାରିବ ।

ଜଗନ୍ନାଥ ଦାସ ମଧ୍ୟ ତାଙ୍କର କେତେକ ରଚନାରେ ସହସ୍ରଦଳ ଚକ୍ରସ୍ଥିତ ରାଧାକୃଷ୍ଣ ନିତ୍ୟଲୀଳା ବିଷୟରେ କହିଛନ୍ତି । ତାଙ୍କର ଏକ ନାମହୀନ କ୍ଷୁଦ୍ର କବିତା-ରେ ନିତ୍ୟସ୍ଥଳର ପରିଚୟ ଦେବା କାଳରେ ସେ ସହସ୍ରଦଳ କମଳର ଅଷ୍ଟଦଳ ପରେ ଷଡ଼ଦଳ କେଶର ମଧ୍ୟରେ ରତ୍ନପଲଙ୍କ ଉପରେ ରାଧାକୃଷ୍ଣଙ୍କର ନିତ୍ୟଲୀଳା ଲାଗିଥିବା କଥା ପ୍ରକାଶ କରିଛନ୍ତି । ଏଠାରେ ଦିନରାତ ନାହିଁ ଏବଂ କୋଟି ପ୍ରଳୟ ହେଲେ ମଧ୍ୟ ଏହି ଲୀଳା ଶେଷ ହୁଏ ନାହିଁ । ସ୍ତ୍ରୀ ଅଙ୍ଗ ଧାରଣ କରି ବ୍ରଜେଶ୍ୱରୀ ଶ୍ରୀରାଧାଙ୍କ ପଦ ଧ୍ୟାନ କଲେ ଏଠାରେ ପ୍ରବେଶ ଅଧିକାର ମିଳେ । ( ଡଃ କୃଷ୍ଣ ଚରଣ ସାହୁଙ୍କ ବ୍ୟକ୍ତିଗତ ଉଦ୍ୟମରେ ସଂଗୃହୀତ କବିତା ) ।

ଜଗନ୍ନାଥ ଦାସଙ୍କ ଶିଷ୍ୟ ପରମ୍ପରାର କବି କାହ୍ନୁ ଖୁଣ୍ଟିଆଙ୍କ 'ମହାଭାବ ପ୍ରକାଶ'ରେ ଶରୀର ମଧ୍ୟସ୍ଥ ସହସ୍ରାର ଚକ୍ରରେ ରାଧାକୃଷ୍ଣ ଅବସ୍ଥାନ କରୁଥିବା କଥା କୁହାଯାଇଛି । ସେଠାରେ ରାଧାକୃଷ୍ଣଙ୍କୁ ଅଷ୍ଟସଖୀ ବେଢି ରହି ଅଛନ୍ତି । ଅଚ୍ୟୁତାନନ୍ଦଙ୍କ ଶିଷ୍ୟ ପରମ୍ପରାର ଗ୍ରନ୍ଥମାନଙ୍କରେ ମଧ୍ୟ ଶରୀର ମଧ୍ୟସ୍ଥ ସହସ୍ରଦଳରେ ରାଧାକୃଷ୍ଣଙ୍କର ନିତ୍ୟରାସକୁ ଅନୁଭବ କରିବା କଥା କୁହାଯାଇଛି । କବି ଭାବଦ୍ୱ

• ଦାସ 'ମନ୍ମଥ ଚନ୍ଦ୍ରିକା ଜ୍ଞାନ ଟୀକା ଲହରୀ' ନାମକ ଗ୍ରନ୍ଥରେ ଏ କଥାକୁ ଉଲ୍ଲେଖ କରି ନୟନକୁ ସହସ୍ର ଦଳ ବୋଲି କହିଛନ୍ତି । ପୁନଶ୍ଚ ସେ କହିଛନ୍ତି, ସେଠାରେ ରାଧାକୃଷ୍ଣ କ୍ରୀଡ଼ା କରୁଛନ୍ତି ଓ ପିଚ୍ଛଡ଼ା ଉପରେ ଗୋପୀମାନେ ରହି ଆଳଟ ଚାମର ଢାଳୁଛନ୍ତି । (ଚତୁର୍ଥ ଅଧ୍ୟାୟ)

ଦ୍ୱାରିକା ଦାସ 'ଶିବସ୍ୱରଣ'ରେ ବର୍ଣ୍ଣନା କରି କହିଛନ୍ତି ଯେ ଶରୀରମଧ୍ୟସ୍ଥ ସହସ୍ର ଦଳ ଚକ୍ର ଉପରେ ଯେଉଁ ଓଁ ଅଛି ସେ ଓଁର ଅର୍ଦ୍ଧମାତ୍ରା ଉପରେ ଅଷ୍ଟଦଳ ପଦ୍ମ ଅଛି । ତାହା ଉପରେ ଷଡ଼ଦଳ ଓ ତା ଉପରକୁ ଦ୍ୱିଦଳ ରହିଛି । ଦ୍ୱିଦଳ ଉପରେ ମହାଶୂନ୍ୟରେ ରାଧାକୃଷ୍ଣ ନିବିଡ ଆଲିଙ୍ଗନବଦ୍ଧ ହୋଇ ଲୀଳା କରୁଅଛନ୍ତି । କୋଟି ଯୁଗ ଗଲେ ମଧ୍ୟ ସେହି କ୍ରୀଡ଼ା ଭଗ୍ନ ହୁଏ ନାହିଁ । ଜଳ ଭିତରେ ସୂର୍ଯ୍ୟ କିରଣ ପ୍ରକାଶିତ ହେଲା ପରି ଜୀବ ରୂପକ ରାଧାଙ୍କ ଭିତରେ ପରମ ରୂପକ କୃଷ୍ଣ ବାସ କରିଛନ୍ତି । ତାଙ୍କର ବର୍ଣ୍ଣନା ହେଉଛି—

"ସହସ୍ର ଦଳ ଯେହୁ ସେ ଶରୀର ଅଟଇ
ବତିଶ ଦଳ ଅର୍ଣ୍ଣବ ବୋଲିଣ ଦେହ କହି ।
ଷୋଳଦଳ ନାଡ଼ୀମାନେ ଅଟନ୍ତିକ ରାଧାର
ପୃଥ୍ୱୀ ଆପ ତେଜ ବାୟୁ ଆକାଶ ମନ ବୁଦ୍ଧି ଅହଙ୍କାର ।
ଅଷ୍ଟଦଳ ବୋଲିଣ ଯେହି ପାଖୁଡ଼ା ଅଟଇ
ଷଡ ଦଳ ଷଡ ଅଙ୍ଗ ବୋଲିଣ ଅଛି ମହାମାୟି ।
ଦ୍ୱିଦଳ ଇଅଁଳା ପିଅଁଳା ଶିଷୁମ୍ନା
ସ୍ୱାରଂ ଶୀରଂ କ୍ଲୀଂ ତିନିବୀଜ ଯେହିଠାରେ ଭଜନା
ଇଅଁଳା ଦେହରେ ନାମଟି ବୋଲାଇ
ରାମ ଶ୍ରୀ ପିଅଁଳା ସେହୁ ସେ ବୋଲାଇ ।
କ୍ଲୀଂ କୃଷ୍ଣ ଶିଶୁମ୍ନା ମଧ୍ୟରେ ଗଳିତ
ଦାସାମାନଙ୍କର ମଉଡ଼ମଣି ଯେ ଅଟଇ ମହାତତ୍ତ୍ୱ ।

X X X

ଆଗେ ରାଧା ପଛେ କୃଷ୍ଣ କୃଷ୍ଣ ରାଧା ଦେହର ବିଳାସ
ବିଳାସ ଅଙ୍ଗରାଧା ଆସ୍ୱାଦନ ଅଙ୍ଗଟି ପୀତବାସ ।
ଏମନ୍ତ ଭାବ ଜାଣନ୍ତି ବଇଷ୍ଣବ ଯେହୁ
ଏ ସାଧନା ସିଦ୍ଧିରେ ଉଗତ ନିକଟ ପାଆନ୍ତି ସେହୁ ।"

ଷଡ଼ଚକ୍ର ଭେଦ କରିଗଲେ ଯେଉଁ ଅନାହତ ଧ୍ୱନି ଶ୍ରୁତିଗୋଚର ହୁଏ କବି ତାହାକୁ କୃଷ୍ଣଙ୍କର ବଂଶୀଧ୍ୱନି ଭାବେ ଗ୍ରହଣ କରିଛନ୍ତି ।

କବି ଦୀନକୃଷ୍ଣ ଦାସ ମଧ୍ୟ ତାଙ୍କର 'ନାମରତ୍ନ ଗୀତା'ର ଚତୁର୍ଦ୍ଦଶ ଅଧ୍ୟାୟରେ ନିତ୍ୟ ସ୍ଥଳର ରାଧାକୃଷ୍ଣ ରାସ କଥା ବର୍ଣ୍ଣନା କରି ତାହାକୁ ଶରୀର ମଧ୍ୟରେ ଷଡଚକ୍ର ଉପରେ ଥିବା ସହସ୍ରଦଳ ପଦ୍ମର ଜ୍ୟୋତିର୍ମୟ ବିନ୍ଦୁ ଭାବେ କଳ୍ପନା କରିଛନ୍ତି । ତାଙ୍କ ମତରେ--

"ସପତ ମଣ୍ଡଳ ପରେ ନିତ୍ୟ ଯେ ରହାସ
ନିତ୍ୟ ମଣ୍ଡଳରେ ରାଧାକୃଷ୍ଣ ଏକ ବେଶ
ଅଙ୍ଗେ ଅଙ୍ଗେ ପ୍ରୀତି ଭେଦ ଏକ ଦେହ ସେ ଯେ
କମଳ କେଶର ଘରେ କରିଛନ୍ତି ବିଜେ ।"

(୧୪ ଅଧ୍ୟାୟ, ପୃ ୯୮)

ଏହିପରି ଉତ୍କଳୀୟ ଜ୍ଞାନମିଶ୍ରା ଭକ୍ତି ପରମ୍ପରାରେ ସହସ୍ର ଦଳ ଚକ୍ର ରାଧାକୃଷ୍ଣଙ୍କ କେଳିକୁଞ୍ଜ ଭାବେ ଗୃହୀତ ହୋଇଥିଲା । କେତେକ କବି ଏହି ସହସ୍ର ଦଳକୁ ଦୁଇ ନୟନ ମଧ୍ୟରେ ଚିହ୍ନିତ କରି ସେଠାରେ ରାସଲୀଳା ଚାଲିଥିବା କଥା କହିଛନ୍ତି । ଉତ୍କଳୀୟ ପରମ୍ପରାରେ ଜ୍ଞାନମିଶ୍ରା ଭକ୍ତ ସାଧକ ବୈଷ୍ଣବମାନେ ମର୍ତ୍ତ୍ୟ ରାଧାକୃଷ୍ଣଙ୍କର ଅବୈଧ ଶୃଙ୍ଗାର ଲୀଳାକୁ ଉପେକ୍ଷା କରି ସହସ୍ର ଦଳ ଚକ୍ରରେ ଜୀବ ପରମ ରୂପୀ ବା ପ୍ରକୃତି ପୁରୁଷ ରୂପୀ ରାଧାକୃଷ୍ଣଙ୍କ ପ୍ରେମ ରସକୁ ଆସ୍ୱାଦନ କରି-ଛନ୍ତି । ଏହାହିଁ ଥିଲା ସେମାନଙ୍କର ପ୍ରେମଭକ୍ତି ସାଧନା ।

## ଶରୀର ମଧ୍ୟରେ ରାଧାକୃଷ୍ଣ ଓ ରାସଲୀଳା –

ପୂର୍ବେ କୁହାଯାଇଛି ଯେ ଜ୍ଞାନମିଶ୍ରା ଭକ୍ତିମାର୍ଗର ଉପାସକବୃନ୍ଦ ମର୍ତ୍ତ୍ୟ ରାଧାକୃଷ୍ଣଙ୍କର ଶୃଙ୍ଗାର ଲୀଳାକୁ ଉପେକ୍ଷା କରି ଶରୀର ମଧ୍ୟସ୍ଥ ସହସ୍ର ଦଳ ଚକ୍ରରେ ସେମାନଙ୍କର ରାସଲୀଳାକୁ ଉପଲବ୍ଧି କରିଛନ୍ତି । ସେମାନେ ସହସ୍ର ଦଳ ଚକ୍ରକୁ ରାଧାକୃଷ୍ଣଙ୍କ କେଳିକୁଞ୍ଜ ଭାବେ ଗ୍ରହଣ କରିଅଛନ୍ତି । ଏଠାରେ ସମ୍ପାଦିତ ରାସଲୀଳା ଷଡ଼ଚକ୍ର ଭେଦ ଦ୍ୱାରା ଉପଲବ୍ଧ କରାଯାଇପାରେ । ଏପରି କଳ୍ପନା ବ୍ୟତିରେକ ଏହି ପରମ୍ପରାର କବିମାନେ ମଧ୍ୟ ରାଧାକୃଷ୍ଣଙ୍କୁ ଶରୀର ମଧ୍ୟରେ ବିଭିନ୍ନ ସ୍ଥାନରେ ଚିହ୍ନିତ କରି ସେମାନଙ୍କର ଅଖଣ୍ଡ ରାସକୁ ପିଣ୍ଡ ମଧ୍ୟରେ ନିର୍ଦ୍ଦେଶ କରିଛନ୍ତି ।

କବି ଯଶୋବନ୍ତ ତାଙ୍କର 'ରାସ' ନାମକ ଗ୍ରନ୍ଥରେ ଶରୀର ଭେଦ ତତ୍ତ୍ୱରେ ରାଧାକୃଷ୍ଣଙ୍କର ଅବସ୍ଥିତିକୁ ବିସ୍ତାର କରିଛନ୍ତି । କବି ରାଧାକୃଷ୍ଣଙ୍କୁ ଜୀବ ଓ ପରମ

ରୂପେ ଗ୍ରହଣ କରି ସହସ୍ରଦଳ ଚକ୍ରର ଲୀଳାକୁ ରତ୍ନବେଦୀ ଉପରେ ସେମାନଙ୍କର ରାସଲୀଳା ହେଉଥିବା କହିଛନ୍ତି । ରାଧାକୃଷ୍ଣ ଏକ ଓ ଅଭିନ୍ନ ଭାବେ ସେଠାରେ ଅବସ୍ଥାନ କରିଥାନ୍ତି । କୃଷ୍ଣ ପଦ୍ମ ହେଲେ ରାଧା ତା'ର କେଶର ଓ କୃଷ୍ଣ କାଳିନ୍ଦୀ ହ୍ରଦ ହେଲେ ରାଧା ହଂସ ଏବଂ ରାଧା ବୃକ୍ଷ ହେଲେ କୃଷ୍ଣ ତା'ର ମୂଳ ଅଟନ୍ତି । ସାରଳା ମହାଭାରତର ଲଟବନ୍ଧା ପ୍ରସଂଗ ବୁଝାଇବାକୁ ଯାଇ କବି ଯଶୋବନ୍ତ ମଧ୍ୟ ଶରୀର ମଧ୍ୟରେ ରାଧାକୃଷ୍ଣଂକର ଅବସ୍ଥିତିକୁ ଦର୍ଶାଇଛନ୍ତି । ସାରଳା ଦାସଂକ ସ୍ୱୟମ୍ବରରେ ନିର୍ମିତ ଲକ୍ଷରେ ସାତତାଳ ଉଚ୍ଚରେ ଯେଉଁ ସହସ୍ରଧାର ବିଶିଷ୍ଟ ରାଧାଚକ୍ର ଘୂରୁଥିଲା ଏବଂ ତାହା ଉପରେ ଯେଉଁ ସ୍ୱର୍ଣ୍ଣ ମତ୍ସ୍ୟଟି ଥିଲା, ସେ ପ୍ରସଙ୍ଗରେ କବି କହିଛନ୍ତି—ଛଅ ତାଳ ପରେ ଅର୍ଥାତ୍ ଶରୀରର ଷଡଚକ୍ର ପରେ ରାଧାଚକ୍ର ଅଛି । ଏହା ସହସ୍ରଧାର ବିଶିଷ୍ଟ ଅର୍ଥାତ୍ ସହସ୍ର ଦଳ ବିଶିଷ୍ଟ ଏବଂ ଏଠାରେ ଅନାହତ ଧ୍ୱନିର ସ୍ଫୁରଣ ହେଉଥିବାରୁ,ଏହା ଶିଶୁ ବେଦର ସ୍ଥାନ । ଏହା ରାଧାଂକର ସ୍ଥାନ । ରାଧାଚକ୍ର ଉପରେ ଥିବା ମୀନ ହେଉଛନ୍ତି ପରଂବ୍ରହ୍ମ । 'ଆତ୍ମ ପରଚେ ଗୀତା'ରେ କବି ମଧ୍ୟ ଠିକ୍ ଏହି କଥା କହିଛନ୍ତି । ଗୋଲୋକପୁର ହେଉଛି, ମନର ଅଗମ୍ୟ ସ୍ଥାନ । ଶରୀରର ଷଡଚକ୍ର ଭେଦ କଲା ପରେ ଯେଉଁ ସପ୍ତମ ପୁର ପଡେ ତାହାକୁ କବି ଅଟନା ଓ ଅମନ ମନ୍ଦିର କହିଛନ୍ତି । ତାହା ନିରଂଜନଙ୍କର ବାସସ୍ଥାନ ଏବଂ ସେଠାରେ ରାଧାକୃଷ୍ଣଙ୍କର ନିତ୍ୟ ରାସ ଲାଗି ରହିଛି ।

କବି ଅଚ୍ୟୁତାନନ୍ଦ ଦାସ 'ଶୂନ୍ୟସଂହିତା'ର ତୃତୀୟ ଅଧ୍ୟାୟରେ ସହସ୍ର-ଦଳ ପଦ୍ମ ଉପରେ ରାଧାକୃଷ୍ଣ ଯୁଗଳ ଅଙ୍ଗରେ ଲୀଳା କରୁଥିବା କହିଛଂତି । ସେ ତାଙ୍କର 'ଗୁରୁଭକ୍ତି' ଗୀତାର ଦ୍ୱିଚତ୍ୱାରିଂଶ ପଟଳରେ ରାଧାକୃଷ୍ଣଙ୍କର ରାସଲୀଳା ସମ୍ପର୍କରେ କହିଛଂତି—"ପୃଥ୍ୱୀପରେ ସୂର୍ଯ୍ୟମଣ୍ଡଳ, ତତ୍ପରେ ଚନ୍ଦ୍ର ମଣ୍ଡଳ, ତତ୍‌ପରେ ତାରାଗଣ, ତତ୍ପରେ ଦେବଲୋକ, ରୁଦ୍ରଲୋକ, ବ୍ରହ୍ମଲୋକ ଇତ୍ୟାଦି ପରେ ନିତ୍ୟ ଗୋଲକରେ ରତ୍ନବେଦୀ ଉପରେ ରାଧାକୃଷ୍ଣ କିଶୋର କିଶୋରୀ ରୂପରେ ବିହାର କରୁଛଂତି । କବି କହିଥିବା ଏହି ବିଭିନ୍ନ ଲୋକଗୁଡିକୁ ଶରୀର ଭେଦ ତତ୍ତ୍ୱରେ ଅନାୟାସରେ ଚିହ୍ନିତ କରାଯାଇପାରେ ।

ଜ୍ଞାନମିଶ୍ରା ଭକ୍ତି ପରମ୍ପରାର କବି ଅରକ୍ଷିତ ଶିବ 'ରାଧାରସାମୃତ ଗୀତା'ର ଅଷ୍ଟମ ଅଧ୍ୟାୟରେ ପିଣ୍ଡ ମଧ୍ୟରେ ରାଧାକୃଷ୍ଣଙ୍କର ଅବସ୍ଥିତିକୁ ଦର୍ଶାଇଅଛଂତି । ଶରୀର ମଧ୍ୟରେ ଥିବା ଜିହ୍ୱା ହେଉଛି ଅନନ୍ତ ସର୍ପର ଗୁପ୍ତ ଫେଣୀ । ଉପର ପାଟି ଦନ୍ତ ହେଉଛଂତି ଯୋଗମାୟା, ଉପର ଓଷ୍ଠ ହେଉଛଂତି ପ୍ରେମରୂପା ଓ ହେଜ ନାସା ହେଉଛଂତି ରାଧାକୃଷ୍ଣ । ସେ ମୁଖମଣ୍ଡଳର ଭ୍ରୂଲତାକୁ ରାଧାକୃଷ୍ଣଙ୍କର କେଳି

ଭୂଜ ଓ ବେଣ ନୟନକୁ ବେଣ କୁଚ ରୂପେ ବର୍ଣ୍ଣନା କରିଛନ୍ତି । ବ୍ରହ୍ମ ତାଳୁକା ହେଉଛି ପରମ ଘର । ସେଠାରୁ ସୁଧାରସ ଝଡ଼ିପଡ଼ି ରାଧାକୃଷ୍ଣ ରୂପକ ବେଣ ନାସା-ପୁଡ଼ା ଦେଇ ଉଚ୍ଛୁଳି ପଡ଼ୁଛି । କବି ଗୌରହରି ଦାସ ମଧ୍ୟ ରାଧାକୃଷ୍ଣଙ୍କର ଅଷ୍ଟକାଳ ଲୀଳାକୁ ସ୍ୱରତତ୍ତ୍ୱ ଓ ଶରୀର ଭେଦ ତତ୍ତ୍ୱରେ ବୁଝାଇବାକୁ ଚେଷ୍ଟା କରିଅଛନ୍ତି । ତାଙ୍କର 'ଜ୍ଞାନସାଗର' ଗ୍ରନ୍ଥରେ ଅଷ୍ଟକାଳ ଲୀଳାକୁ କିଭଳି ଶରୀର ମଧ୍ୟରେ ଅନୁଭବ କରିଯାଇପାରେ, ତାହାର ସୁନ୍ଦର ବର୍ଣ୍ଣନା ପ୍ରଦାନ କରିଛନ୍ତି । ନିମ୍ନରେ ଅଷ୍ଟକାଳ ଲୀଳା ମଧ୍ୟରୁ ଗୋଟିଏ କାଳର ଲୀଳା ସମ୍ପର୍କୀୟ ବର୍ଣ୍ଣନାକୁ ଉଲ୍ଲେଖ କରାଗଲା, ଯେଉଁଥିରେ ଲଳିତା କୃଷ୍ଣଙ୍କ ପାଖକୁ ରତ୍ନମାଳା ନେଇ ରାଧାଙ୍କୁ ନିମନ୍ତ୍ରଣ କରି ଆଣି କୃଷ୍ଣଙ୍କ ସହ ମିଳନ କରାଇବାର ବର୍ଣ୍ଣନା ରହିଛି ।

"ନୟନକୁ ଓଲଟାଇ ପାରୁ ଯେବେ ଗୁହି
ଅନ୍ତରଙ୍ଗ ଲୀଳା ତହିଁ ଦେଖିବୁ ପ୍ରତ୍ୟକ୍ଷେ
ଠାକୁରାଣୀଠାକୁ ସଖୀ ଯାଉଛି କେମନ୍ତେ
ଯେଉଁ ଜ୍ୟୋତି ଝଲମଲ ମାରଣ ଫେରାଇ
ଏଣେ ଥାଇ ତେଣେ ଥାଇ ସହଚର ସେହି
ରତ୍ନମାଳ ହାର ଏକ କରେ ଥାଇ ଘେନି
ଝଲୁଲତି ରତ୍ନହାର ଚନ୍ଦ୍ର ଫାଲ୍‌ଗୁନ

X X X

ଯେଉଁ ଜ୍ୟୋତି ସୂର୍ଯ୍ୟ ଅଙ୍ଗେ ଯାଇଣ ମିଶଇ
ସେହିଟି ଲଳିତା ସଖୀ ଜାଣିଥାଅ ଭାଇ
ଯେଉଁବାର କଳା ଉଦେ ହୋଇ ଗୋପ୍ୟ ହେଲା
ଠାକୁରାଣୀ ସେହି ଯେ ଲଳିତା ଘେନଗଲା

× × ×

କୁଞ୍ଜଠାରେ ଠାକୁରାଣୀ ମିଳନ୍ତି ଯାଇ
[illegible] ପ୍ରୀତ ଦେଖିବୁ ସେଠାଇଁ ।" (ପଞ୍ଚମ ପରିଚ୍ଛେଦ)

[illegible] ଶରୀର ଭେଦ ତତ୍ତ୍ୱ ମଧ୍ୟରେ କବି ନିର୍ଦ୍ଦେଶ [illegible]—

"ଅନନ୍ତ କଳାରେ ଜ୍ୟୋତି ନେଇ ମିଶାଇବୁ
ରାଧା ମାଧବଙ୍କ ସେହ୍ନ ଏକତ୍ୱ କରିବୁ
ରଙ୍ଗ ସଙ୍ଗେ ଗନ୍ଧରକୁ ମିଶାଇବୁ ନେଇ
କଳା ସଙ୍ଗେ ଧଳାକୁ ରଖିବୁ ପାର୍ଥ ତୁହ୍ନ
ମଝିରେ ରଖିବୁ ପୁଷ୍କି ପୁଂଜ କରି ମନ୍ଦ
ଠାକୁରାଣୀ ହସ୍ତେ ନେଇ ପଣାକାଠି ଦେବ
ଠାକୁରାଣୀ ହସ୍ତରୁ ଗୋବିନ୍ଦ ଘେନି ଯିବେ
ଦାଣ ବୋଲିଣ ମୁଖରେ ଗଡ଼ାଇବେ ।"

(ଷଷ୍ଠ ପରିଚ୍ଛେଦ)

'ମୟୂର ଚନ୍ଦ୍ରିକା' ଗ୍ରନ୍ଥରେ କବି ଶ୍ରୀହରି ଦାସ ଶରୀର ମଧ୍ୟରେ ରାଧାକୃଷ୍ଣଙ୍କର ଲୀଳାକୁ ବର୍ଣ୍ଣନା କରି କହିଛନ୍ତି- ଶରୀର ମଧ୍ୟରେ ସପ୍ତପାତାଳ, ସପ୍ତସ୍ୱର୍ଗ, ସପ୍ତଦ୍ୱୀପାମହୀ, ଜ୍ୟୋତିପୁର, ନିରାକାରପୁର, ନିଗମ ଭୂମିକୁ ଅତିକ୍ରମ କରିଗଲେ ଗୋଲୋକମଣ୍ଡଳର ସନ୍ଧାନ ମିଳେ । ସେଠାରେ ରାଧାକୃଷ୍ଣ ଏକ ଓ ଅଭିନ୍ନ ରୂପରେ ଲୀଳା କରୁଅଛନ୍ତି । (୫ମ ଚନ୍ଦ୍ରିକା) । କବି ଦ୍ୱାରିକା ଦାସ ତାଙ୍କର 'ପ୍ରେମରସ ଚନ୍ଦ୍ରିକା' ଗ୍ରନ୍ଥରେ ନିତ୍ୟ ଗୋଲୋକକୁ ଦେହ ରୂପକ ଓଲଟ ବୃକ୍ଷର ମୂଳ ବୋଲି ଅଭିହିତ କରିଛନ୍ତି । ନୟନକୁ ସେ ସହସ୍ର ଦଳ କମଳ ଏବଂ ସେଠାରେ ନିତ୍ୟ ତ୍ରିକୋଣ ଭୂମିରେ ରାଧାକୃଷ୍ଣଙ୍କର ରାସଲୀଳା ସମ୍ପାଦିତ ହେଉଥିବା କହିଛନ୍ତି । ତାଙ୍କ ବର୍ଣ୍ଣାନୁଯାୟୀ—

କୃଷ୍ଣଟି କଳା ତୋଳା କହି । ଧଳାଟି ରାଧିକା ଅଟଇ । ୫୪ ।

X X X

ଚକ୍ଷୁରେ ଯେତେ ରୂମ କହି । ଗୋପିମଣ୍ଡଳ ବୋଲି ଏହି । ୭୯ ।

ଶ୍ରୀରାଧାଙ୍କୁ ସେ ରକ୍ତମାଂସର ଦେହଧାରୀ ବ୍ୟକ୍ତି ଭାବରେ ଗ୍ରହଣ କରିନାହାନ୍ତି । ତାଙ୍କ ମତରେ ସୁଧା ଓ ଆନନ୍ଦ ଶ୍ରୀରାଧାଙ୍କର ଦୁଇ ସ୍ତନ, ପ୍ରେମ ତାଙ୍କର ଯୋନି, ଲଜ୍ଜା ହେଉଛି ବସନ ଓ ସେ ଅହିଂସା ରୂପକ ତାଡ଼ ଚୂଡ଼ିପିନ୍ଧିଛନ୍ତି । ସତ୍ୟ, ଶାନ୍ତି, ଦୟା, କ୍ଷମା ଓ ଅନ୍ୟାନ୍ୟ ସାତ୍ତ୍ୱିକ ଗୁଣରେ ଶ୍ରୀରାଧାଙ୍କର ଅଙ୍ଗଶୋଭା ପ୍ରକାଶିତ ହୋଇଛି । ସାଧକ କିପରି ରାଧାଙ୍କ ମାଧ୍ୟମରେ କୃଷ୍ଣଙ୍କୁ ଆସ୍ୱାଦନ କରିବ, ତା'ର ବିବରଣୀ ଦେଇ କବି ଲେଖିଛନ୍ତି—

"ସିତ କୁଙ୍କୁମ ଲେପି ଅଙ୍ଗେ । ଧୈର୍ଯ୍ୟ ଚନ୍ଦନ ବୋଳି ଅଙ୍ଗେ ।
ଅହିଂସା ଅଲତା ପୟରେ । ତୋଳି ବୋଳିବ ସୂକ୍ଷ୍ମ ଦ୍ୱାରେ ।

ସତ ସାରୂପ୍ୟ ବେନି ଗୋଲ । କପୋଳେ ଚିତା କରି ବୋଲ ।
ଲମ୍ବ ଗଡରେ କୁଂଜ ଯିବ । ଜପ କେତନେ ଭେଟ ହେବ ।
ସେବା ଭକ୍ତିରେ ମନ ଥୋଇ । କୃଷ୍ଣଙ୍କ ଭକ୍ତି ସେ ଲଗାଇ ।
ଭାବ ଭୂଜରେ ଆଲିଙ୍ଗନ । କରିବ ପ୍ରଭୁଙ୍କୁ ବହନ ।
ରତି ପୀରତି ଶୃଙ୍ଗ ଚଢ଼ି । ରାଧାଙ୍କ ଅଙ୍ଗେ ଚାହା ଥୋଇ ।
କୃଷ୍ଣଙ୍କୁ ଆସ୍ୱାଦନ କରି । ହୋଇବୁ ତାହାଙ୍କର ନାରୀ ।"

ଈଶ୍ୱର ଦାସ ତାଙ୍କର 'ଚୈତନ୍ୟ ଭାଗବତ'ରେ ମଧ୍ୟ ଶରୀର ମଧ୍ୟରେ ଶ୍ରୀରାଧା ଅବସ୍ଥାନ କରିଥିବା କଥା ପ୍ରକାଶ କରିଛନ୍ତି । ଦେହ ଭିତରେ ସପ୍ତଚକ୍ର ଭେଦ ଦ୍ୱାରା ରାଧାକୃଷ୍ଣଙ୍କ ନିତ୍ୟରାସ ଦର୍ଶନ କରି ହେବ ବୋଲି ସେ କହି ଅଛନ୍ତି । କବି ଦୀନକୃଷ୍ଣଙ୍କ 'ନାମରତ୍ନ ଗୀତା'ରେ ମଧ ଶରୀର ମଧ୍ୟରେ ରାଧାକୃଷ୍ଣ ଓ ରାସ-ଲୀଳାର ସୂଚନା ପ୍ରଦାନ କରାଯାଇଛି ।

ଏହି ସବୁ ବର୍ଣ୍ଣନାରୁ ସ୍ପଷ୍ଟ ହୁଏ ଯେ ଜ୍ଞାନମିଶ୍ରା ଭକ୍ତି ମାର୍ଗର ସାଧକମାନେ ରାଧାକୃଷ୍ଣଙ୍କୁ ବାହ୍ୟ ଜଗତରେ ନଖୋଜି ନିଜ ଶରୀର ମଧ୍ୟରେ ଅନ୍ୱେଷଣ କରି-ଥିଲେ । ଏଥିପାଇଁ ସେମାନେ ଯୋଗ ମାଧ୍ୟମରେ ଷଡଚକ୍ରଭେଦକୁ ଗୁରୁତ୍ୱ ପ୍ରଦାନ କରି ରାସଲୀଳାକୁ ନିଜ ଶରୀର ମଧ୍ୟରେ ଉପଲବ୍ଧି କରିଥିଲେ ।

## ମନ୍ତ୍ର ଯନ୍ତ୍ରରେ ରାଧାକୃଷ୍ଣ—

ଜ୍ଞାନମିଶ୍ରା ଭକ୍ତି ପରମ୍ପରାରେ ରାଧାକୃଷ୍ଣଙ୍କୁ ଜୀବ ପରମ, ପ୍ରକୃତି-ପୁରୁଷ ଭାବେ ଗ୍ରହଣ କରାଯାଇ ଶରୀର ଭେଦ ତତ୍ତ୍ୱରେ ରାଧାକୃଷ୍ଣଙ୍କ ରାସଲୀଳାକୁ ଉପଲବ୍ଧ କରିବା କଥା । କୁହାଯିବା ଭଳି ବିଭିନ୍ନ ବୀଜମନ୍ତ୍ର, ମହାମନ୍ତ୍ର ମଧ୍ୟରେ ମଧ୍ୟ ରାଧାକୃଷ୍ଣଙ୍କୁ ଚିହ୍ନାଇ ଦିଆଯାଇଛି । ଏହି ପରମ୍ପରାର କବି ତଥା ସାଧକ-ମାନେ ସ୍ୱରଚିତ ଗ୍ରନ୍ଥ ମଧ୍ୟରେ ଏହାର ତାତ୍ତ୍ୱିକ ବର୍ଣ୍ଣନା ପ୍ରଦାନ କରିଅଛନ୍ତି ।

ପଞ୍ଚସଖା ଯୁଗର ବୟୋଜ୍ୟେଷ୍ଠ କବି ବଳରାମ ଦାସ ଯନ୍ତ୍ର ମନ୍ତ୍ର ତତ୍ତ୍ୱରେ ରାଧାକୃଷ୍ଣଙ୍କୁ କପରି ଉପଲବ୍ଧ କରାଯାଇ ପାରିବ, ତାହାର ସୁନ୍ଦର ବର୍ଣ୍ଣନା ତାଙ୍କର 'ବେଦାନ୍ତସାର ଗୁପ୍ତଗୀତା'ରେ ପ୍ରଦାନ କରିଅଛନ୍ତି । ଏହି ଗ୍ରନ୍ଥର ଷଷ୍ଠ ଅଧ୍ୟାୟରେ ସେ କହିଛନ୍ତି—ହ୍ଲାଁ, କ୍ଲାଁ, ଶ୍ରୀଂ, ହ୍ରୀଂ, ଶ୍ରୀଂ, କ୍ଲାଁ ହ୍ରୀଂ ହେଉଛି ପ୍ରେମ ଷଡ଼ାକ୍ଷର ମନ୍ତ୍ର ଓ ଏହା ରାଧାଙ୍କର ମନ୍ତ୍ର । ଉପରୋକ୍ତ ଭାବରେ ଦୁଇଟି ତ୍ରିକୋଣ ଆଙ୍କି ସେଥିରେ ଏହି ଛଅଟି ଅକ୍ଷରକୁ ବସାଣ କଲେ ତାହା ସହସ୍ରଦଳ ପଦ୍ମ ସ୍ଥ

ପ୍ରେମ ପଲ୍ଲଙ୍କର ଷଡ଼କୋଣ ବିଶିଷ୍ଟ ପ୍ରେମ ଶଯ୍ୟା ହୁଏ । ଗୋପୀଜନ ବଲ୍ଲଭାୟ ସ୍ୱାହା"—ଏହି ଅଷ୍ଟାକ୍ଷର ମନ୍ତ୍ରର ପ୍ରତ୍ୟେକ ଅକ୍ଷର ଅଷ୍ଟଦଳ ପଦ୍ମର ଗୋଟିଏ ଗୋଟିଏ ଦଳ । ଅଷ୍ଟଦଳ ପଦ୍ମରେ ଅଷ୍ଟସଖୀ ରହି ରାଧାଙ୍କର ସେବା କରୁଛନ୍ତି । ଅଷ୍ଟସଖୀ ମଧ୍ୟରୁ ଶ୍ରୀ ଓ ଭୂ ହେଉଛନ୍ତି ପ୍ରଧାନ ଶକ୍ତି । ଏମାନେ ଜନ୍ମମୁଖୀ ଦୁଇ ଦଳରେ ଯଥାକ୍ରମେ ବାମ ଓ ଦକ୍ଷିଣ ଦଗରେ ଅବସ୍ଥାନ କରନ୍ତି । ଅବଶିଷ୍ଟ ଛଅ ସଖୀଙ୍କ ମଧ୍ୟରୁ ବୃନ୍ଦାବତୀ ପୂର୍ବରେ ସମ୍ମୁଖ ଭାଗରେ ଓ ତାଙ୍କ ବାମରେ ରଙ୍ଗଦେବୀ ରହନ୍ତି । ଐଶାନ୍ୟରେ ସୁଭଦ୍ରା, ତାଙ୍କ ବାମରେ ପ୍ରେମଦା, ତାଙ୍କ ବାମରେ ରତ୍ନରେଖା ସୁଗନ୍ଧ ଦ୍ରବ୍ୟଧରି ଅବସ୍ଥାନ କରନ୍ତି, ରତ୍ନରେଖାଙ୍କ ବାମରେ କଳ୍ୟାଦେବୀ ଶ୍ୱେତ ଦ୍ରବ୍ୟମାନ ଧରି ରହନ୍ତି । ଏମାନେ ସମସ୍ତେ ଶ୍ରୀ ଓ ଭୂଙ୍କ ଆଜ୍ଞାରେ ବିଭିନ୍ନ ସଙ୍ଗୀତ ଓ ବାଦ୍ୟ ପରିବେଷଣ କରି ରାଧାକୃଷ୍ଣଙ୍କ ଚିତ୍ତବିନୋଦନ କରନ୍ତି । ଷୋଡଶ ଦଳରେ ଷୋଡଶ ସଖୀ ଷୋଳ ସହସ୍ର ଅନୁଚରୀ ସେହିଭଳି ନୃତ୍ୟଗୀତାଦି ଦ୍ୱାରା ରାଧାକୃଷ୍ଣଙ୍କର ସେବା କରୁଥିବା କବି ପ୍ରକାଶ କରିଛନ୍ତି । ଏହା ହେଉଛି ଯନ୍ତ୍ରରାଜ ଓ ମନ୍ତ୍ର ଷୋଡଶାକ୍ଷର, ମନ୍ତ୍ର ସ୍ଥାପିତ ମନ୍ତ୍ର ମଧ୍ୟରେ ରାଧାକୃଷ୍ଣଙ୍କ ରାସ କଳ୍ପନାକୁ କବି ପ୍ରକାଶ କରି କହିଛନ୍ତି—

"ଷଟ୍‌କୋଣ ପଲଙ୍କ ମଧ୍ୟରେ । ଶ୍ରୀକୃଷ୍ଣ ପଦ୍ମର କେଶରେ ।
କାମବୀଜର ମଧ୍ୟେ ହରି । ଶ୍ରୀରାଧା ଅଙ୍ଗରେ ବିହରି ।।
ଶ୍ରୀଗୁରୁ ଯେଉଁଠାରେ କହନ୍ତି । ଆନରେ ଗମି ନ ପାରନ୍ତି ।।
ତୋତେ କହିବା ତାହା ସାର । ଯେ କାମ ବୀଜର ବିସ୍ତାର ।।
କ୍ଲୀଂ କାମ ବୀଜଟି ଏ ପାର୍ଥ । ପଞ୍ଚମ ଆତ୍ମାରେ ଏ ତତ୍ତ୍ୱ ।।
କ କାର ଲ କାର ଈ କାର । ମାତ୍ରା ବିନ୍ଦୁରେ ପଞ୍ଚପୁର ।।
ସେହି ବିନ୍ଦୁ ମଧ୍ୟେ ନିରଞ୍ଜନ । ଶ୍ରୀରାଧା ହୃଦରେ ଗୋପ୍ୟାନ ।।"

ହ୍ରୀଂ, କ୍ଲୀଂ, ଶ୍ରୀଂ— ଏହି ତିନିବୀଜ ସହିତ ରାଧାକୃଷ୍ଣଙ୍କୁ ସଂଯୁକ୍ତ କରିବାକୁ ଯାଇ କବି ଯଶୋବନ୍ତ ଲେଖିଛନ୍ତି—ମହାଶୂନ୍ୟରୁ ପ୍ରଥମେ ଗଗନ, ତାପରେ ଜଳ ଓ ତାପରେ ଆଦିମୂଳ ଜନ୍ମଲାଭ କରି ଗୋଲକରେ କ୍ଲୀଂ ବୀଜରୂପେ ରହିଲେ । କ୍ଲୀଂ ବୀଜ ବା କାମବୀଜ ହେଉଛନ୍ତି କୃଷ୍ଣ । କ୍ଲୀଂ ବୀଜଠାରୁ ଶ୍ଲୀଂ (ଶ୍ରୀଂ) ବୀଜ ବା ପ୍ରକୃତି ରୂପିଣୀ ରାଧା ଜନ୍ମଲାଭ କଲେ । କ୍ଲୀଂ ବୀଜ ହେଉଛି ପିତାର ବୀର୍ଯ୍ୟ ଓ ଶ୍ରୀ ବୀଜ ହେଉଛି ମାତାର ରଜ । ସେଥି ପାଇଁ ରାଧାକୃଷ୍ଣ

ସମସ୍ତଙ୍କର ଜନ୍ମଦାତା ଅଟନ୍ତି । କ୍ଲୀଂ ବୀଜ ଓ ଶ୍ରୀଂ ବୀଜ ଯୁଗଳ ରୂପରେ ଅବସ୍ଥାନ କରିବାରୁ ତାଙ୍କଠାରୁ ହ୍ରୀଂ ବୀଜ ବା ଲଜ୍ଜାବୀଜ ଜାତହେଲା । ହ୍ରୀଂ ବୀଜ ଅନନ୍ତ ବା ବିରାଟ ରୂପରେ ରାଧାକୃଷ୍ଣଙ୍କ ମସ୍ତକରେ ଧାରଣ କରି ଅଧୋମୁଖରେ ରହିବାରୁ ଲଜ୍ଜାଅଙ୍ଗ ଧାରଣ କରନ୍ତି, ବିରାଟଙ୍କ ଅଙ୍ଗରୁ ଜୀବଜାତ ହୋଇଥିବାରୁ ହ୍ରୀଂ ବୀଜ ଜୀବରୂପୀ ଅଟେ । ସେଥିପାଇଁ ହ୍ରୀଂ ବୀଜକୁ ଜୀବରୂପୀ ଚନ୍ଦ୍ରାବଳୀ ମଧ୍ୟ କୁହାଯାଏ । ତନ୍ତ୍ରମତରେ କ୍ଲୀଂ, ଶ୍ରୀଂ, ହ୍ରୀଂକୁ ଦୁଇଟି ବିପରୀତମୁଖୀ ତ୍ରିକୋଣରେ ସ୍ଥାପନକଲେ ଷଟ୍‌କୋଣ ସୃଷ୍ଟି ହୁଏ । କବି ତାହାକୁ ପ୍ରେମଦାମ ବୋଲି କହିଛନ୍ତି । ଏହା ପ୍ରେମ ପଲଙ୍କ ଅଟେ । ଏହି ପଲଙ୍କର ଷଟ୍ କୋଣରେ ବୃନ୍ଦାବତୀ, ଚନ୍ଦ୍ରରେଖା, ଲୀଳାବତୀ, ସୁଭଦ୍ରା ଓ ପ୍ରିୟାବତୀ—ଏହିପରି ଷଡସଖୀ ଅବସ୍ଥାନ କରି ନିତ୍ୟ ରାଧାକୃଷ୍ଣଙ୍କର ସେବା କରୁଛନ୍ତି । ( ପ୍ରେମଭକ୍ତି ବ୍ରହ୍ମଗୀତା )

କ୍ଲୀଂ ଶ୍ରୀଂ, ହ୍ରୀଂ, ହ୍ରୀଂ କ୍ଲୀଂ, ଶ୍ରୀଂ ଏହି ଷଡ଼ବୀଜକୁ ଷଟକୋଣ ଉତ୍ପନ୍ନ କରୁଥିବା ଦୁଇଟି ବିପରୀତମୁଖୀ ତ୍ରିକୋଣ ଯନ୍ତ୍ର ସ୍ଥାପନ କଲେ ପ୍ରେମ ଷୋଡଶୀ ମନ୍ତ୍ରରେ ରାଧାଙ୍କର ଅଙ୍ଗ ନିର୍ମାଣ ହୋଇଛି ଏବଂ କୃଷ୍ଣ ତାହା ମଧ୍ୟରେ ପ୍ରେମରେ ମଗ୍ନ ରହିଛନ୍ତି । ପ୍ରେମ ଶୋଡଶୀ ମନ୍ତ୍ରକୁ ଜାଣିଲେ ପ୍ରେମ ଭକ୍ତି ଲଭିହୁଏ ଏବଂ ଏହି ପ୍ରେମ ଭକ୍ତିଦ୍ୱାରା ରାଧାକୃଷ୍ଣ ଅର୍ଚ୍ଚନା କରାଯାଏ । ( ପ୍ରେ. ଭ. ବ୍ର. ଗୀ, ତୃତୀୟ ଅଧ୍ୟାୟ )

କବି ଅଚ୍ୟୁତା ନନ୍ଦ ତାଙ୍କର 'ଗୁରୁଭକ୍ତି ଗୀତା'ରେ ରାଧାକୃଷ୍ଣଙ୍କୁ ଶ୍ରୀଂ ବୀଜ ଓ କ୍ଲୀଂ ବୀଜ ମଧ୍ୟରେ ଉଲ୍ଲେଖ କରିଅଛନ୍ତି । ( ୩ । ୩୫ ) ଅତିବଡ଼ୀ ଜଗନ୍ନାଥ ଦାସ ସମ୍ପ୍ରଦାୟର କବି ଦିବାକର ଦାସ 'ଜଗନ୍ନାଥ ଚରିତାମୃତ' ଗ୍ରନ୍ଥରେ ମଧ୍ୟ ହ୍ରୀଂ, ଶବ୍ଦରାଧା ଓ କ୍ଲୀଂ ଶବ୍ଦ କୃଷ୍ଣ ବୋଲି କହିଛନ୍ତି । (୪, ୬୧ ) ଅଚ୍ୟୁତାନନ୍ଦଙ୍କ ଶିଷ୍ୟ ପରମ୍ପରାରେ ମଧ୍ୟ ଏ ପ୍ରକାର କଳ୍ପନା ସୁଲଭ ହୋଇଥାଏ । କବି ଶିବସ୍ୱା ଦାସ 'ମନ୍ମଥ ଚନ୍ଦ୍ରିକା' ଗ୍ରନ୍ଥରେ ରାଧାଙ୍କୁ ଶ୍ରୀଂ ବୀଜ ଓ କୃଷ୍ଣଙ୍କୁ କ୍ଲୀଂ ବୀଜ ରୂପେ ଗ୍ରହଣ କରି ଅଛନ୍ତି । ଈଶ୍ୱର ଦାସ ଶ୍ରୀରାଧାଙ୍କ ବିଷୟରେ ବର୍ଣ୍ଣନା କଲାବେଳେ ହ୍ରୀଂ, କ୍ଲୀଂ ଶ୍ରୀଂ ବୀଜ ମଧ୍ୟରୁ ରାଧାଙ୍କୁ ଶ୍ରୀଂ ବୀଜ ବୋଲି କହି ଅଛନ୍ତି ।

( ଚୈତନ୍ୟ ଭାଗବତ,- ଏକପଞ୍ଚ ତ ଅଧ୍ୟାୟ )

ଶ୍ରୀଂ ଓ କ୍ଲୀଂ ବୀଜ ମନ୍ତ୍ର ମଧ୍ୟରେ ରାଧାକୃଷ୍ଣଙ୍କୁ ନିର୍ଦ୍ଦେଶ କଲାଭଳି ଜ୍ଞାନମିଶ୍ରା ଭକ୍ତ ସାଧକମାନେ ହରେ କୃଷ୍ଣ ରାମ ମନ୍ତ୍ର ମଧ୍ୟରେ ମଧ୍ୟ ରାଧାକୃଷ୍ଣଙ୍କର ଅନୁସନ୍ଧାନ କରି ତାହାର ତାତ୍ତ୍ୱିକ ବର୍ଣ୍ଣନା ସ୍ୱଗ୍ରନ୍ଥ ମଧ୍ୟରେ ପ୍ରତିପାଦନ କରି

ଅଛନ୍ତି । କବି ଯଶୋବନ୍ତ ଦାସ 'ହରେ, କୃଷ୍ଣ ରାମ''—ଏହି ଷଡ଼କ୍ଷର ମନ୍ତ୍ରକୁ ରାଧାକୃଷ୍ଣଙ୍କର ଷଡ଼କୋଣ ବିଶିଷ୍ଟ ପ୍ରେମଶଯ୍ୟା ବୋଲି ଅଭିହିତ କରି ବୃନ୍ଦାବତୀଙ୍କୁ ସେହି ଶଯ୍ୟାର ଅଧିଷ୍ଠାତ୍ରୀ ଦେବୀ ରୂପେ କଳ୍ପନା କରିଅଛନ୍ତି । "ହରେକୃଷ୍ଣ ହରେ ରାମ'' ମହାମନ୍ତ୍ରର ଏହି ଅଷ୍ଟାକ୍ଷରକୁ ସେ ଅଷ୍ଟପାଟବଂଶୀ ଓ ଅଷ୍ଟଗୋପୀ ଭାବେ ଗ୍ରହଣ କରିଛନ୍ତି । ( ପ୍ରେମଭକ୍ତି ବ୍ରହ୍ମଗୀତା ) କବି ଅଚ୍ୟୁତାନନ୍ଦ ମଧ୍ୟ 'ଶୂନ୍ୟ ସଂହିତା' ଗ୍ରନ୍ଥରେ ଏ ପ୍ରକାର ମତର ଉପସ୍ଥାପନା କରିଛନ୍ତି । ସେ ହରେ ରାମ କୃଷ୍ଣ' ଆଦି ମହାମନ୍ତ୍ର ମଧ୍ୟରୁ, 'ହ' ଅକ୍ଷରକୁ କୃଷ୍ଣ ଓ 'ର' ଅକ୍ଷରକୁ ରାଧା ବୋଲି କହି କେବଳ 'ର' ଅକ୍ଷର ମଧ୍ୟରେ ରାଧାକୃଷ୍ଣ ଗୋପ୍ୟ ହୋଇ ରହିଥିବା ପ୍ରମାଣ କରିଛନ୍ତି । ( ତୃତୀୟ ଅଧ୍ୟାୟ ) ଶିଶୁ ଅନନ୍ତ ଏ ପ୍ରକାର ମତର ଉପସ୍ଥାପନାରେ 'ହରେ ରାମ କୃଷ୍ଣ' ମହାମନ୍ତ୍ରରୁ 'ହରେ' ଅର୍ଥ ଦୂତୀ, 'ରାମ' ଅର୍ଥ ରାଧା ଓ 'କୃଷ୍ଣ' ଅର୍ଥ ତୃଷ୍ଣ ବୋଲି କହିଛନ୍ତି । ପୁନଶ୍ଚ ସେ ଦୂତୀକୁ ପାଦ, ରାଧାଙ୍କୁ ଅମଣିଷା ଓ ହରିପୁରଙ୍କୁ ନୈବେଦ୍ୟ ରୂପେ ଅଭିହିତ କରିଛନ୍ତି ।

( ହେତୁ ଉଦୟ ଭାଗବତ )

'ରାମ' ଶବ୍ଦର ତାତ୍ତ୍ୱିକ ବ୍ୟାଖ୍ୟା କରିବାକୁ ଯାଇ ଏହି ମାର୍ଗର ସାଧକମାନେ ତନ୍ମଧ୍ୟରେ ରାଧାକୃଷ୍ଣଙ୍କୁ ଅନ୍ୱେଷଣ କରିଛନ୍ତି । ପଞ୍ଚସଖା ତଥା ତାଙ୍କର ଶିଷ୍ୟ ପ୍ରଶିଷ୍ୟ ପରମ୍ପରାର କବିମାନେ ଏ କଥାକୁ ତାଙ୍କର ରଚନା ମଧ୍ୟରେ ପ୍ରତିପାଦିତ କରିଅଛନ୍ତି । ପଞ୍ଚସଖାଯୁଗର ବୟୋଜ୍ୟେଷ୍ଠ କବି ବଳରାମ ଦାସ "ଜ୍ଞାନ ଉଜ୍ଜ୍ୱଳ ନୀଳମଣି ଗୀତା''ରେ ରାମଶବ୍ଦକୁ 'ରା' ଓ 'ମ' ବା 'ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ ଭାବେ ଗ୍ରହଣ କରିଅଛନ୍ତି । ତାଙ୍କର ଅନ୍ୟ ଏକଗ୍ରନ୍ଥ "ବ୍ରହ୍ମାଣ୍ଡ ଭୂଗୋଳରେ ଏହି ତତ୍ତ୍ୱର ବିସ୍ତୃତ ଆଲୋଚନା କରାଯାଇଛି । ଏଥିରେ ସେ ଲେଖିଛନ୍ତି—

"ମୂଳଶୂନ୍ୟ ଶବ୍ଦ ଶୁଭଇ
ରଥିକା ର ଆ ଶବ୍ଦ ହୋଇ ।''

( ୭୫ ଅଧ୍ୟାୟ )

ଏହି ର ଆ ଧ୍ୱନି ବା ରାଧାଙ୍କଠାରୁ 'ମ' ଧ୍ୱନି ବା କୃଷ୍ଣ ଜନ୍ମ ହୋଇଥିବା କଥା ସେ ଏହି ଗ୍ରନ୍ଥର ଦ୍ୱିଷଷ୍ଠୀତମ ଅଧ୍ୟାୟରେ ଉଲ୍ଲେଖ କରିଛନ୍ତି । ଜଗନ୍ନାଥ ଦାସ ମଧ୍ଯ ତାଙ୍କର 'ଇଶ୍ୱର ଗୀତା' ନାମକ ଏକ ଗ୍ରନ୍ଥରେ ରାଧାଙ୍କ କଳ୍ପନାକୁ

ସ୍ୱରତତ୍ତ୍ୱ ଓ ମନ୍ତ୍ର ତତ୍ତ୍ୱରେ ବ୍ୟାଖ୍ୟା କରିବା କାଳରେ ରାମ ମନ୍ତ୍ରକୁ ରା ଓ ମ ତା ରାଧାକୃଷ୍ଣଙ୍କର ମିଳିତ ରୂପ ବୋଲି କହିଛନ୍ତି । ମନ୍ତ୍ରତତ୍ତ୍ୱ ମଧ୍ୟରେ ରାଧାକୃଷ୍ଣଙ୍କୁ ବୁଝାଇବାକୁ ଯାଇ କବି ଯଶୋବନ୍ତ ମଧ୍ୟ ରାମମନ୍ତ୍ରକୁ ରାଧାକୃଷ୍ଣଙ୍କର ଲୀଳାଙ୍ଗ ରୂପ ବୋଲି ସ୍ୱୀକାର କରି କହିଛନ୍ତି –

"ରା ଆ ଅକ୍ଷର ରାଧା ହୋଇ
ମ ଅ ଅକ୍ଷର କୃଷ୍ଣ ସେହି ।"

(ପ୍ରେ. ଭ: ବ୍ର. ଗୀ, ଦ୍ୱିତୀୟ ଅଧ୍ୟାୟ)

ପ୍ରଥମେ କୃଷ୍ଣ ଓ ପରେ ରାଧା ଏହି କ୍ରମରେ ରହିଲେ 'ରାମ' ଶବ୍ଦ 'ମରା'ରେ ପରିଣତ ହୁଏ ଓ ରାଧାକୃଷ୍ଣ ମରା ବା ମୁକ୍ତିଲାଭ କରନ୍ତି । ରାଧାଙ୍କୁ ପ୍ରଥମେ ରଖି ପରେ କୃଷ୍ଣଙ୍କୁ ରଖିଲେ 'ରାମ' ଶବ୍ଦ ହୁଏ ଓ ଏହି ଅବସ୍ଥାରେ ରାଧାକୃଷ୍ଣ ମୃତ ଅବସ୍ଥା ତ୍ୟାଗ କରି ଲୀଳାଙ୍ଗ ଧାରଣ କରନ୍ତି । କବି ଅନନ୍ତ ଦାସ ମଧ୍ୟ 'ହେତୁ ଉଦୟ ଭାଗବତ'ରେ ରାମ ମନ୍ତ୍ରକୁ ବିଶ୍ଳେଷଣ କରି 'ରା'କୁ ରାଧା ଓ 'ମ'କୁ କୃଷ୍ଣ ବୋଲି କହିଛନ୍ତି । ଦିବାକର ଦାସଙ୍କ 'ଜଗନ୍ନାଥ ଚରିତା ମୃତ' ଗ୍ରନ୍ଥରେ ଏ ପ୍ରକାର ମତର ଉପସ୍ଥାପନା କରାଯାଇ କୁହାଯାଇଛି—

"× × × ରାଧା ସ୍ୱରୂପ ରାମ ନାମ ।

X X X

ଯେ ରାମ ରାଧା ନାମ ସେହି, ଯେ ଭଜେ ଭକ୍ତ ସିଦ୍ଧ ହୋଇ
ରାମ ବୋଇଲେ ଯେତେ ଲଭ, ରାଧା ବୋଇଲେ ସେହି ଲାଭ

(୮ମ ଅଧ୍ୟାୟ).

ଏଠାରେ 'ରାମ' ଶବ୍ଦକୁ ରାଧା ବୋଲି ଅଭିହିତ କରାଯାଇ 'ରାମ' ଓ 'ରାଧା' ଶବ୍ଦ ମଧ୍ୟରେ କୌଣସି ପାର୍ଥକ୍ୟ ନଥିବା କଥା କୁହାଯାଇଛି ।

'ମୟୂର ଚନ୍ଦ୍ରିକା'ର କବି ଶ୍ରୀହରି ଦାସ ଏ ପ୍ରକାର ତତ୍ତ୍ୱର ବିଶଦ୍ ବର୍ଣ୍ଣନା କରି କହିଛନ୍ତି ଯେ ମୟୂର ଚନ୍ଦ୍ରିକା ମଧ୍ୟରେ ଯେଉଁ କୃଷ୍ଣବର୍ଣ୍ଣ ଦେଖାଯାଏ ତାହା ହେଉଛି ମହାଶୂନ୍ୟ । ଏହାର ଅନ୍ୟନାମ ଲରାମସ୍ତ ପୁର । ଲରାମସ୍ତର ଆଦ୍ୟ ପ୍ରାନ୍ତକୁ ତ୍ୟାଗକରି ମଧ୍ୟକୁ ରହିଲେ ରାମ ନାମ ଦେଖାଯିବ ।

ଲରାମସ୍ତ ବୋଲି ଯେ ରଚି ଅକ୍ଷର, ଦରିଇ ଆହା କ ମନୋହର
ଆଦ୍ୟ ପ୍ରାନ୍ତ ତେଜି ମଧ୍ୟକୁ ରହିଲେ ତହିଁ ଦୃଶ୍ୟ ଯେଉଁ ଦୁଇ ଅକ୍ଷର ।

ସେହି ଗୋ ନବୀନ ହୋଇ ଜୀବ ଅଗ୍ନି ଅଶେଷ ବ୍ରହ୍ମାଣ୍ଡେ ଅଛି ପୋତି
'ରାମ୍ନ ନାମ' କହି ଶୂନ୍ୟେ ଅଛି ରହି, ଆପଣେ ନାମକୁ ଆପେ ରତି ।"

( ୧୫ ଚନ୍ଦ୍ରିକା, ପୃ ୩୨ )

ଏଠାରେ 'ରାମ' ନାମର 'ରା' ହେଉଛନ୍ତି ରାଧା ଓ 'ମ' ହେଉଛନ୍ତି କୃଷ୍ଣ । ମୟୂର ଚନ୍ଦ୍ରିକାର ମଧ୍ୟ ବିନ୍ଦୁଠାରେ ଯେଉଁ ଧଳା ଓ କଳା ରଙ୍ଗ ଦେଖାଯାଏ, ସେଥିରେ ଧଳା ବର୍ଣ୍ଣ ହେଉଛି 'ର' ବା ରାଧା ଓ କୃଷ୍ଣ ବର୍ଣ୍ଣ ହେଉଛି 'ମ' ବା କୃଷ୍ଣ । 'ର' ମଧ୍ୟରେ 'ଧା' ବର୍ଣ୍ଣ ଲୁଚି ରହିଛି । 'ରାଧା' ଶବ୍ଦର ବିଶ୍ଳେଷଣ କରି କବି କହିଛନ୍ତି—

"(ରା) ପ୍ରକୃତିରୁ (ଧା) ପ୍ରକାଶିଛି ପରମ ମନ୍ଦିରେ ବାସ ତାର ।"

( ଷୋଡଶ ଚନ୍ଦ୍ରିକା, ପୃ ୩୫ )

ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ଆବିର୍ଭୂତ ଦ୍ୱିତୀୟ ବଳରାମ ଦାସ "କୃଷ୍ଣଗର୍ଭ ଗୀତା"ରେ ରାମ'ନାମକୁ ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ ( ର-ରାଧା-, ମ-କୃଷ୍ଣ ) ରୂପେ ବର୍ଣ୍ଣନା କରିଛନ୍ତି ।

ବିଭିନ୍ନ ମନ୍ତ୍ର-ଯନ୍ତ୍ର, ଓ ହରେ, କୃଷ୍ଣ, ରାମ ପ୍ରଭୃତି ମନ୍ତ୍ର ମଧ୍ୟରେ ରାଧାକୃଷ୍ଣଙ୍କ ଅବସ୍ଥିତି ସ୍ୱୀକୃତିବା ଭଳି ଜ୍ଞାନମିଶ୍ରା ଭକ୍ତ ପରମେଶ୍ୱର କବିମାନେ ଓଁ ଅକ୍ଷର ମଧ୍ୟରେ ମଧ୍ୟ ରାଧାକୃଷ୍ଣଙ୍କ ଯୁଗଳଙ୍କ ରୂପକୁ ଉପଲବ୍ଧ କରିପାରିଛନ୍ତି । ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ଏହାର ଦୃଷ୍ଟାନ୍ତ ବହୁଧା ପରିଲକ୍ଷିତ ହୋଇଥାଏ । କବି ନାପିତ ବିଲୋଚନଙ୍କ 'ଗୋବିନ୍ଦଗୀତା'ରେ 'ରାଧା'ଙ୍କୁ ଓଁ କାର ରୂପେ ଗ୍ରହଣ କରାଯାଇ ତାଙ୍କୁ ଜୀବ ଭାବେ ଅଭିହିତ କରାଯାଇଛି । ଯଥା—

"ରାଧା ଯେ ଓଁ କାର ଜୀବସ୍ୱରୂପୀ"

କବି ଯଶୋବନ୍ତଙ୍କ 'ପ୍ରେମଭକ୍ତି ବ୍ରହ୍ମଗୀତା'ର ସୃଷ୍ଟିତତ୍ତ୍ୱ ତଥା ରାଧାକୃଷ୍ଣ ତତ୍ତ୍ୱର ବର୍ଣ୍ଣନା ସ୍ଥଳରେ ଯେଉଁ ଓଁ କାର ଉପରେ ଅବସ୍ଥାନ କରି ଯୋଗମାୟା ସୃଷ୍ଟି କରିବା କଥା କୁହାଯାଇଛି, ସେହି ଓଁ କାର ଉପରେ ଥିବା ଅର୍ଦ୍ଧମାତ୍ରା ଉପରେ ଥିବା ବିନ୍ଦୁ ହେଉଛନ୍ତି ରାଧାକୃଷ୍ଣଙ୍କର ଅବିଚ୍ଛେଦ୍ୟ ଯୁଗ୍ମ ରୂପ । ଅଚ୍ୟୁତାନନ୍ଦଙ୍କ 'ଠୁଲଣୂନ୍ୟ ରାସ'ରେ ରାଧା ଏବଂ କୃଷ୍ଣଙ୍କର ଦ୍ୟୁତଖେଳ ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି । ଏଥିରେ ସଖୀମାନେ ରାଧାଙ୍କୁ ଓଁ କାରର ଅର୍ଦ୍ଧ-ଚନ୍ଦ୍ର ଓ କୃଷ୍ଣଙ୍କୁ ଏହା ଉପରର ବିନ୍ଦୁ ରୂପେ ବର୍ଣ୍ଣନା କରିଅଛନ୍ତି । କବି

ଶ୍ରୀହରି ଦାସଙ୍କ 'ମୟୂର ଚନ୍ଦ୍ରିକା'ରେ ସୃଷ୍ଟିତତ୍ତ୍ୱ ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି କୃଷ୍ଣଙ୍କ ଦେହରୁ ଯେଉଁ ମହାଜ୍ୟୋତି ସ୍ଫୁରିତ ହେଲା, ସେଥିରୁ ଶ୍ୱେତ, କୃଷ୍ଣ, ପୀତ ଓ ଲୋହିତ —ଏହି ଚାରି ରଙ୍ଗର ବିକାଶ ହେଲା । ଉକ୍ତ ଚାରି ବର୍ଣ୍ଣ ମଧ୍ୟରୁ ଦୁଇ ବର୍ଣ୍ଣ ରାଧାଙ୍କଠାରେ ଓ ଦୁଇବର୍ଣ୍ଣ କୃଷ୍ଣଙ୍କଠାରେ ରହିଲେ ପୁଣି ରାଧାକୃଷ୍ଣ ଅଭେଦ କାୟା ଅଟନ୍ତି । ଏହି ଅଭେଦ କାୟା ବେଦରେ ଓଁ ରୂପେ ଖ୍ୟାତ । ଏ କଥାକୁ କବି ପ୍ରକାଶ କରି କହିଛନ୍ତି—

"ଚାରିବର୍ଣ୍ଣ ଅଟେ ଶ୍ରୀକୃଷ୍ଣ କାନ୍ତି । ସତ୍ତ୍ୱଗୁଣରୁ ତାହାର ଉତ୍ପତ୍ତି ॥
ଦୁଇ ରାଧା ଦୁଇ ମାଧବଠାରେ । ପ୍ରକାଶିଛୁ ବର୍ଣ୍ଣ ସତ୍ତ୍ୱ ଭାବରେ ॥
କିନ୍ତୁ ସେ ଏକ ହିଁ ବର୍ଣ୍ଣରୁ ଜାତ । ଓଁ କାର ବ୍ରହ୍ମଯା ବେଦେ ବ୍ୟକତ ॥
ଏଣୁ ରାଧାକୃଷ୍ଣ ଅଭେଦ କାୟା । ଅଭେଦ ପୀରତି ଅଭେଦ ମାୟା ॥"
( ଚତୁର୍ଦ୍ଦଶ ଚନ୍ଦ୍ରିକା, ପୃ ୨୯ )

ଏହିପରି ଭାବରେ ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତିମାର୍ଗର ଉପାସକମାନେ ରାଧାକୃଷ୍ଣ ଯୁଗଳ ତତ୍ତ୍ୱକୁ ବିଭିନ୍ନ ଯନ୍ତ୍ର ମନ୍ତ୍ର ତଥା ଶ୍ରୀଂ, କ୍ଲୀଂ ବୀଜ ମଧ୍ୟରେ, 'ହରେ କୃଷ୍ଣ ରାମ' ମନ୍ତ୍ର ମଧ୍ୟରେ ଏବଂ ଓଁ ଅକ୍ଷର ମଧ୍ୟରେ ନିରୂପିତ କରି ରାଧାକୃଷ୍ଣ କଳ୍ପନା ମଧ୍ୟରେ ଥିବା ଶୃଙ୍ଗାରିକତାର କାଳିମା ମଧ୍ୟରେ ଏକ ଶୁଦ୍ଧ ଓ ଶୁକ୍ଳଜ୍ୟୋତିର ସନ୍ଧାନ କରିପାରିଥିଲେ । ଏହାହିଁ ଥିଲା ଏହି ସାଧକମାନଙ୍କର ସାଧନାର ସିଦ୍ଧି ।

## ଶ୍ରୀଜଗନ୍ନାଥଙ୍କଠାରେ ରାଧାକୃଷ୍ଣ ଓ ରାସସ୍ଥଳ ପୁରୁଷୋତ୍ତମ—

ଶୁଦ୍ଧାମାର୍ଗୀ ଏବଂ ଜ୍ଞାନମାର୍ଗୀ ବୈଷ୍ଣବମାନଙ୍କ ମଧ୍ୟରେ ଯେଉଁ କେତେକ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ, ସେଗୁଡ଼ିକ ମଧ୍ୟରେ ଇଷ୍ଟ ଓ କ୍ଷେତ୍ରଗତ ପାର୍ଥକ୍ୟ ଏକ ମୁଖ୍ୟ ବିଷୟ । ଶୁଦ୍ଧାମାର୍ଗ ଭକ୍ତି ପରମ୍ପରାରେ କୃଷ୍ଣ ମୁଖ୍ୟ ଆରାଧ୍ୟ ଦେବତା ହୋଇଥିବା ବେଳେ ଜ୍ଞାନମାର୍ଗ ଭକ୍ତିର ଉପାସକମାନେ ଶ୍ରୀଜଗନ୍ନାଥଙ୍କୁ ମୁଖ୍ୟ ଆରାଧ୍ୟ ଇଷ୍ଟଭାବେ ଗ୍ରହଣ କରିଥାନ୍ତି ସେହିଭଳି ଶୁଦ୍ଧାମାର୍ଗୀ ବୈଷ୍ଣବମାନଙ୍କ ଦୃଷ୍ଟିରେ ବୃନ୍ଦାବନ ଶ୍ରେଷ୍ଠ ତଥା ନିତ୍ୟ ଧାମ ହୋଇଥିବା ବେଳେ ଜ୍ଞାନମାର୍ଗୀ ବୈଷ୍ଣବମାନେ ପୁରୁଷୋତ୍ତମ କ୍ଷେତ୍ରକୁ ଶ୍ରେଷ୍ଠ ତଥା ନିତ୍ୟ ଧାମ ଭାବେ ଗୁରୁତ୍ୱ ଦେଇଥାନ୍ତି । କିନ୍ତୁ ଜ୍ଞାନମାର୍ଗର ଉପାସକମାନେ ଯୋଗ ମଧ୍ୟରେ ଯେଉଁଭଳି ରାଧାକୃଷ୍ଣଙ୍କର ପରିକଳ୍ପନା କରିଛନ୍ତି, ସେହିପରି ଆରାଧ୍ୟ ଦେବ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ମଧ୍ୟରେ ସେମାନେ ମଧ୍ୟ ରାଧାକୃଷ୍ଣଙ୍କ ଅସ୍ତିତ୍ୱକୁ ଅନୁସନ୍ଧାନ କରିବା ସଙ୍ଗେ ସଙ୍ଗେ ପୁରୁଷୋତ୍ତମ କ୍ଷେତ୍ରକୁ ନିତ୍ୟ ରାସସ୍ଥଳ ଭାବେ ବର୍ଣ୍ଣନା କରିଅଛନ୍ତି ।

ଜ୍ଞାନମିଶ୍ରା ଭକ୍ତି ସାହିତ୍ୟକୁ ଅନୁଧ୍ୟାନ କଲେ ଏ ପ୍ରକାର ବର୍ଣ୍ଣନାର ଚମତ୍କାରିତା ଲକ୍ଷ୍ୟ କରିହୁଏ । ଏହି ପରମେଶ୍ୱର ସାଧକମାନେ କଳ୍ପିତ ବୃନ୍ଦାବନ ବିଭିନ୍ନ ବସ୍ତୁକୁ ତଥା ରାଧା କୃଷ୍ଣଙ୍କ ଅସ୍ତିତ୍ୱ ଓ ସେମାନଙ୍କର ଲୀଳା ବିଳାସକୁ କିପରି ଶ୍ରୀଜଗନ୍ନାଥଙ୍କଠାରେ ଓ ପୁରୁଷୋତ୍ତମ କ୍ଷେତ୍ର ମଧ୍ୟରେ ଏକୀଭୂତ କରିଛନ୍ତି, ତାହା ବର୍ତ୍ତମାନ ଦେଖିବାର କଥା ।

ସମସ୍ତ ତତ୍ତ୍ୱ ଓ ରୂପକୁ ଓଡ଼ିଶାର ପଞ୍ଚସଖା ଗୋଷ୍ଠୀ ଓଡ଼ିଶାର ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କ ବିଶାଳ ତନୁରେ ଚିହ୍ନିତ କରୁଥିଲେ । ଶ୍ରୀଜଗନ୍ନାଥ ସେମାନଙ୍କ ଦୃଷ୍ଟିରେ ଥିଲେ ନିତ୍ୟଶୁଦ୍ଧ ଜ୍ୟୋତିର୍ମୟ ପରଂବ୍ରହ୍ମ ଓ ସମସ୍ତ ଜଗତର ମୂଳାଧାର । ତେଣୁ ପଞ୍ଚସଖାଗଣ ନିତାଗତ ରାଧାକୃଷ୍ଣ ତତ୍ତ୍ୱକୁ ଶ୍ରୀଜଗନ୍ନାଥଙ୍କଠାରେ ରୂପାୟିତ କରିବାରେ ସଚେଷ୍ଟ ଥିଲେ ଓ ତାହା ତାଙ୍କର ପରବର୍ତ୍ତୀ ଶିଷ୍ୟ ପ୍ରଶିଷ୍ୟ ପରମ୍ପରରେ ମଧ୍ୟ ରୂପ ନେଇଥିଲା । କବି ବଳରାମ ଦାସ 'ବେଦାନ୍ତସାର ଗୁପ୍ତଗୀତା'ର ଏକାଦଶ ଅଧ୍ୟାୟରେ ଲେଖିଛନ୍ତି—ଶ୍ରୀକ୍ଷେତ୍ର ହେଉଛି ନିତ୍ୟ ବୃନ୍ଦାବନର । ବଳଦେବ ହେଉଛନ୍ତି ଅନନ୍ତ ବା ଶେଷଦେବ । ସୁଭଦ୍ରା ହେଉଛନ୍ତି ପ୍ରେମରୂପା ଏବଂ ସ୍ୱୟଂ ଶ୍ରୀଜଗନ୍ନାଥ ହେଉଛନ୍ତି ରାଧାକୃଷ୍ଣଙ୍କର ମିଳିତ ରୂପ ।

"ଯାବେ ଲେ ଜଗତ ସୋଦର । ଯେ ରାଧାକୃଷ୍ଣ କଳେବର ।
ଅଭିନ୍ନ ଅଙ୍ଗ ସେ ଅଟଇ । ଶ୍ରୀରାଧାକୃଷ୍ଣ ରୂପ ଦୁଇ ।"

ଶ୍ରୀଜଗନ୍ନାଥଙ୍କ ବିଗ୍ରହର ଶୁଭ୍ରଅଙ୍ଗ ଶ୍ରୀରାଧା ଏବଂ କୃଷ୍ଣ ହେଉଛନ୍ତି ଶ୍ରୀକୃଷ୍ଣ ଏବଂ ନୀଳାଦ୍ରି ହେଉଛି ନିତ୍ୟରାସସ୍ଥଳ । ଶ୍ରୀଜଗନ୍ନାଥଙ୍କ ମନ୍ଦିର ବେଢ଼ାରେ ଥିବା ବିଭିନ୍ନ ଦେବୀଙ୍କୁ କବି ବିଭିନ୍ନ ସଖୀ ରୂପରେ ଚିହ୍ନିତ କରିଅଛନ୍ତି । କବିଙ୍କ ମତରେ ଗୁଣ୍ଡିଚା ନଗର ହେଉଛି ଗୋପପୁର ବା ବିରହ ବୃନ୍ଦାବନ । ଏଠାରେ ଶ୍ରୀକୃଷ୍ଣ ଗୁପ୍ତ ରାସକେଳି କରନ୍ତି । ଏକାଦଶ ଅଧ୍ୟାୟରେ କବି ପୁନଶ୍ଚ କହିଛନ୍ତି ଯେ ଅର୍ଜ୍ଜୁନ ନିତ୍ୟ ସ୍ଥଳରେ ପ୍ରବେଶ କରିବାକୁ ଗଲାବେଳେ ବୃନ୍ଦାବତୀଙ୍କ ଦ୍ୱାରା ନିଷିଦ୍ଧ ହୋଇ ଦୂରରୁ ରାଧାକୃଷ୍ଣ ଲୀଳା ଦେଖିଲେ । ତଥାପି ସୁଦ୍ଧା ରାଧାକୃଷ୍ଣଙ୍କର ଜ୍ୟୋତିର୍ମୟ ରୂପ ଦର୍ଶନ ତାଙ୍କ ପକ୍ଷରେ ଅସହ୍ୟ ହେବାରୁ ସେ ମୂର୍ଚ୍ଛିତା ହୋଇ ପଡ଼ିଲେ ।

ଶ୍ରୀଜଗନ୍ନାଥଙ୍କଠାରେ ରାଧାକୃଷ୍ଣଙ୍କର ଅଭିନ୍ନ ରୂପ ସନ୍ଦର୍ଶନ କରି କବି ଜଗନ୍ନାଥ ଦାସ ତାଙ୍କର 'ଷୋଳ ଚଉପଦୀ'ରେ ଏହାର ବିସ୍ତୃତ ବର୍ଣ୍ଣନା ପ୍ରଦାନ କରିଅଛନ୍ତି । କବି ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ଅଭିନ୍ନ ଲୀଳାମୟ ରୂପେ ବର୍ଣ୍ଣନା କରି ଲେଖିଛନ୍ତି—

"ଶ୍ରୀଜଗନ୍ନାଥ ମୂରତି ପର୍ମ ବ୍ରହ୍ମ ତତ୍ୱଜ୍ୟୋତି
ସ୍ୱେମନ୍ତ ପୁରରେ ରାଧାକୃଷ୍ଣ ବିଳାସେ
ବେଢ଼ନ ପଞ୍ଚ ଆବରଣ ସ୍ୱେକ ଦ୍ୱେକ ଦ୍ୱିଗୁଣ
ଷଟ୍‌କୋଣ ପ୍ରେମଶଯ୍ୟାରେ ପ୍ରେମ ବିଳାସେ"

ଶ୍ରୀଜଗନ୍ନାଥଙ୍କ ଚକା ବଇଠିଠାରୁ ହସ୍ତ ପର୍ଯ୍ୟନ୍ତ ଅଙ୍ଗକୁ ଶ୍ରୀରାଧା ଏବଂ ହସ୍ତଠାରୁ ଊର୍ଦ୍ଧ୍ୱ ଅଂଶକୁ କବି ଶ୍ରୀକୃଷ୍ଣ ରୂପେ ଚିହ୍ନିତ କରିଛନ୍ତି । ରାଧାକୃଷ୍ଣଙ୍କର ମିଳିତ ରୂପ ଶ୍ରୀଜଗନ୍ନାଥଙ୍କଠାରେ କିପରି ମୂର୍ତ୍ତିମନ୍ତ ହୋଇଛି, ତାହା ନିମ୍ନୋକ୍ତ ଉକ୍ତିରୁ ସ୍ପଷ୍ଟ ହେବ ।

ରାଧାକୃଷ୍ଣ ଯେକ ହୋଇଣ ସୁଖେ ଲୀଳା କରନ୍ତି
କି ଉପମା ଦେବି ଶ୍ରୀମୁଖ ଯହିଁ ବଚନ ନାହିଁ
ସିଂହାସନ ପରେ ବଇଠି ଯୋଗମାୟା ସେଠାଇ ।
ପ୍ରଭୁପାଦ ବଇଠି କଟିଯାଏ ମୁଖ କେ କହିପାରୁ
ବେଣୀକୁଚ ଘଞ୍ଚି ଲୁଚିଛି ପ୍ରେମେ ଯେ ମହାମେରୁ ।
ରାଧାମୁଖ ପଙ୍କଜ ରସ ପାନେ କୃଷ୍ଣମୁଖ ଲୁଚିଛି
ନାସାଶ୍ରବଣ କପୋଳାଦି କିଛି ବାରି ନୋହୁଛି ।
ସହଜେ ଲୁଚିଛି ଶ୍ରୀଭୁଜ କୋଳାଗତ ଲମ୍ପଟେ
ଜଗନ୍ନାଥ ଦାସ ଭେଟିଛି ସନ୍ଥଜନଙ୍କ ବାଟେ ।"

'ପଦ୍ମ ବନ ରାସ' ନାମକ ଏକ ଗ୍ରନ୍ଥରେ କବି ଯଶୋବନ୍ତ ଦାସ ରାଧା, ଲକ୍ଷ୍ମୀ ଓ ସୁଭଦ୍ରାଙ୍କୁ ଏକ ରୂପରେ ରମାବୀଜରେ ଅନୁଭବ କରିବାକୁ କହିଛନ୍ତି । ଜଗନ୍ନାଥ କାମ ବୀଜ ରୂପେ ରମାବୀଜଙ୍କ ସହିତ ଲୀଳା କରୁଥିବା କବି ଏଥିରେ ପ୍ରକାଶ କରିଛନ୍ତି । ପୁନଶ୍ଚ ସେ କହିଛନ୍ତି କଳ୍ପବଟ ମୂଳରେ ମଣିବେଦିକା ଉପରେ କୃଷ୍ଣ ତ୍ରିଭଙ୍ଗୀ ଠାଣିରେ ମୁରଲୀ ବଜାଉ ଅଛନ୍ତି । ସେଠାରେ ରାଧ କୃଷ୍ଣଙ୍କୁ ନିରୀକ୍ଷଣ କରି ରହିଛନ୍ତି । ଏମାନେ କ୍ଷଣେ ହେଲେ ଅନ୍ତର ହୁଅନ୍ତି ନାହିଁ । ଦୁହେଁ ଏକ ହୋଇ ନୀଳାଚଳରେ ଜଗନ୍ନାଥ ରୂପେ ଶୋଭା ପାଉଛନ୍ତି ।

'ପ୍ରେମଭକ୍ତି ବ୍ରହ୍ମଗୀତା'ରେ ମଧ୍ୟ କବି ଯଶୋବନ୍ତ ରାଧାକୃଷ୍ଣଙ୍କର ନିତ୍ୟ ରାସସ୍ଥଳକୁ ନୀଳାଚଳରେ ଚିହ୍ନିତ କରି ସେଠାରେ ରାଧାକୃଷ୍ଣଙ୍କୁ ଚିହ୍ନିତ କରିଛନ୍ତି । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ନିତ୍ୟସ୍ଥଳ ଦେଖାଇବାକୁ ଯାଇ ପୁରୁଷୋତ୍ତମ କ୍ଷେତ୍ର ଦେଖାଇ-ଛନ୍ତି । ଶ୍ରୀଜଗନ୍ନାଥ ମନ୍ଦିରର ତଳ ପାବଚ୍ଛଠାରୁ ନିତ୍ୟସ୍ଥଳ ଆରମ୍ଭ ହୋଇଛି ।

ବୃନ୍ଦାବନ ସେଠାରେ ଦ୍ୱାପର ରୂପେ ଅବସ୍ଥାନ କରିଛନ୍ତି । ମଣୋହି କୋଠା ହେଉଛି ନିପୁରଙ୍କ ସ୍ଥାନ । ବଳଭଦ୍ର ହ୍ରାଂ ବୀଜ ବା ଅନନ୍ତ ଅଟନ୍ତି । ଜଗନ୍ନାଥ କ୍ଲୀଂ ବୀଜ ବା ଶ୍ରୀକୃଷ୍ଣ ଏବଂ ସୁଭଦ୍ରା ଶ୍ରୀଂ ବୀଜ ବା ଶ୍ରୀରାଧା ଅଟନ୍ତି । (ପଞ୍ଚମ ଅଧ୍ୟାୟ) ଅନ୍ୟତ୍ର କବି ଯଶୋବନ୍ତ ଜଗନ୍ନାଥ ମନ୍ଦିରର ଦଧିନଉତିକୁ ପ୍ରେମ ପଲଙ୍କ, କଳସକୁ ଶ୍ରୀରାଧା ଓ ନୀଳଚକ୍ରକୁ ଶ୍ରୀକୃଷ୍ଣ କହିଛନ୍ତି । (ପଞ୍ଚମ ଅଧ୍ୟାୟ, ପଦ ୧୭୨-୭୫) କବି ଅଚ୍ୟୁତାନନ୍ଦଙ୍କ ରଚନାରେ ଏପ୍ରକାର ପରିକଳ୍ପନା ବିରଳ ନୁହେଁ । କବି ତାଙ୍କର 'ପରମ୍ ରହାସ' ନାମକ ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ବିଶାଳ ତନୁ ମଧ୍ୟରେ ରାଧାକୃଷ୍ଣ ଗୁପ୍ତ ଭାବରେ ଲୀଳା କରୁଥିବା କଥା ପ୍ରକାଶ କରିଛନ୍ତି । ପୁନଶ୍ଚ ସେ 'ମହାନିତ୍ୟ ରହାସ' ଗ୍ରନ୍ଥରେ ଶ୍ରୀକ୍ଷେତ୍ରକୁ ଗୋଲୋକ, ନିତ୍ୟ ଗୋଲୋକ ଓ ମହାନିତ୍ୟ ଏହିପରି ତିନି ଭାବରେ ବିଭକ୍ତ କରି ସେଠାରେ ରାଧାକୃଷ୍ଣଙ୍କର ନିତ୍ୟରାସ ଲଗି ରହିଥିବା ବିଷୟ ବର୍ଣ୍ଣନା କରିଛନ୍ତି । 'ନିତ୍ୟରାସ' ଗ୍ରନ୍ଥରେ ଏ ପ୍ରକାର ବିଷୟର ପୁନରାବୃତ୍ତିକୁ ମଧ୍ୟ ଲକ୍ଷ୍ୟ କରାଯାଇଥାଏ ।

ଶିଶୁ ଅନନ୍ତ ଦାସ ଏ ପ୍ରକାର ମତବାଦର ପ୍ରଚାର କରି 'କଳ୍କୀ ଭାଗବତ'-ରେ ଶ୍ରୀକ୍ଷେତ୍ରକୁ ନିତ୍ୟ ବୃନ୍ଦାବନ ଓ ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ମିଳିତ ଯୁଗଳ ରୂପ ବୋଲି କହିଛନ୍ତି । ଜଗନ୍ନାଥ ଦାସଙ୍କ ଶିଷ୍ୟ କବି ଗୋପାଳ ଦାସଙ୍କର 'ପାଦପଦ୍ମ ସୁଧାନିଧି' ନାମକ ଗ୍ରନ୍ଥରେ ରାଧାକୃଷ୍ଣଙ୍କର ସ୍ଥିତିକୁ ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ଦର୍ଶାଇ ଦିଆଯାଇଛି । ଜଗନ୍ନାଥ ହେଉଛନ୍ତି ଅଣାକାର । ଯୋଗମାୟାଙ୍କ ପ୍ରଭାବରୁ ସେ ଆକାର ଧାରଣ କରିପାରି ଲୋକମାନଙ୍କୁ ଦେଖାଯାଉଛନ୍ତି । ରାଧାଙ୍କ କାରଣ ହେଉଛି ଯୋଗମାୟାଙ୍କ ଦେହ । ଜଗନ୍ନାଥଙ୍କ ଦୁଇବାହୁକୁ ରାଧାଙ୍କର ପଦ୍ମପାଦ, ଦୁଇ ଚକାଡୋଳାକୁ ରାଧାଙ୍କର ଦୁଇ ସ୍ତନ ଓ ରଙ୍ଗାଅଧରକୁ ରଙ୍ଗାଦେବୀ ବୋଲି କୁହାଯାଇଛି ।

ଜଗନ୍ନାଥ ଦାସଙ୍କ ଅନ୍ୟ ଜଣେ ଶିଷ୍ୟ ହରିଦାସ ମଧ୍ୟ ନୀଳାଚଳ ଧାମକୁ ନିତ୍ୟ ବୃନ୍ଦାବନ ଓ ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ ବୋଲି ଗ୍ରହଣ କରିଛନ୍ତି । ରତ୍ନସିଂହାସନ ଉପରେ ରାଧା ଓ ଚନ୍ଦ୍ରାବଳୀଙ୍କ ମଧ୍ୟରେ ବନ୍ଦ୍ରୁବ୍ରହ୍ମ ରୂପେ ଶ୍ରୀଜଗନ୍ନାଥ ଅବସ୍ଥାନ କରୁଛନ୍ତି । ସେ ହେଉଛନ୍ତି କାମବୀଜ କ୍ଲୀଂ । ତାଙ୍କ ଭିତରେ ରାଧାକୃଷ୍ଣ ନିବିଡ଼ ଆଲିଙ୍ଗିତ ଅବସ୍ଥାରେ ରହିଛନ୍ତି । ଜଗନ୍ନାଥଙ୍କର ତିନିଧୂପ ଓ ପାଞ୍ଚ ଅବକାଶକୁ କବି ରାଧାକୃଷ୍ଣଙ୍କର ଅଷ୍ଟକାଳ ସେବା ବୋଲି ଉଲ୍ଲେଖ କରିଛନ୍ତି ।

କବି ଦିବାକର ଦାସ ତାଙ୍କର 'ଜଗନ୍ନାଥ ଚରିତାମୃତ' ଗ୍ରନ୍ଥରେ ପୁରୁଷୋତ୍ତମ କ୍ଷେତ୍ରକୁ ମାଧୁର୍ଯ୍ୟ ଲୀଳାର କ୍ଷେତ୍ର କହି ବୃନ୍ଦାବନର ରାଧାକୃଷ୍ଣଙ୍କ ଲୀଳାକୁ

ପରକୀୟା ଲୀଳା ବୋଲି ଅଭିହିତ କରି ତାର ନ୍ୟୂନତା ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ପୁରୁଷୋତ୍ତମ କ୍ଷେତ୍ରରେ ରାଧାକୃଷ୍ଣଙ୍କର ସ୍ୱକୀୟା ଲୀଳାର ସନ୍ଧାନ ଦେଇ-ଛନ୍ତି । କବି ଶ୍ରୀକ୍ଷେତ୍ରକୁ ନିତ୍ୟସ୍ଥଳ, ଶ୍ରୀଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ କହିଛନ୍ତି । (ଦ୍ୱାଦଶ ଅଧ୍ୟାୟ) ଶ୍ରୀଜଗନ୍ନାଥଙ୍କ ବିଗ୍ରହ ମଧ୍ୟରେ ଯେଉଁ ରାଧାକୃଷ୍ଣ-ଙ୍କର ଲୀଳା ଚାଲିଛି, ତାଙ୍କର ଏକ କଳାରୁ ମର୍ତ୍ତ୍ୟ ରାଧାଙ୍କର ଜନ୍ମ । (ଅଷ୍ଟାଦଶ ଅଧ୍ୟାୟ) ମର୍ତ୍ତ୍ୟ ବୃନ୍ଦାବନର ରାଧାକୃଷ୍ଣ ବା ଗୋପୀକୃଷ୍ଣ ଲୀଳା ହେଉଛି ପରକୀୟା ପ୍ରେମ ଲୀଳା । ଗୋପୀରମଣ କାର୍ଯ୍ୟ ହେଉଛି ଐଶ୍ୱର୍ଯ୍ୟର ବିଳାସ । କବିଙ୍କ ମତରେ —

"ବୃନ୍ଦାବନ ଯେ ଅଇଶ୍ୱର୍ଯ୍ୟ । ପୁରୁଷୋତ୍ତମଟି ମାଧୁର୍ଯ୍ୟ । ୧୦୧ ।
ବୃନ୍ଦାବନର ଲୀଳା ଯେତେ । ସବୁ ଅଇଶ୍ୱର୍ଯ୍ୟ ବୁଝନ୍ତେ ।

× × ×

ପୃଥିବୀ ଅସୁର ମାରିବ । ଗୋପଲୀଳା ଗୋପେ କରିବ । ୧୦୫ ।
ଗୋପୀ ରମିବ ବୃନ୍ଦାବନ । ଏ ସବୁ ଐଶ୍ୱର୍ଯ୍ୟ ବିଧାନ ।

X X X

ଏ ଆଦି ଯେତେ ଅବତାର । ସମସ୍ତ କାମନା ବିଗ୍ରହ । ୧୧୧ ।
ଜଗନ୍ନାଥଙ୍କ ବାଞ୍ଛା ନାହିଁ । ମାଧୁର୍ଯ୍ୟ ଭାବେ ଛନ୍ତି ରହି ।"

(ତ୍ରୟୋଦଶ ଅଧ୍ୟାୟ)

ଅଚ୍ୟୁତାନନ୍ଦଙ୍କ ଶିଷ୍ୟ ପରମ୍ପରାର କବିମାନଙ୍କ ମଧ୍ୟରେ କବି ଭାବସ୍ୱା ଦାସ, ଈଶ୍ୱର ଦାସ, ଦ୍ୱାରିକା ଦାସ, ଦ୍ୱିଜ ଜଗନ୍ନାଥ ଦାସ ପ୍ରଭୃତି କବିମାନେ ସ୍ୱରଚନା ମଧ୍ୟରେ ଶ୍ରୀଜଗନ୍ନାଥଙ୍କଠାରେ ରାଧାକୃଷ୍ଣଙ୍କ ଯୁଗଳରୂପ ତଥା ପୁରୁଷୋତ୍ତମକୁ ନିତ୍ୟ-ରାସସ୍ଥଳୀ ଭାବେ ବର୍ଣ୍ଣନା କରିଅଛନ୍ତି । କବି ଭାବସ୍ୱା ଦାସଙ୍କ 'ମନ୍ମଥ ଚନ୍ଦ୍ରକା ଲକଟିକା ଲହରୀ', ଈଶ୍ୱର ଦାସଙ୍କ 'ଚୈତନ୍ୟ ଭାଗବତ', ଦ୍ୱାରିକା ଦାସଙ୍କ 'ପରଚେ ଗୀତା' ପ୍ରଭୃତି ଗ୍ରନ୍ଥରେ ଏହାର ବର୍ଣ୍ଣନା ପରିଲକ୍ଷିତ ହୋଇଥାଏ । ଈଶ୍ୱର ଦାସ ରାଧାଙ୍କ ସମ୍ପର୍କରେ ତାତ୍ତ୍ୱିକ ବର୍ଣ୍ଣନା କରି 'ଶ୍ରୀରାଧା ସ୍ୱୟଂ ଜଗନ୍ନାଥ' ବୋଲି କହିଅଛନ୍ତି । (ଅଧ୍ୟାୟ ୫୦) ଦ୍ୱାରିକା ଦାସ 'ପରଚେଗୀତା'ରେ ଶ୍ରୀଜଗନ୍ନାଥ ପୀଠକୁ ମୁକ୍ତି ପୀଠ ଆଖ୍ୟା ଦେଇ ଶ୍ରୀଜଗନ୍ନାଥଙ୍କୁ ମୁକ୍ତ ପୁରୁଷ ରୂପେ ଚର୍ଚ୍ଚିତ କରିଅଛନ୍ତି । ଉକ୍ତ ମୁକ୍ତପୀଠକୁ ଶ୍ରୀଦେହରୁ ଚାରୋଟି ଦ୍ୱାର ରହିଛି । ପୂର୍ବ ଦ୍ୱାରକୁ କବି ଗୋପନର

ବୋଲି କହିଛନ୍ତି । ଏଠାରେ ପରଂବ୍ରହ୍ମ କୃଷ୍ଣ ଅବତାର ହୋଇ ରାଧା ଅଙ୍ଗରେ ବିହାର କରୁଅଛନ୍ତି । ମୁକ୍ତାଘରୁ ଅମୃତ ଝରି ରାଧାଙ୍କ ମୁଖରେ ବର୍ଷୁଛି ଓ କୃଷ୍ଣ ତାହାକୁ ପାନ କରୁଛନ୍ତି । ଯେଉଁମାନେ ରାଧାକୃଷ୍ଣ ଭଜନ୍ତି, ସେମାନେ ଏହି ସ୍ଥାନ ପ୍ରାପ୍ତ ହୁଅନ୍ତି । ସେମାନେ ରାଧା ଅଙ୍ଗରେ ପଶି କୃଷ୍ଣ ଅଙ୍ଗ ପ୍ରାପ୍ତ ହୁଅନ୍ତି ଓ କୃଷ୍ଣ ଅଙ୍ଗରେ ପ୍ରବେଶ କରି ହଂସମନ୍ତ୍ର ଜପ ପୂର୍ବକ ନିରାଲମ୍ବ ମୁକ୍ତିଲାଭ କରନ୍ତି ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ପରମ୍ପରା-ରେ ଯେଉଁ ଦୁଇଟି ରାସ ବା ରାଧାକୃଷ୍ଣ ଲୀଳା କଳ୍ପନା କରାଯାଇଥିଲା, ତାହା ହେଉଛି ଶରୀର ମଧ୍ୟରେ ନିତ୍ୟରାସ ପରିକଳ୍ପନା ଓ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ମଧ୍ୟରେ ନିତ୍ୟରାସ କଳ୍ପନା । ଏହାହିଁ ଥିଲା ଯୋଗମାର୍ଗୀ ଉତ୍କଳୀୟ ବୈଷ୍ଣବମାନଙ୍କର ଇଷ୍ଟନିଷ୍ଠା । ଧର୍ମ ଜଗତରେ ଚିନ୍ତାଧାରାର ପରିବର୍ତ୍ତିନକୁ ଶ୍ରୀଜଗନ୍ନାଥଙ୍କଠାରେ ରୂପାୟିତ କରି ଜଗନ୍ନାଥୈକ ପ୍ରାଣତାରେ ପ୍ରସାଦ ଅନୁଭବ କରିବା ଥିଲା ସେମାନଙ୍କର ଆଭିମୁଖ୍ୟ ।

ଏହି ସବୁ ରାଧାକୃଷ୍ଣ ତତ୍ତ୍ୱ ବ୍ୟତିରେକ କେତେକ ଜ୍ଞାନମିଶ୍ରା ଭକ୍ତି ଉପାସକ ବୃନ୍ଦ ରାଧାକୃଷ୍ଣଙ୍କୁ ବିଭିନ୍ନ ଶାସ୍ତ୍ର ମଧ୍ୟରେ, ଶୂନ୍ୟ ରୂପେ, ଆଦି ଅନାଦି ଭାବେ ଓ ଶରୀର ମଧ୍ୟସ୍ଥ ବିଭିନ୍ନ ନାଡ଼ୀ ମଧ୍ୟରେ ଚିହ୍ନିତ କରିଅଛନ୍ତି । କବି ଅରକ୍ଷିତ ଙ୍କର 'ରାଧା ରସାମୃତଗୀତା'ରେ ତୃତୀୟ ଅଧ୍ୟାୟରେ ବିବିଧ ଶାସ୍ତ୍ରକୁ ରାଧାକୃଷ୍ଣଙ୍କ-ଠାରେ ଚିହ୍ନିତ କରିଅଛନ୍ତି । ଯଥା—ଗୀତା ଆଉ ନିର୍ଗୁଣ ଶାସ୍ତ୍ର ହେଉଛନ୍ତି ଶ୍ରୀକୃଷ୍ଣ, ଭାଗବତ ଆଦି ପ୍ରେମ ଭକ୍ତିର ଶାସ୍ତ୍ର ହେଉଛନ୍ତି ଶ୍ରୀରାଧା ଏବଂ ସମସ୍ତ ଶାସ୍ତ୍ରର ମୂଳ ରୂପକ ବେଦ ହେଉଛନ୍ତି ଯୋଗମାୟା । ଶ୍ରୀ ବିଷ୍ଣୁଙ୍କର ସହସ୍ର ନାମ ହେଉଛି ଅନନ୍ତଙ୍କର ସହସ୍ର ଫଣା । ବିପ୍ରର ହେଉଛନ୍ତି ବ୍ରହ୍ମବିଦ୍ୟା । ଏ ସମସ୍ତ ପୁଣି ଓଁକାରରୁ ଜନ୍ମ । (ତୃତୀୟ ଅଧ୍ୟାୟ) କବି ଅଚ୍ୟୁତାନନ୍ଦ ଦାସ ଶ୍ରୀରାଧାଙ୍କୁ ମହାଶୂନ୍ୟ ନନ୍ଦନୀ, ଆଦ୍ୟା ଓ ଆଦ୍ୟ ନାଦ ସ୍ୱରୂପିଣୀ ବୋଲି 'ଶୂନ୍ୟ ସଂହିତା'ରେ ଉଲ୍ଲେଖ କରିଛନ୍ତି । ନିତ୍ୟ ସ୍ଥଳର ବର୍ଣ୍ଣନା ପ୍ରସଙ୍ଗରେ କବି କହିଛନ୍ତି ନିତ୍ୟସ୍ଥଳର ସିଂହାସନ ହେଉଛି ସାମବେଦ, ଗାୟତ୍ରୀ ମନ୍ତ୍ର ହେଉଛି ତା'ର ପାବଚ୍ଛ । ସେଠାରେ ଊର୍ମି ଧୁମି ଜ୍ୟୋତି ଜ୍ୱାଳା ପ୍ରଜ୍ଜ୍ୱଳିତ ହେଉଛି । କୃଷ୍ଣ ରାଧାଙ୍କ ଦେହରେ ବିନ୍ଦୁଭଳି ଆତ୍ମଗୋପନ କରିଛନ୍ତି । କବି ଭକ୍ତେଇ ଖୁଣ୍ଟିଆ 'ମହାଭାବ ପ୍ରକାଶ' ଗ୍ରନ୍ଥରେ କୃଷ୍ଣଙ୍କୁ ଇଡ଼ାନାଡ଼ୀ ବା ଯମୁନା ଜଳ ଓ ରାଧାଙ୍କୁ ପିଙ୍ଗଳା ନାଡ଼ୀ କହିଛନ୍ତି ।

ଏହିସବୁ ବର୍ଣ୍ଣନା ମଧ୍ୟରେ ସାଧକମାନେ ଶରୀର ମଧ୍ୟରେ ତଥା ଶ୍ରୀଜଗ-ନ୍ନାଥଙ୍କ ବିଗ୍ରହରେ ରାଧାକୃଷ୍ଣଙ୍କ ଯୁଗଳଙ୍କ ରୂପକୁ ଲକ୍ଷ୍ୟ କରିଛନ୍ତି । କବି ଅରକ୍ଷିତ

ଶିବ ରାଧାକୃଷ୍ଣଙ୍କର ଏହି ଅଭେଦ ଯୁଗଳ ବିଳାସକୁ ଯେଉଁ ଭଳି ରୂପ ପ୍ରଦାନ କରିଛନ୍ତି ତାହା ହିନ୍ଦୁ ତନ୍ତ୍ରର ଅର୍ଦ୍ଧନାରୀଶ୍ୱର କଳ୍ପନା, ବଜ୍ରଯାନ ବୌଦ୍ଧଧର୍ମର ପ୍ରଜ୍ଞୋପାୟ କଳ୍ପନା ଓ ସହଜ ଯାନ ବୌଦ୍ଧ ଧର୍ମର ଶୂନ୍ୟତା କରୁଣା ମିଳନ ଜନିତ ଅଦ୍ୱୟ ଯୁଗନଦ୍ଧ କଳ୍ପନା ଅନୁରୂପ । କବି 'ରାଧାରସାମୃତ ଗୀତା'ରେ ଏହି ତତ୍ତ୍ୱର ଉପସ୍ଥାପନା କରି ଲେଖିଛନ୍ତି—

"ଦଗଧ କାଞ୍ଚନ ପ୍ରାୟେ ରାଧିକାର ଜ୍ୟୋତି
ନବ ଜଳଧର ପ୍ରାୟେ ଶ୍ରୀକୃଷ୍ଣର ଜ୍ୟୋତି ।
ଦୁହିଁଙ୍କର ରୂପକୁ ଯେ ଦୁହେଁ ଶୋଭାପାଇ
ପଲକେ ବିଶ୍ରାମ ନାହିଁ ରମୁଛନ୍ତି ଦୁଇ ।
ଏକଇ କବରୀ ବାନ୍ଧେ ଦୁହିଁଙ୍କର ଚୂଳ
କସ୍ତୁରୀ ତିଳକ ଶୋଭେ ଏକଇ କପାଳ ।
ନାସେ ଯେ ବସଣି ଶୋଭେ ମୁକୁତାର ଫଳ
କନକ ତଡ଼ଙ୍କ କର୍ଣ୍ଣେ ଶୋଭଇ କୁଣ୍ଡଳ ।
ଏକଇ ମୁରଲୀ ରନ୍ଧ୍ରେ ଦୁହେଁ ବାଆନ୍ତି ବେଣୁ
ଦୁଇ ରସ ଦୁହେଁ ଜାଣି ଦୁହେଁ ସୁଧା ତନୁ ।
ଏକ ବୈଜୟନ୍ତୀମାଳା ଦୁଇଗଳେ ଲମ୍ବିଥାଇ
ଏକଇ ଉରସ୍ଥ ଯେ ଦୁହିଁଙ୍କି ଶୋଭାପାଇ ।
ବାମେ ରତ୍ନ ଚୁଡ଼ୀ ଶୋଭେ ଡାହାଣେ କଙ୍କଣ
ଅର୍ଦ୍ଧ ଅର୍ଦ୍ଧ ଅଙ୍ଗ ଯହୁଁ ହୋଇଛି ନିର୍ମାଣ ।
ଏକ ପୀତ ବସନେ ଦୁହିଁଙ୍କ କଟି ରହି
ପାଧେକ ନୂପୁର ପାଦେ ବାଜେଣି ଶୋଭଇ ।"

(୨/ପୃ ୧୨)

ସହଜ ଯାନ ବୌଦ୍ଧଧର୍ମ କଳ୍ପନାନୁଯାୟୀ ଶୂନ୍ୟତା ଓ କରୁଣାର ଯୁଗନଦ୍ଧ ରୂପରୁ ଯେପରି ମହାସୁଖ, ସମରସ ବା ସହଜାନନ୍ଦ ପ୍ରବାହିତ ହୁଏ, ରାଧାକୃଷ୍ଣଙ୍କର ଏହି ଯୁଗଳ ମିଳନରୁ ସେହିପରି ଆନନ୍ଦ ରସ ପ୍ରବାହିତ ହେବାର କଳ୍ପନା 'ରାଧା ରସାମୃତ ଗୀତା'ରେ ଦେଖିବାକୁ ମିଳେ ।

ରାଧାକୃଷ୍ଣ ଦୁଇ ଭାବ ପ୍ରେମରସ ଦୁଇ
ଆନନ୍ଦ ଉଚ୍ଛୁକ ଭାବେ ମିଶି ଦୁଇ ଠାଇଁ ।

× × ×

ଆନନ୍ଦ ଲହରୀ ଯେ ଉଚ୍ଛୁଳେ ନିରନ୍ତର
ମନ୍ତ୍ର ଯନ୍ତ୍ର ଜପ ରୂପ ଜନମ ଏଥିର ।" (ଚତୁର୍ଥ ଅଧ୍ୟାୟ)

କବି ଅଚ୍ୟୁତାନନ୍ଦ ତାଙ୍କର 'ହୃଦୟ କାହାଣୀ'ରେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତିକୁ ଏକ ଓ ଅଭିନ୍ନ ରୂପେ ବର୍ଣ୍ଣନା କରି ଲେଖିଛନ୍ତି—

"ଦେଖନ୍ତୁ ଦୁଇ ରୂପ ହୁଅନ୍ତି
ଏକ ଭାବ ଅଟେ ଯୁଗଳ ମୂର୍ତ୍ତି ।"

ପଞ୍ଚସଖାମାନେ ରାଧାକୃଷ୍ଣ ତତ୍ତ୍ୱକୁ କିପରି ଭିନ୍ନ ଭିନ୍ନ ଭାବରେ ଉପଲବ୍‌ଧି କରୁଥିଲେ, ତାହା ଏହି ଗ୍ରନ୍ଥରେ ପ୍ରଦତ୍ତ ହୋଇଛି । ଈଶ୍ୱର ଦାସ ମଧ୍ୟ 'ଶ୍ରୀରାଧା ଜନ୍ମ' ନାମକ ଏକ ଗ୍ରନ୍ଥରେ ରାଧାକୃଷ୍ଣଙ୍କର ଅଭେଦତତ୍ତ୍ୱକୁ ପ୍ରତିପାଦିତ କରିଛନ୍ତି ।

"ଶ୍ରୀରାଧାକୃଷ୍ଣର ଅଭେଦ । ଭେଦ ନପାରେ ଯାକୁ ନାଦ ।
ନାଦଟି ବ୍ରହ୍ମରୂପ ହୋଇ । ଶ୍ରୀରାଧା ରୂପ ଛିଂଡ ଯାଇ ।
ଶ୍ରୀରାଧା ନିରାକାରେ ଲୟେ । ସେମନ୍ତେ କୋଟି ଯୁଗଯାଏ ।"
(ଚତୁର୍ଥ ଅଧ୍ୟାୟ)

'ଉତ୍କଳ ଟୀକା'ରେ କବି ବିଷ୍ଣୁ ଦାସ ମଧ୍ୟ ଏ ସମ୍ପର୍କରେ କହନ୍ତି—

"ସେ ନିତ୍ୟେ ରାଧାକୃଷ୍ଣ ଦୁଇ । ଅଙ୍ଗ ଅଙ୍ଗେ ଯେକ ଦେହୀ ।"
(ପଞ୍ଚମ ଅଧ୍ୟାୟ)

ରାଧାକୃଷ୍ଣଙ୍କର ଏହି ଯୁଗଳ ରୂପକୁ ଉପଲବ୍‌ଧି କରିବାକୁ ହେଲେ ସାଧକକୁ ଶରୀର ଭେଦ କରିବାକୁ ପଡେ । ସେଥିପାଇଁ ଜ୍ଞାନମିଶ୍ରା ଭକ୍ତ ସାଧକବୃନ୍ଦ ବାରମ୍ବାର ଏହି କଥାକୁ ଉଦ୍‌ଘୋଷଣା କରି ଦେହ ମଧ୍ୟରେ ରାଧାକୃଷ୍ଣଙ୍କୁ ଚିହ୍ନିତ କରିଛନ୍ତି ।

ଏହିପରି ଜ୍ଞାନମିଶ୍ରା ଭକ୍ତ ସାହିତ୍ୟରେ ବର୍ଣ୍ଣିତ ରାଧାକୃଷ୍ଣ ତତ୍ତ୍ୱର ବୈଶିଷ୍ଟ୍ୟକୁ ଅନୁଭବ କରାଯାଇପାରେ ।



# ପଞ୍ଚମ ଅଧ୍ୟାୟ

# ମନ୍ତ୍ରତତ୍ତ୍ୱ

ଓଡ଼ିଆ ଜ୍ଞାନ ମିଶ୍ରାଭକ୍ତି ସାହିତ୍ୟରେ ମନ୍ତ୍ର, ଯନ୍ତ୍ର ଓ ତନ୍ତ୍ର ପ୍ରସଙ୍ଗ ପ୍ରାୟ ସର୍ବତ୍ର ଉତ୍‌ଥାପିତ ହୋଇଛି । 'ଗୁରୁଭକ୍ତି ଗୀତା' ଗ୍ରନ୍ଥରେ ଉଲ୍ଲେଖ ଅଛି—

"ଯନ୍ତ୍ର ମନ୍ତ୍ର ତନ୍ତ୍ର ଭେଦରେ ଶିଷ୍ୟ କହି
ତିନି ଭେଦ ନ ଜାଣିଲେ ଅଗାଡ଼ି ସେହି
ଗୁରୁ ଏହି ତିନିଭେଦ ନ ଜାଣିଲେ ପୁଣ
ଇହ ପର ଲୋକେ ହାସ୍ୟ ହୋଏ ବଡ଼ମୂଣ ।"

(ପ୍ରଥମ ଖଣ୍ଡ)

**ତନ୍ତ୍ରର ଅର୍ଥ :** 'କାମିକ ଆଗମ'ରେ ତନ୍ତ୍ରର ବ୍ୟୁତ୍ପତ୍ତିକୁ ଏହି ପ୍ରକାରରେ କରାଯାଇଛି । ଯଥା—

"ତନୋତି ବିପୁଳାନ୍ନର୍ଥାନ୍ ତତ୍ତ୍ୱ ମନ୍ତ୍ର ସମନ୍ୱିତାନ୍
ତ୍ରାଣଂ ଚ କୁରୁତେ ଯସ୍ମାତ୍ ତନ୍ତ୍ରମିତ୍ୟଭିଧୀୟତେ ।"

ଅର୍ଥାତ୍ ତତ୍ତ୍ୱମନ୍ତ୍ର ସମନ୍ୱିତ ତନ୍ତ୍ର ବିପୁଳ ଅର୍ଥ ବିସ୍ତାର କରିବା ସହିତ ସାଧକକୁ ତ୍ରାଣ କରିଥାଏ । ତନ୍ ଧାତୁରୁ ତନ୍ତ୍ର ଶବ୍ଦର ସୃଷ୍ଟି । ତନ୍ ଅର୍ଥ ବିସ୍ତାର କରିବା । 'ତନ୍ୟତେ ବିସ୍ତାର୍ଯ୍ୟତେ ଜ୍ଞାନ ମନେନ ଇତି ତନ୍ତ୍ରମ୍' । ଏହାଦ୍ୱାରା ଜ୍ଞାନ ବିସ୍ତୃତ ହୁଏ ବୋଲି ଏହାର ନାମ ତନ୍ତ୍ର । ତନ୍ତ୍ରର ଅନ୍ୟ ଏକ ଅର୍ଥ ହେଲା ନିୟମ ବା ଶାସନ ପ୍ରଣାଳୀ, ଯେଉଁଥିରୁ ରାଜତନ୍ତ୍ର, ଗଣତନ୍ତ୍ର ଆଦି ଶବ୍ଦର ସୃଷ୍ଟି ହୋଇଛି । ତେଣୁ ତନ୍ତ୍ର ଏକ ନିର୍ଦ୍ଦିଷ୍ଟ ନୀତି ନିୟମାତ୍ମକ ଜ୍ଞାନ, ଯାହାଦ୍ୱାରା ଜ୍ଞାନର ବିସ୍ତାର ଘଟିବା

ଏହାଚ ଅଣ୍ଡିତର ଯାଣ ମଧ ହୋଇଥାଏ । ତନ୍ତ୍ର ସାଧନାକୁ ଭାରତର ଏକ ପ୍ରାଚୀନ ସାଧନା କୁହାଯାଇଥାଏ । ବୈଦିକ ଧର୍ମରେ ତନ୍ତ୍ର ପ୍ରବେଶ କରିବା ଫଳରେ ତାହା ଏକ ନୂତନ ରୂପ ଧାରଣ କରି ବୈଦିକ ଧର୍ମକୁ ଅନେକ ଶାଖା ପ୍ରଶାଖାରେ ବିଭକ୍ତ କରିଥିଲା । କୁଳାର୍ଣ୍ଣବ ତନ୍ତ୍ରରେ କୁହାଯାଇଛି ସତ୍ୟଯୁଗରେ ଧାର୍ମିକ ସାଧୁ ସତ୍ୟବାଦୀ ଲୋକ କେବଳ ଯାଗଯଜ୍ଞାଦି ଦ୍ୱାରା ଦେବତାଙ୍କୁ ସନ୍ତୁଷ୍ଟ କରି ଅଭୀଷ୍ଟ ଲାଭ କରି ପାରୁଥିଲେ । ତ୍ରେତାଯୁଗରେ ଧର୍ମର ଗ୍ଲାନି ଘଟିବାରୁ ଯାଗଯଜ୍ଞ କଷ୍ଟକର ହୋଇ ଫଳ ପ୍ରଦାନ କରିପାରି ନଥିଲା । ତେଣୁ ଜଗତକଲ୍ୟାଣ ପାଇଁ ଉପନିଷଦ୍‌ର ସୃଷ୍ଟି ହୋଇଥିଲା । ଦ୍ୱାପର ଯୁଗରେ ଧର୍ମର ଅର୍ଦ୍ଧଭାଗ ହାନି ଘଟିବାରୁ ଶିବ ପୁରାଣାଦି ଦ୍ୱାରା ଉପଦେଶ ଦେଇ ଲୋକଙ୍କୁ ଉଦ୍ଧାର କରୁଥିଲେ । କଳିଯୁଗରେ ଧର୍ମର ତିନିଭାଗ ହ୍ରାସ ଘଟି ଅଧର୍ମ ବୃଦ୍ଧି ପାଇବାରୁ ଲୋକେ, ଅଳ୍ପାୟୁ ବଳବୀର୍ଯ୍ୟ ଓ ଜ୍ଞାନ ସମ୍ପନ୍ନ ହୋଇ ଯେପରି ବ୍ରହ୍ମଜ୍ଞାନ ଲାଭ କରିପାରିବେ, ସେଥିପାଇଁ ଶିବ ତନ୍ତ୍ରଶାସ୍ତ୍ର ସୃଷ୍ଟି କଲେ । ମହାନିର୍ବାଣ ତନ୍ତ୍ରରେ ଶିବ ପାର୍ବତୀଙ୍କୁ କହିଛନ୍ତି । 'ବିନା ହ୍ୟାଗମ ମାର୍ଗେଣ କଳୌନାସ୍ତି ଗତିଃ ପ୍ରିୟେ ।'' ତନ୍ତ୍ର ସାଧନାର ବ୍ୟାବହାରିକ ଓ ପାରମାର୍ଥିକ ସ୍ୱରୂପର ଦୁଇଟି ଦିଗ ରହିଛି । ବ୍ୟାବହାରିକ ଦିଗଟି ସାଂସାରିକ ସୁଖବିଧାନ ପାଇଁ ଉଦ୍ଦିଷ୍ଟ ଏବଂ ଆଧ୍ୟାତ୍ମିକ ଦିଗଟି ଆତ୍ମିକ ଉନ୍ନୟନ ପାଇଁ ବ୍ୟବହୃତ ହୋଇଥାଏ । ତନ୍ତ୍ର ସାଧନାରେ ମୁଖ୍ୟତଃ ମନ୍ତ୍ର ଓ ଯନ୍ତ୍ରକୁ ଆଶ୍ରୟ କରାଯାଇଥାଏ । ତନ୍ତ୍ର ଶାସ୍ତ୍ରରେ ମନ୍ତ୍ର କହିଲେ ମୁଖ୍ୟତଃ ବୀଜ ମନ୍ତ୍ରକୁ ବୁଝାଇଥାଏ । ଓଁକୁ ସମସ୍ତ ବୀଜ ମନ୍ତ୍ରର ଉତ୍ପତ୍ତି । ତନ୍ତ୍ର ସାଧକ ବିଭିନ୍ନ ବୀଜମନ୍ତ୍ର ଜପ ସାହାଯ୍ୟରେ ଓଁକାରର ବିନ୍ଦୁ ବା ଶବ୍ଦ ବ୍ରହ୍ମଙ୍କ ପାଖରେ ଉପନୀତ ହୋଇଥାଏ । ପୂର୍ବରୁ ସୃଷ୍ଟି ତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ କୁହାଯାଇଛି, ବ୍ରହ୍ମଙ୍କର ରୂପ ହେଉଛି ଶବ୍ଦମୟ । ଶୈବସିଦ୍ଧାନ୍ତ ଅନୁଯାୟୀ ପରମେଶ୍ୱରଙ୍କ ଶୁଦ୍ଧ ବିନ୍ଦୁ ହେଉଛି ସମସ୍ତ ଧ୍ୱନିର ଉତ୍ପତ୍ତି ସ୍ଥଳ । ଏହା ଅବ୍ୟକ୍ତ ଅବସ୍ଥାରୁ ଅବରୋହଣ ପ୍ରକ୍ରିୟାରେ କ୍ରମେ ପରା ସୂକ୍ଷ୍ମ ଓ ସ୍ଥୂଳ ଅବସ୍ଥା ଧାରଣ କରି ବିଭିନ୍ନ ବର୍ଣ୍ଣ, ଶବ୍ଦ ଓ ଧ୍ୱନିରେ ପରିଣତ ହୋଇଥାଏ । ଏଥିରୁ ବିଭିନ୍ନ ବୀଜମନ୍ତ୍ର ଓ ମନ୍ତ୍ର ତଥା ନାମ ସୃଷ୍ଟି ହୁଏ । ଓଡ଼ିଶାର ଜ୍ଞାନମିଶ୍ରାଭକ୍ତିସାଧକ ପଞ୍ଚସଖା ଏହି ତତ୍ତ୍ୱରେ ବିଶ୍ୱାସ କରୁଥିଲେ । ଅଚ୍ୟୁତାନନ୍ଦ ଛୟାଳିଶ ପଟଳରେ ଲେଖିଛନ୍ତି—

> ''ଶୁଣ ତୁ ଅଚ୍ୟୁତ ଏ ବଡ଼ ଗୁପତ ରଖିବୁ ଗୋପନ କରି
> ମହା ଶକ୍ତି ବ୍ରହ୍ମ ସତ୍ତା ପ୍ରକାଶୁଛୁ ବର୍ଣ୍ଣ ଶବ୍ଦ ରୂପ ଧରି ।
>
> ବିଶ୍ୱ ଚରାଚର ଅଖିଳ ସଂସାର ଶବ୍ଦ ବ୍ରହ୍ମ ହୁଏ ଜାତ.
> ସେ ଶବ୍ଦ ପ୍ରକାଶ ପଞ୍ଚାଶ ବର୍ଣ୍ଣରେ ଭାବ ହେଉ ହୁଏ ସ୍ଥିତ ।

ବର୍ଣ୍ଣତତ୍ତ୍ୱ ଏହା ବୀଜମନ୍ତ୍ର ବୋଲି ମନରେ ରଖିବୁ ଧରି
ଗୋଟି ଗୋଟି କରି କହିଦେବା ତେବେ ଭବସିନ୍ଧୁ ହେବୁ ପାରି ।"
(ପଞ୍ଚମ ପଟଳ)

ପୁନଶ୍ଚ ଅନ୍ୟତ୍ର ସେ ଲେଖିଛନ୍ତି—

ଅକ୍ଷର ବ୍ରହ୍ମ ଶକ୍ତି ଧରେ । ନାମ ମନ୍ତ୍ରରେ ସେ ବିହରେ ।
ଈଶ୍ୱର ଶକ୍ତି ମନ୍ତ୍ର ଶକ୍ତି । ଅକ୍ଷର ବଳେ ହୁଏ ଭକ୍ତି ।
ଅଶବ୍ଦ ଯେ ଶବଦ ବ୍ରହ୍ମ । ବର୍ଣ୍ଣ ତତ୍ତ୍ୱରେ ହୁଏ ଜ୍ଞାନ ।
ବେଦ ଯେ ଶବ୍ଦ ରୂପେ ଜାତ । ଅକ୍ଷର ବ୍ରହ୍ମ ସେ ସମ୍ଭୂତ ।
(ପଞ୍ଚମ ପଟଳ)

ବିଭିନ୍ନ ବୀଜମନ୍ତ୍ରଗୁଡିକ ହେଉଛି ଦେବତାଙ୍କର ପ୍ରାଣ ଏବଂ ଯେଉଁ ଯନ୍ତ୍ର ଉପରେ ଏହି ବୀଜମନ୍ତ୍ରକୁ ସ୍ଥାପନ କରାଯାଏ, ତାହା ହେଉଛି ଦେବତାଙ୍କର ଶରୀର । ଯନ୍ତ୍ରରେ ମନ୍ତ୍ର ସ୍ଥାପନ କରି ମନ୍ତ୍ର ଜପ କରିବା ଫଳରେ ମନ୍ତ୍ର ଚୈତନ୍ୟ ଜାଗ୍ରତ ହୁଏ ଏବଂ ଦେବତାଙ୍କର ଆବିର୍ଭାବ ଘଟେ । ଓଁ ମନ୍ତ୍ର ହେଉଛି ବ୍ରହ୍ମଙ୍କର ଶବ୍ଦମୟ ରୂପ । ମୋକ୍ଷକାମୀ ବ୍ୟକ୍ତି ବିଭିନ୍ନ ବୀଜମନ୍ତ୍ର ଓ ପ୍ରଣବକୁ ଜପ କରିବା ଦ୍ୱାରା ଶବ୍ଦ ବିନ୍ଦୁର ଅଧୋମୁଖୀ ପ୍ରବାହକୁ ଓଲଟାଇ ବିନ୍ଦୁରେ ପରିଣତ କରି ଥାଆନ୍ତି । ପୁଣି ବିନ୍ଦୁରୁ ଊର୍ଦ୍ଧ୍ୱକୁ ଉଠି ତୁରୀୟାତୀତ ଅବସ୍ଥାରେ ଉପନୀତ ହୋଇ ବ୍ରହ୍ମଭୂତ ହୋଇ ଯାଆନ୍ତି ଏବଂ ମୋକ୍ଷ ଲାଭ କରନ୍ତି । ଶବ୍ଦ ସାଧନାର ଅନ୍ୟ ନାମ ଲୟ ଯୋଗ ଏବଂ ସୁରତି ସାଧନା । ଏହା ପୂର୍ବରୁ ଆଲୋଚିତ ହୋଇଛି । ଯୋଗ ସାଧନା ସହିତ ଶବ୍ଦ ସାଧନାକୁ ଯୋଗ କଲେ ମନ ଶୀଘ୍ର ସ୍ଥିର ହୋଇ ଯୋଗ ସିଦ୍ଧି ହୋଇଥାଏ । ମନ୍ତ୍ରଜପ ଦ୍ରୁତ କିମ୍ବା ବିଲମ୍ବିତ ହେବା ଉଚିତ ନୁହେଁ । ସଶବ୍ଦ ମନ୍ତ୍ରଜପ, ନିଃଶବ୍ଦ ମାନସ ମନ୍ତ୍ର ଜପରେ ପରିଣତ ହେଲେ ମନ୍ତ୍ର ଜପରେ ସିଦ୍ଧି ଆସିଥାଏ । ମନ୍ତ୍ର ଜପ କଲାବେଳେ ମନକୁ ସବୁଆଡୁ ଫେରାଇ ଆଣି ମନ୍ତ୍ରରେ ଯୁକ୍ତ କରିବାକୁ ପଡ଼ିଥାଏ । ତେଣୁ କୁହାଯାଇଛି—

"ମନୋ ମଧ୍ୟେ ସ୍ଥିତଂ ମନ୍ତ୍ରଃ ମନ୍ତ୍ରୋ ମଧ୍ୟେ ସ୍ଥିତଂ ମନଃ
ମନୋ ମନ୍ତ୍ର ସମାଯୁକ୍ତ ମେତଦ୍ଧି ଜପଲକ୍ଷଣମ୍ ।"

ମନ୍ତ୍ରଜପର ନିୟମ ହେଉଛି ମନ୍ତ୍ର ଜପବେଳେ ମନ୍ତ୍ରୋଚ୍ଚାରିତ ଧ୍ୱନି ଯେପରି କ୍ଷୀଣରୁ କ୍ଷୀଣତର ହୋଇ ଏକ ବିନ୍ଦୁରେ ପରିଣତ ହୋଇ ପୁଣି ଧ୍ୱନିହୀନ ସ୍ତରକୁ ଗତି କରିବ । ଅବିରତ ମନ୍ତ୍ର ଜପରେ ସଂଯୁକ୍ତ ହେଲେ

ଚିଣ୍ଠିସ୍ତମନ ମନ୍ତ୍ର ଧ୍ୱନିରେ ଯୁକ୍ତ ହୋଇ ଧ୍ୱନିର ଲୟାବସ୍ଥା ସହିତ ଲୀନ ହୋଇ ବ୍ରହ୍ମରେ ବିଲୀନ ଯାଇଥାଏ । ଚଞ୍ଚଳ ମନକୁ ଏକାଗ୍ର କରି ତଲ୍ଲୀନ କରିବା ପାଇଁ ଏହା ଏକ ସହଜ ଉପାୟ । କବୀର ସମ୍ପ୍ରଦାୟ ଏବଂ ସତ୍‌ସଙ୍ଗ ସମ୍ପ୍ରଦାୟ ଏହା ଉପରେ ପ୍ରାଧାନ୍ୟ ଅର୍ପଣ କରି ଏହାକୁ ଉଲଟ ସାଧନା, ସୁରତ ସାଧନା ଆଦି ଆଖ୍ୟା ପ୍ରଦାନ କରିଛନ୍ତି । ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତ ସାଧକ ଏହାର ଉପଯୋଗିତାକୁ ଉପଲବ୍‌ଧି କରି ନିଜ ସାଧନାର ଅନ୍ତର୍ଭୁକ୍ତ କରି ନେଇଛନ୍ତି । ଏକଦା ଓଡ଼ିଶା ଏକ ତନ୍ତ୍ର ସାଧନା ପୀଠ ଥିଲା । ବିଶେଷତଃ ବୈଷ୍ଣବ ତନ୍ତ୍ରର ପ୍ରଧାନ ପୀଠ ଥିଲା ଶ୍ରୀଜଗନ୍ନାଥ ଧାମ । ବୈଷ୍ଣବ ତନ୍ତ୍ରର ଗୋପାଳ ତାପିନୀ, ରାଧା ତାପିନୀ ଓ ପୁରୁଷୋତ୍ତମ ତାପିନୀ ପ୍ରଭୃତି ତନ୍ତ୍ର ଗ୍ରନ୍ଥ ଗୁଡ଼ିକ ଓଡ଼ିଶାରେ ରଚିତ ହୋଇଥିବା ଗବେଷକମାନେ ସିଦ୍ଧାନ୍ତ କରିଛନ୍ତି । ତେଣୁ ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତ ସାଧକ ବୈଷ୍ଣବ ବୃନ୍ଦ ସେହି ସେହି ଗ୍ରନ୍ଥବର୍ଣ୍ଣିତ ବୀଜମନ୍ତ୍ର ଏବଂ ବେଦ, ଉପନିଷଦ୍, ଗୀତା ଆଦିରେ ବହୁ ଚର୍ଚ୍ଚିତ ଗାୟତ୍ରୀ ମନ୍ତ୍ର ଓ ଏକାକ୍ଷର ପ୍ରଣବ ମନ୍ତ୍ର ଓ ମହାମନ୍ତ୍ରର ଜପକୁ ସେମାନଙ୍କ ମନ୍ତ୍ରସାଧନାରେ ଅନ୍ତର୍ଭୁକ୍ତ କରିଛନ୍ତି । 'ଛୟାଳିଶ ପଟଳ'ରେ ଅଚ୍ୟୁତାନନ୍ଦଙ୍କ ଉକ୍ତିରୁ ମଧ୍ୟ ଏହା ଅନୁଭୂତ ହୋଇଥାଏ—

"କଳିମହାମନ୍ତ୍ର ଆଉ ମନ୍ତ୍ର ଯନ୍ତ୍ର ବ୍ରହ୍ମ ଗାୟତ୍ରୀକୁ ଘେନି
ଶୁଣିଲେ ତରିବ ଦୁଃଖ ନାଶିଯିବ ପିଣ୍ଡ ହୋଇବ କାରେଣୀ
ଅଣାକ୍ଷର ପୁଣି ଯୋଗମାୟାମନ୍ତ୍ର ଜ୍ୟୋତି ଅବାଡ଼ ସହିତ
ଯାହା ଯାହା ଅଛି ମନ୍ତ୍ର ଭେଦ ଶୁଣି ନିଷ୍ଟେ ହୋଇବ ମୁକତ ।"

(ଷୋଡ଼ଶ ପଟଳ)

## ମନ୍ତ୍ରର ଅର୍ଥ :

"ମନନାତ୍ ତ୍ରାୟତେ ଇତି ମନ୍ତ୍ରଃ"— ଅର୍ଥାତ୍ ଯାହାର ମନନ ହେତୁରୁ ତ୍ରାଣ ମିଳିଥାଏ, ତାହାର ନାମ ମନ୍ତ୍ର । ଗାୟତ୍ରୀ ତନ୍ତ୍ରରେ କୁହାଯାଇଛି— "ମନନାନ୍ମନ୍ତ୍ରମିତ୍ୟାହୁଃ" । ଅର୍ଥାତ୍ ମନନ କରାଯିବାହେତୁ ନିର୍ଦ୍ଦିଷ୍ଟ ଶବ୍ଦ ବିଶେଷକୁ ମନ୍ତ୍ର କୁହାଯାଇଥାଏ । ଶୈବ, ଶାକ୍ତ, କୌଳ, ସୌର, ଗାଣପତ୍ୟ ବୈଷ୍ଣବ ପରମ୍ପରାରେ ଅନେକ ପ୍ରକାର ବୀଜମନ୍ତ୍ର, ରହିଥିଲେ ହେଁ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାଧକମାନେ ନିମ୍ନୋକ୍ତ ମନ୍ତ୍ର ଗୁଡ଼ିକ ଉପରେ ବିଶେଷ ପ୍ରାଧାନ୍ୟ ଦେଇଛନ୍ତି ।

୧। ଅଣାକ୍ଷର ମନ୍ତ୍ର

୨। ବ୍ରହ୍ମ ଏକାକ୍ଷର ମନ୍ତ୍ର ଏବଂ କ୍ଲୀଂ ବୀଜମନ୍ତ୍ର

୩। ପ୍ରଣବ ମନ୍ତ୍ର ଓଁ

୪। କ୍ଲୀ, ଶ୍ରୀ ବୀଜମନ୍ତ୍ର (ଦ୍ୱି ଅକ୍ଷର) ଏବଂ 'ରାମ'

୫। ଓଁ ହ୍ରୀଂ, କ୍ଲୀଂ, ଶ୍ରୀଂ—ତ୍ରି ବୀଜମନ୍ତ୍ର

୬। ସୋଽହଂ ହଂସଃ-ଅଜପା ମନ୍ତ୍ର ଗୁଣଅକ୍ଷର

୭। ଓଁ ହ୍ରୀଂ, ଶ୍ରୀଂ, କ୍ଲୀଂ, ପ୍ଲୀଂ ଧ୍ଲୀଂ—ପଞ୍ଚ ବୀଜମନ୍ତ୍ର

୮। ଓଁ କ୍ଲୁଂ, ଶ୍ରୀଂ, ହ୍ରୀଂ ହ୍ରୀଂ, ଶ୍ରୀଂ, କ୍ଲୀ—ଷଡାକ୍ଷର ମନ୍ତ୍ର

୯। ପରରଜସଶବଦ—ଅବନା ମନ୍ତ୍ର (ଅଷ୍ଟାକ୍ଷର ବଶିଷ୍ଟ)

୧୦। ଗୋପୀଜନ ବଲ୍ଲଭାୟ ନମଃ—ଦଶାକ୍ଷର ଗୋପାଳମନ୍ତ୍ର

୧୧। ଓଁ ନମୋ ଭଗବତେ ବାସୁଦେବାୟ—ଦ୍ୱାଦଶାକ୍ଷର ମନ୍ତ୍ର

୧୨। ଓଁ କ୍ଲୀଂ ଶ୍ରୀଂ ହ୍ରୀଂ ଗୋପୀଜନ ବଲ୍ଲଭାୟ ନମଃ ହ୍ରୀଂ, ଶ୍ରୀଂ କ୍ଲୀଂ—ପ୍ରେମ ଷୋଡଶୀ ବା ଷୋଡ଼ଶାକ୍ଷର ମନ୍ତ୍ର

୧୩। ଓଁ କ୍ଲୁଂ କୃଷ୍ଣାୟ ଗୋବନ୍ଦାୟ ଗୋପୀଜନ ବଲ୍ଲଭାୟ ସ୍ୱାହା-ଅଷ୍ଟ ଦଶାକ୍ଷର ଗୋପାଳ ମନ୍ତ୍ର

୧୪। ଓଁ ଭୂର୍ଭୁବଃ ସ୍ୱଃ ତତ୍ସବିତୁର୍ବରେଣ୍ୟୋ ଭର୍ଗୋ ଦେବସ୍ୟ ଧୀମହି ଧୀୟୋୟୋନ ପ୍ରଚୋଦୟାତ୍--ଚବଣ ଅକ୍ଷର ବଶିଷ୍ଟ ଗାୟତ୍ରୀ ମନ୍ତ୍ର

୧୫। ଓଁ ଭୂର୍ଭୁବଃ ସ୍ୱଃ ତତ୍ସବିତୁର୍ବରେଣ୍ୟୋ ଭର୍ଗୋ ଦେବସ୍ୟଧୀମହି ଧୀୟୋ ୟୋନଃ ପ୍ରଚୋଦୟାତ୍, ପରରଜ ସଶବଦ—ଦ୍ୱାତ୍ରିଂଶ ଅକ୍ଷର ଗାୟତ୍ରୀମନ୍ତ୍ର

୧୬। ହରେ ରାମ ହରେ ରାମ ରାମ ରାମ ହରେ ହରେ
ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ— ଦ୍ୱାତ୍ରିଂଶ ଅକ୍ଷର ମହାମନ୍ତ୍ର ।

୧୭। ଚତୁଃଷଷ୍ଠୀ ବର୍ଣ୍ଣଯୁକ୍ତ ବ୍ରହ୍ମ ଗାୟତ୍ରୀମନ୍ତ୍ର
ଏହି ବ୍ରହ୍ମ ଗାୟତ୍ରୀ ମନ୍ତ୍ରର ଚତୁଃଷଷ୍ଠୀ ଅକ୍ଷର ଛନ୍ଦିତ କରିବାରେ ଦୁଇ ପ୍ରକାର ମତ ପରିଦୃଷ୍ଟ ହୋଇଥାଏ ।

(କ)

ଓଁ ଭୂଃ, ଓଁ ଭୁବଃ, ଓଁ ସ୍ୱଃ, ଓଁ ମହଃ, ଓଁ ଜନଃ, ଓଁ ତପଃ, ଓଁ ସତ୍ୟଃ ଓଁ ତତ୍ସବିତୁର୍ବରେଣୀୟଂ ଭର୍ଗୋଦେବସ୍ୟ ଧୀମହି ଧିୟୋ ୟୋନଃ ପ୍ରଚୋଦୟାତ୍ । ଓଁ ଆପୋ ଜ୍ୟୋତି ରସୋଽମୃତଂ ବ୍ରହ୍ମ ଭୂର୍ଭୁବଃ ସ୍ୱରୋଂ ସୋହଂ ହଂସଃ

(ଖ) ୧-ପ୍ରଣବ (ଦଶ) ଅକ୍ଷର ଯଥା—ଓଁରେ ଥିବା ପଞ୍ଚମାତ୍ରା ଅ, ଇ, ଉ, ଏ, ଓ ଏହା ବାହାର ପାଞ୍ଚ ରୂପ । ବିନ୍ଦୁ, ଅର୍ଦ୍ଧମାତ୍ରା, କୁଣ୍ଡଳୀ, ଦଣ୍ଡକ, ତାରକ— ଏହା ଭିତର ପାଞ୍ଚରୂପ ।

୨- ବ୍ୟାହୃତି (ବାର) ଅକ୍ଷର—ଓଁ ଭୂଃ, ଭୁବଃ ସ୍ୱଃ ମହଃ ଜନଃ ତପଃ ସତ୍ୟଃ

୩- ତ୍ରିପଦା (ଚବିଶ) ଅକ୍ଷର— ଓଁ ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ଧିୟୋ ଯୋନଃ ପ୍ରଚୋଦୟାତ୍

୪- ଚୂଡ଼ା (ଚଉଦ) ଅକ୍ଷର—ଓଁ ଆପୋ ଜ୍ୟୋତି ରସୋମୃତଂ ବ୍ରହ୍ମ ଭୂର୍ଭୁବଃ ସ୍ୱଃ (ସ୍ୱରୋଂ)

୫- ଯୋଜନସ୍ଥ ଗୁଣ ଅକ୍ଷର—ସୋହଂ ହଂସଃ । ଓଡ଼ିଶାର ଜ୍ଞାନମିଶ୍ରାଭକ୍ତି ପରମ୍ପରାରେ ଦ୍ୱିତୀୟ ପ୍ରକାର ବ୍ୟାଖ୍ୟା (ଖ) ଅନୁସୃତ । "ଶୂନ୍ୟ ସଂହିତା"ରେ ଅଚ୍ୟୁତାନନ୍ଦ ଲେଖିଛନ୍ତି—

"ବ୍ୟାହୃତି ଦ୍ୱାଦଶ ତ୍ରିପଦୀ ଚବିଶ ବର୍ଣ୍ଣି ଚୂଡ଼ା ଚତୁର୍ଦ୍ଦଶ
ପ୍ରଣବାଦି ଦଶ ଗୁଣ ପରଂ ହଂସ ଚୌଷଠି ବର୍ଣ୍ଣି ପ୍ରକାଶ ।"

(ଅଷ୍ଟବିଂଶ ଅଧ୍ୟାୟ)

ଏହା ବ୍ୟତୀତ ଆଉ କେତେକ ଅନ୍ୟାନ୍ୟ ମନ୍ତ୍ର ଜ୍ଞାନମିଶ୍ରା ଭକ୍ତିସାହିତ୍ୟରେ ଦେଖିବାକୁ ମିଳିଥାଏ । ସେ ସମସ୍ତ ମନ୍ତ୍ରଗୁଡ଼ିକରୁ କେତେକ ପାରମାର୍ଥିକ ଉଦ୍ଦେଶ୍ୟରେ ଏବଂ କେତେକ ବ୍ୟାବହାରିକ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ । ବ୍ୟାବହାରିକ ଦିଗ ପାଇଁ ଉଦ୍ଦିଷ୍ଟ ମନ୍ତ୍ରଗୁଡ଼ିକ କେବଳ ଲୋକ କଲ୍ୟାଣ ପାଇଁ ଯଥା— ବିଦ୍ୟା, ଧନ, ଯଶ, ବାକ୍‌ଶକ୍ତି, ସନ୍ତାନ, ଭକ୍ତି ଆଦି ପ୍ରାପ୍ତି ପାଇଁ ଓ ରୋଗ, ଶୋକ, ବିପତ୍ତି ବିମୋଚନ ପାଇଁ ଉଦ୍ଦିଷ୍ଟ । ଏହା ମଧ୍ୟରୁ କୌଣସି ମନ୍ତ୍ର ମାରଣ, ଉଚ୍ଚାଟନ, ବଶୀକରଣ ବିଦ୍ୱେଷଣ ଭଳି ଅନିଷ୍ଟକାରକ ଉଦ୍ଦେଶ୍ୟରେ ଲକ୍ଷିତ ହୋଇନାହିଁ । ଓଡ଼ିଶାର ଜ୍ଞାନମିଶ୍ରାଭକ୍ତି ସାଧକବୃନ୍ଦ ଲୋକ କଲ୍ୟାଣ ଓ ଲୋକମାନଙ୍କ ମଧ୍ୟରେ

ଆଧ୍ୟାତ୍ମିକଭାବ ଜାଗରଣ ପାଇଁ ନିଜର ଜୀବନକୁ ଉତ୍ସର୍ଗ କରିଦେଇଥିଲେ । ତାନ୍ତ୍ରିକଙ୍କ ଭଳି ତନ୍ତ୍ରସାଧନା ଦ୍ୱାରା ନିଜର ଅଲୌକିକତା ପ୍ରଦର୍ଶନ ପୂର୍ବକ ଅସମ୍ଭବ କାର୍ଯ୍ୟ ସମ୍ଭବ କରି ଅର୍ଥ ଉପାର୍ଜ୍ଜନ କରିବା କିମ୍ବା ମାରଣ ବିଦ୍ୱେଷଣ ମନ୍ତ୍ର ପ୍ରୟୋଗ କରିବା ସେମାନଙ୍କ ସାଧନାର ଲକ୍ଷ୍ୟ ନଥିଲା । ସେମାନେ ଯେଉଁ ମନ୍ତ୍ର ଗୁଡ଼ିକର ବହୁ ବର୍ଣ୍ଣନା କରିଛନ୍ତି ସେଗୁଡ଼ିକର ଜପଦ୍ୱାରା ସେମାନେ ବ୍ରହ୍ମାନୁଭୂତ ଓ ମୋକ୍ଷପ୍ରାପ୍ତି ପାଇଁ ନିଜର ସାଧନା ଭିତରେ ଅନ୍ତର୍ଭୁକ୍ତ କରି ନେଇଥିଲେ । ଏଥିରେ ଜଡ଼ିତ ଅଛି ସେମାନଙ୍କର ପ୍ରତ୍ୟକ୍ଷ ଅନୁଭୂତ ଏବଂ ଏହା କେବଳ ଦୀକ୍ଷାପ୍ରାପ୍ତଶିଷ୍ୟମାନଙ୍କ ପାଇଁ ଉଦ୍ଦିଷ୍ଟଥିବାରୁ ସାଙ୍କେତିକ ଭାବରେ ଲିଖିତ ହୋଇଛି । ଏଥିପାଇଁ ସର୍ବସାଧାରଣଙ୍କ ପକ୍ଷରେ ଏହା ଅସ୍ପଷ୍ଟ, ଦୁର୍ବୋଧ, ଅର୍ଥହୀନ ଓ ବିରକ୍ତିକର ବୋଧ ହୋଇଥାଏ । ଏହାର ଅନ୍ତର୍ନିହିତ ଅର୍ଥ ଓ ଲକ୍ଷ୍ୟ ଥରେ ବୁଝିନେଲେ ତାହା ଯେପରି ସୁଖପାଠ୍ୟ ହୋଇଥାଏ, ସେହିପରି କୌତୁହଳୋଦ୍ଦୀପକ ହୋଇଥାଏ ।

ଜ୍ଞାନମିଶ୍ରା ଭକ୍ତସାହିତ୍ୟ ରାଧାକୃଷ୍ଣଙ୍କର ସ୍ୱରୂପକୁ କିପରି ମନ୍ତ୍ର ଓ ଯନ୍ତ୍ର ମଧ୍ୟରେ ଉପଲବ୍ଧି କରିବାକୁ ଉପଦେଶ ଦେଇଛି, ତାହାର ଏକ ଦୃଷ୍ଟାନ୍ତ ନିମ୍ନରେ ଦିଆଯାଉଛି—

'ରସାମୃତ ସିନ୍ଧୁ' ନାମକ ଗ୍ରନ୍ଥରେ ଅଚ୍ୟୁତାନନ୍ଦ ରାଧାକୃଷ୍ଣ ରାସଲୀଳାର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ ଲେଖିଛନ୍ତି— ସହସ୍ରଦଳଚକ୍ରରେ ଅନନ୍ତଙ୍କର ସ୍ଥିତି ଏବଂ ସହସ୍ରଦଳ କମଳର ସହସ୍ର ପାଖୁଡ଼ା ହେଉଛି ତାଙ୍କର ସହସ୍ର ଫଣା । ସହସ୍ରଦଳରେ ସହସ୍ରଗୋପୀ ଓ ସହସ୍ର କୃଷ୍ଣ ରହିଛନ୍ତି । ଏହା ଉପରେ ଓଁ କାରର ଯେଉଁ ବିନ୍ଦୁ ଅଛି, ତାହା ହେଉଛି ରାଧାକୃଷ୍ଣଙ୍କର ରତ୍ନରେ ନିର୍ମିତ ରାସ-ଲୀଳା ମଣ୍ଡପ । ଏଠାରେ ରାଧାକୃଷ୍ଣ ନିତ୍ୟରାସ କରୁଅଛନ୍ତି । ରାଧାକୃଷ୍ଣଙ୍କର ରତ୍ନମଣ୍ଡପ ତଳକୁ ଚଉଷଠି ଦଳ ପଦ୍ମପାଖୁଡ଼ା ଅଛି । ଏହାର ପ୍ରତିଦଳରେ ଗୋଟିଏ ଗୋପୀ ଓ ଗୋଟିଏ କୃଷ୍ଣ ରହି କ୍ରୀଡ଼ା କରୁଛନ୍ତି । ଏହା ଉପରକୁବତିଶ-ଦଳ ପଦ୍ମ ପାଖୁଡ଼ା ଅଛି । ସେଠାରେ ମଧ୍ୟ ପ୍ରତି ଦଳରେ ଗୋଟିଏ ଗୋପୀ ଓ ଗୋଟିଏ କୃଷ୍ଣ କ୍ରୀଡ଼ା କରୁଛନ୍ତି । ଏହା ଉପରକୁ ଥିବା ଷୋଳଦଳ ପାଖୁଡ଼ାରେ ପ୍ରତ୍ୟେକ ପାଖୁଡ଼ାରେ ମଧ୍ୟ ଗୋଟିଏ ଗୋପୀ, ଗୋଟିଏ କୃଷ୍ଣ କ୍ରୀଡ଼ାରତ । ଷୋଳଦଳ ଉପରକୁ ଥିବା ଅଷ୍ଟଦଳ ପାଖୁଡ଼ାର ପ୍ରତ୍ୟେକ ପାଖୁଡ଼ାରେ ଅଷ୍ଟପାଟବଂଶୀ ରହିଛନ୍ତି । ଅଷ୍ଟଦଳ ଉପରକୁ ଷଡ଼ଦଳରେ ଷଡ଼ସଖୀ ଏବଂ ତାହା ଉପରକୁ ଥିବା ତ୍ରିଦଳରେ ରାଧାକୃଷ୍ଣ ଚନ୍ଦ୍ରାବଳୀ ରହିଛନ୍ତି । ତ୍ରିଦଳ ଉପରେ ଥିବା ଦ୍ୱିଦଳରେ ରାଧା ଓ କୃଷ୍ଣ ଯୁଗଳ ଲୀଳା କରୁଛନ୍ତି । ଦ୍ୱିଦଳ

ଉପରକୁ ଥିବା ଏକ ଦଳରେ ରାଧାକୃଷ୍ଣ ଅଦ୍ୱୟଯୁଗଳଙ୍କ ରୂପରେ ରହି ଲୀଳା କରୁଛନ୍ତି । 'ଶୂନ୍ୟ ସଂହିତା' ଗ୍ରନ୍ଥରେ ସେ ଏହି ଲୀଳାକୁ କେବେ ଦୃଶ୍ୟ କେବେ ଅଦୃଶ୍ୟ ହୁଏ ବୋଲି କହିଛନ୍ତି । ଅଚ୍ୟୁତାନନ୍ଦଙ୍କର ଏହି ବର୍ଣ୍ଣନା ସମ୍ପୂର୍ଣ୍ଣ ସାଙ୍କେତିକ । ମନ୍ତ୍ରତନ୍ତ୍ରରେ ପ୍ରବେଶ କଲେ ତାଙ୍କର 'ନିତ୍ୟରହାସ' ଗ୍ରନ୍ଥର ବର୍ଣ୍ଣିତ ଉପରୋକ୍ତ ସାଙ୍କେତିକ ବର୍ଣ୍ଣନାର ଅର୍ଥ କେତେକାଂଶରେ ବୁଝି ହୋଇଥାଏ । ଏଥିରେ ବର୍ଣ୍ଣିତ ଅନନ୍ତ ହେଉଛନ୍ତି ଓଁ ମନ୍ତ୍ରର 'ଓ' । ପୂର୍ବରୁ ସୃଷ୍ଟିତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ କୁହାଯାଇଛି କୁଣ୍ଡଳାକୃତି 'ଓ' ହେଉଛନ୍ତି ବଳଦେବ ବା ଶେଷଦେବ । ଶେଷଦେବ ହେଉଛନ୍ତି ଅନନ୍ତ ସର୍ପ । 'ଓ' ର କୁଣ୍ଡଳାକୃତିକୁ ଶେଷଦେବଙ୍କର (ସର୍ପର) କୁଣ୍ଡଳାକୃତି ସହ ସାମ୍ୟ ପ୍ରଦର୍ଶନ କରାଯାଇଛି । ପଞ୍ଚସଖା ପ୍ରାୟ ଅନେକସ୍ଥଳରେ ଅନନ୍ତଙ୍କର ଶଯ୍ୟା ଉପରେ ରାଧାକୃଷ୍ଣ ଲୀଳା କରୁଥିବା ବର୍ଣ୍ଣନା କରିଛନ୍ତି । ଅନନ୍ତଙ୍କର ସହସ୍ର ଫଣାକୁ ସହସ୍ର ଦଳ ପଦ୍ମ ସଙ୍ଗରେ ତୁଳନା କରାଯାଇଥିବାର ଦେଖାଯାଇଥାଏ । ସେ 'ରସାମୃତସିନ୍ଧୁ' ଗ୍ରନ୍ଥରେ ଯାହାକୁ ଚଉଷଠୀ ଦଳ କହିଛନ୍ତି, ନିତ୍ୟ ରାହାସଗ୍ରନ୍ଥରେ ତାକୁ ବ୍ରହ୍ମ ଗାୟତ୍ରୀ ପାଦରୂ କହିଛନ୍ତି । ବ୍ରହ୍ମ ଗାୟତ୍ରୀ ମନ୍ତ୍ର ବିଷୟରେ ଅଚ୍ୟୁତାନନ୍ଦ 'ଛୟାଳିଶ ପଟଳ' ଓ 'ଶୂନ୍ୟସଂହିତା' ଗ୍ରନ୍ଥରେ ବାରମ୍ବାର ବର୍ଣ୍ଣନା କରିଛନ୍ତି । ବ୍ରହ୍ମଗାୟତ୍ରୀ ଚତୁଃଷଷ୍ଠୀ ବର୍ଣ୍ଣ ବିଶିଷ୍ଟ । 'ଶୂନ୍ୟସଂହିତା' (ଅଷ୍ଟବିଂଶ ଅଧ୍ୟାୟ)ରେ ସେ ଲେଖିଛନ୍ତି—

'ବ୍ୟାହୃତି ଦ୍ୱାଦଶ ତ୍ରିପଦା ଚବିଶ ବର୍ଣ୍ଣ ଚୂଡ଼ା ଚତୁର୍ଦ୍ଦଶ
ପ୍ରଣବାଦି ଦଶ ଗୁରୁ ପରହଂସ ଚୌଷଠି ବର୍ଣ୍ଣ ପ୍ରକାଶ ।"

କଥିତ ପୂର୍ବରୁ ବ୍ରହ୍ମଗାୟତ୍ରୀର ଏହି ଚତୁଃଷଷ୍ଠୀ ବର୍ଣ୍ଣ ବିଷୟରେ ଆଲୋଚନା କରାଯାଇଛି । ତେଣୁ ଚତୁଷଷ୍ଠୀ ଦଳ ପଦ୍ମ ପାଖୁଡ଼ା ଏବଂ ପ୍ରତ୍ୟେକ ପାଖୁଡ଼ାରେ ଯେଉଁ କୃଷ୍ଣ-ଗୋପୀ କଥା ସେ ଲେଖିଛନ୍ତି, ତାହା ହେଉଛି ବ୍ରହ୍ମ ଗାୟତ୍ରୀର ଚତୁଷଷ୍ଠୀ ବର୍ଣ୍ଣ । ଅନୁରୂପ ବର୍ଣ୍ଣନା ଗୋପାଳଦାସଙ୍କ 'ପାଦପଦ୍ମ ସୁଧାନିଧି' ଗ୍ରନ୍ଥରେ ଦେଖିବାକୁ ମିଳିଥାଏ, ଯେଉଁଠି ସେ କହିଛନ୍ତି— 'ଚଉଷଠି ଦଳେ ଚଉଷଠି ବନ୍ଧ ଲଗି ରମଣୀ ଘେରିତ ଯେ ବୃକ୍ଷେ ଯାମଳା" । ଚତୁଃଷଷ୍ଠୀ ଦଳ ଉପରକୁଥିବା ବତିଶ ଦଳ ହେଉଛି ବତିଶ ବର୍ଣ୍ଣ ବିଶିଷ୍ଟ ମହାମନ୍ତ୍ର । ଏହିମନ୍ତ୍ରକୁ ନିରନ୍ତର ଘୋଷିବାକୁ ଅଚ୍ୟୁତାନନ୍ଦ କହିଛନ୍ତି—

"ବତିଶ ଅକ୍ଷର ନାମ ନିରନ୍ତରେ ଘୋଷ
ଆଉ ଯେତେ ମନ୍ତ୍ରମାନ ଏଥିରୁ ପ୍ରକାଶ ।

(ଶୂନ୍ୟସଂହିତା, ପ୍ରଥମ ଅଧ୍ୟାୟ)

ବର୍ତ୍ତଣ ଦଳ ଉପରକୁ ଥିବା ଷୋଡ଼ଶ ଦଳ ହେଉଛୁ ପ୍ରେମ ଷୋଡ଼ଶୀ ମନ୍ତ୍ର । ହ୍ରୀଂ, କ୍ଲୀଂ, ଶ୍ରୀଂ ଓ ଶ୍ରୀଂ, କ୍ଲୀଂ, ହ୍ରୀଂ—ଏହି ଛଅଟି ବୀଜମନ୍ତ୍ରକୁ ୨ଟି ପରସ୍ପର ସଂଲଗ୍ନ ବିପରୀତମୁଖୀ ତ୍ରିଭୁଜର ଛଅଟି କୋଣରେ ସ୍ଥାପନ କଲେ ତାହା ଷଟ୍‌କୋଣାକୃତ ଯନ୍ତ୍ର ହୁଏ । ଏହା ମଧ୍ୟରେ ଗୋପୀଜନବଲ୍ଲଭାୟ ଦଶାକ୍ଷର ମନ୍ତ୍ରକୁ ସ୍ଥାପନ କଲେ ପ୍ରେମ ଷୋଡ଼ଶୀମନ୍ତ୍ର ହୁଏ । ଯଶୋବନ୍ତ ଦାସଙ୍କ 'ପ୍ରେମଭକ୍ତି ଗୀତା''ର ତୃତୀୟ ଅଧ୍ୟାୟରେ ଏ ପ୍ରକାର ବର୍ଣ୍ଣନା ରହିଛୁ । ଷୋଳଦଳ ଉପରକୁ ଦ୍ୱାଦଶ ଦଳ ରହିଛୁ । ଏହି ଦ୍ୱାଦଶଦଳରେ "ଓଁ ନମୋ ଭଗବତେ ବାସୁଦେବାୟ" ମନ୍ତ୍ରର ବାରଟି ବର୍ଣ୍ଣ ଅବସ୍ଥିତ । ଅଚ୍ୟୁତାନନ୍ଦ ଲେଖିଛନ୍ତି—

"ଦ୍ୱାଦଶ ଅକ୍ଷର ଜାତ ଗୋସାଇଁ
ରାଧାକୃଷ୍ଣଙ୍କର ଲୀଳାର ଭୂଇଁ ।"
(ଅଚ୍ୟୁତାନନ୍ଦ ରଚନାବଳୀ, ରାହାସଖଣ୍ଡ, ପୃ ୭)

ଏହାକୁ କବି ଦ୍ୱାଦଶ ଗୋପାଳ ବୋଲି କହିଛନ୍ତି । ଯଥା—

'ସୁଦାମ ସୁବଳ ଯେ ଦ୍ୱାଦଶ ଗୋପାଳ
ବତିଶ ନାୟିକା ଆଦି ଅଛନ୍ତି ସଙ୍ଗର ।"
(ତତ୍ରୈବ, ପୃ ୨୫)

ଏହା ଉପରକୁ ଥିବା ଅଷ୍ଟଦଳ ହେଉଛୁ ଆଠ ଅକ୍ଷର ବିଶିଷ୍ଟ ଅବନା ମନ୍ତ୍ର 'ପର ରଜ ସଣବାଢ଼' । ଛବିଶ ପଟଳରେ ଅଚ୍ୟୁତାନନ୍ଦ ଲେଖିଛନ୍ତି—

"ଅବନା ଆଠ ଯେକାଳେ ଅଷ୍ଟାଙ୍ଗେ ମିଶିବ
ବ୍ରହ୍ମ ଗାୟତ୍ରୀର ସ ରତନ୍ତ୍ର ପ୍ରକାଶିବ ।
(ଷୋଡଶ ପଟଳ)

ଅଷ୍ଟଦଳ ଉପରକୁ ଥିବା ଷଡ଼ ଦଳ ଅଛୁ । କ୍ଲୀଂ, ଶ୍ରୀଂ, ହ୍ରୀଂ, ହ୍ରୀଂ, କ୍ଲୀଂ, ଶ୍ରୀଂ ପରସ୍ପରକୁ ଛେଦ କରୁଥିବା ଦୁଇଟି ବିପରୀତମୁଖୀ ତ୍ରିକୋଣରେ ମନ୍ତ୍ରକୁ ସ୍ଥାପନ କଲେ ଷଡାକ୍ଷର ମନ୍ତ୍ର ପୂରିତ ଷଟକୋଣାକୃତ ଯନ୍ତ୍ର ବା ରାଧାକୃଷ୍ଣଙ୍କର ପ୍ରେମପଲଙ୍କ ହୁଏ । (ବ୍ରହ୍ମ ସଂହିତାର କର୍ଣ୍ଣିକାରଂ ମହଦ୍‌ଯନ୍ତ୍ରଂ ଷଟ୍‌କୋଣଂ ବଜ୍ରକୀଳକଂ । ଷଡଙ୍ଗ ଷଟ୍ ପଦୀସ୍ଥାନଂ ପ୍ରକୃତ୍ୟାପୁରୁଷେଣ ଦ୍ରଷ୍ଟବ୍ୟ ) ବଳରାମ ଦାସ 'ବେଦାନ୍ତସାର ଗୁପ୍ତଗୀତା'ରେ ଲେଖିଛନ୍ତି—

"ଷଟ୍‌କୋଣ ପଲଙ୍କ ମଧ୍ୟରେ
ଶ୍ରୀକୃଷ୍ଣ ପଦ୍ମର କେଶରେ
କାମ ବୀଜର ମଧ୍ୟେ ହଂସ
ଶ୍ରୀରାଧା ଅଙ୍ଗରେ ବହଂସ ।"

ଷଡ଼ଦଳ ଉପରକୁ ଥିବା ଚତୁର୍ଦ୍ଦଳ ହେଉଛି ସୋହଂହଂସ— ଏହି ଗୁରୁଅକ୍ଷର ବଶିଷ୍ଟ ମନ୍ତ୍ରର ସ୍ଥାନ । କେତେକ ସ୍ଥଳରେ ଏହାକୁ 'ସିଦ୍ଧିଗୁରୁ' ଗୁରୁ-ଅକ୍ଷରର ସ୍ଥାନ କୁହାଯାଇଛି । ଚତୁର୍ଦ୍ଦଳ ଉପରକୁ ଥିବା ତ୍ରିଦଳ ହେଉଛି, ହ୍ରୀଂ, କ୍ଲୀଂ, ଶ୍ରୀଂ, ବୀଜମନ୍ତ୍ର ଜପର ସ୍ଥାନ । ଏହା ଉପରକୁ ଥିବା ଦ୍ୱିଦଳ ହେଉଛି କ୍ଲୀଂ ( କାମବୀଜ କୃଷ୍ଣ ) ଏବଂ ଶ୍ରୀଂ ( ରମାବୀଜ ରାଧା ) ବୀଜର ମିଳନ ସ୍ଥଳ । ଅଚ୍ୟୁତାନନ୍ଦ ରହାସ ବନ୍ଦନା ଗ୍ରନ୍ଥରେ ମଧ୍ୟ ଲେଖିଛନ୍ତି—

"ଶ୍ରୀ ବୀଜ ରାଧିକା ସୁନ୍ଦର । କ୍ଲୀ ବୀଜ ଶ୍ରୀକୃଷ୍ଣ ଶରୀର
ରାଧାକୃଷ୍ଣର ଲୀଳାଗୁଣ । ତୁମ୍ଭେ ରହାସ କାରଜଣ ।
( ଅଷ୍ଟମ ଅଧ୍ୟାୟ )

ଉପରୋକ୍ତ ଦୁଇଦଳରେ 'ରାମ' ଦୁଇ ଅକ୍ଷର ରହିଥିବା କଥା ଯଶୋବନ୍ତ ପ୍ରକାଶ କରିଛନ୍ତି । 'ରା' ହେଉଛନ୍ତି ରାଧା ଏବଂ 'ମ' ହେଉଛନ୍ତି କୃଷ୍ଣ, 'ରାମ' ହେଉଛି ରାଧାକୃଷ୍ଣଙ୍କର ମିଳିତ ରୂପ ।

"ର ଆ ଅକ୍ଷର ରାଧା ହୋଇ
ମ ଅକ୍ଷର କୃଷ୍ଣ ସେହି ।"
( ପ୍ରେମଭକ୍ତି ବ୍ରହ୍ମଗୀତା, ଦ୍ୱିତୀୟ ଅଧ୍ୟାୟ)

ଦ୍ୱିଦଳ ଉପରେ ଥିବା ଏକ ଦଳରେ ଓଁ ମନ୍ତ୍ରର ବିନ୍ଦୁ ଅବସ୍ଥିତ । ଏହା ଓଁକାର ଧ୍ୱନିର କ୍ଷୀଣତମ ଶେଷ ଧ୍ୱନି । ଏହା ହେଉଛି ରାଧାକୃଷ୍ଣଙ୍କର ଅଦ୍ୱୟ ଯୁଗଳଙ୍କ ରୂପ । ବଳରାମ ଦାସ 'ବେଦାନ୍ତସାର ଗୁପ୍ତଗୀତା'ରେ ଏହାକୁ କ୍ଲୀଂ କାମବୀଜର ସ୍ଥାନ କହିଛନ୍ତି ଏବଂ କ୍ଲୀଂ କାମବୀଜ ହେଉଛନ୍ତି ଶ୍ରୀକୃଷ୍ଣ । ତାହା ମଧ୍ୟରେ ଶ୍ରୀଂ ବୀଜ ରୂପିଣୀ ରାଧା ଗୁପ୍ତ ହୋଇ ଅଭେଦ ଭାବରେ ରହିଛନ୍ତି । ବ୍ରହ୍ମସଂହିତାରେ ମଧ୍ୟ ଏହିଭଳି ବର୍ଣ୍ଣନା ଦେଖିବାକୁ ମିଳେ । ଯଥା—

"ପ୍ରେମାନନ୍ଦ ମହାନନ୍ଦ ରସେନା ବସ୍ଥିତଂହି ଯତ୍
ଜ୍ୟୋତି ରୂପେଣ ମନୁନା କାମବୀଜେନ ସଙ୍ଗତଂ ।"

ଅଚ୍ୟୁତାନନ୍ଦ ମଧ୍ୟ ଲେଖିଛନ୍ତି— କ୍ଲୀଂ ବୀଜମନ୍ତ୍ର ପରେ ଶୂନ୍ୟଧାମ ରହିଛି ।

"କ୍ଲୀଂ ପରେ ଦେଖ ଗୁପତ ଭୂଇଁ
ରୂପରେଖ ବର୍ଣ୍ଣ ସେଠାରେ ନାହିଁ ।"

(ଅଚ୍ୟୁତାନନ୍ଦ ରଚନାବଳୀ, ଗୁହ୍ୟାସଖଣ୍ଡ, ପୃ-୪)

ଅନ୍ୟଏକ ସ୍ଥଳରେ ସେ ଶେଷ ଏକଦଳକୁ ଓଁ ବୋଲି ଲେଖିଛନ୍ତି । ଏଠାରେ 'ଓଁ' କହିଲେ ଓଁର ବିନ୍ଦୁକୁହିଁ ବୁଝିବାକୁ ହେବ, କାରଣ ଏହା ଏକ ଶୁକ୍ଲ ବର୍ଣ୍ଣର ଜ୍ୟୋତିବିନ୍ଦୁ ବିଶେଷ)

"ତହିଁପରେ ଥିବ ପ୍ରଥମ ଦଳ
ଦଶଇଟି ତା'ର ବର୍ଣ୍ଣ ଶ୍ୱେତଳ
ଓଁକାର ଅକ୍ଷର ବସିଛି ନଇଁ
ଅଚ୍ୟୁ ଗୁହ୍ୟାସର ଗୋଲୋକ ଭୂଇଁ ।"

(ଅଚ୍ୟୁତାନନ୍ଦ ରଚନାବଳୀ, ଗୁହ୍ୟାସଖଣ୍ଡ, ପୃ ୧୩)

ଉପରେ ବର୍ଣ୍ଣିତ ମନ୍ତ୍ର ଗୁଡ଼ିକୁ ନିମ୍ନ ପ୍ରକାରେ ସଜାଇ ଦିଆଯାଇପାରେ ।

| | | | |
|---|---|---|---|
| ଏକାକ୍ଷର ମନ୍ତ୍ର | ଏକ ଅକ୍ଷର | ଏକ ଦଳ | ରାଧାକୃଷ୍ଣଙ୍କର ଅଭେଦ୍ୟ-ରୂପ |
| ଦ୍ୱି ଅକ୍ଷର ମନ୍ତ୍ର | ଦୁଇ ଅକ୍ଷର | ଦୁଇ ଦଳ | ରାଧାକୃଷ୍ଣ |
| ତ୍ରିବୀଜ ମନ୍ତ୍ର | ତିନି ଅକ୍ଷର | ତିନି ଦଳ | ରାଧା, କୃଷ୍ଣ, ଚନ୍ଦ୍ରାବଳୀ |
| ଚଉ ଅକ୍ଷର ମନ୍ତ୍ର | ଚାରି ଅକ୍ଷର | ଚାରି ଦଳ | ଚତୁର୍ବେଦର ସ୍ଥାନ |
| ଷଡ଼ାକ୍ଷର ମନ୍ତ୍ର | ଛଅ ଅକ୍ଷର | ଛଅ ଦଳ | ଷଡ଼ ସଖୀ |
| ଅବନା ମନ୍ତ୍ର | ଆଠ ଅକ୍ଷର | ଆଠ ଦଳ | ଅଷ୍ଟପାଟବଂଶୀ |
| ଦ୍ୱାଦଶାକ୍ଷର ମନ୍ତ୍ର | ଦ୍ୱାଦଶ ଅକ୍ଷର | ଦ୍ୱାଦଶ ଦଳ | ଦ୍ୱାଦଶ ଗୋପାଳ |
| ପ୍ରେମଷୋଡ଼ଶୀ ମନ୍ତ୍ର | ଷୋଳ ଅକ୍ଷର | ଷୋଳ ଦଳ | ଷୋଡ଼ଶଗୋପୀ ଓ କୃଷ୍ଣ |
| ମହାମନ୍ତ୍ର | ବତିଶ ଅକ୍ଷର | ବତିଶ ଦଳ | ବତିଶ ଗୋପୀ ଓ କୃଷ୍ଣ |
| ବ୍ରହ୍ମ ଗାୟତ୍ରୀ | ଚତୁଃଷଷ୍ଟୀ ଅକ୍ଷର | ଚତୁଃଷଷ୍ଟୀ ଦଳ | ଚତୁଃଷଷ୍ଟୀ ଗୋପୀ ଓ କୃଷ୍ଣ |

ଓଡ଼ିଶାର ଜ୍ଞାନମିଶ୍ରାଭକ୍ତ ଧର୍ମ-ଉପାସକ ବୈଷ୍ଣବ ବୃନ୍ଦ ଯେଉଁ ରାଧାକୃଷ୍ଣ ରାସଲୀଳାର ବର୍ଣ୍ଣନା କରିଛନ୍ତି, ତାହା ମନ୍ତ୍ରମାନଙ୍କର ଲୀଳା ମାତ୍ର । ରାଧା, କୃଷ୍ଣ, ଗୋପୀ, ଗୋପାଳ, ଅଷ୍ଟପାଟବଂଶୀ ଏମାନେ ସମସ୍ତେ ସେମାନଙ୍କ ଦୃଷ୍ଟିରେ ମନ୍ତ୍ରମୟ ତନୁଧାରୀ ମାତ୍ର । ଓଡ଼ିଆ ଜ୍ଞାନମିଶ୍ରାଭକ୍ତ ସାହିତ୍ୟରେ ଯେଉଁ ପ୍ରଣବ ବୀଜ ମନ୍ତ୍ର ଆଦିର ବର୍ଣ୍ଣନା କରାଯାଇଛି, ସେ ସମ୍ବନ୍ଧରେ ଏଠାରେ ସଂକ୍ଷିପ୍ତ ସୂଚନା ଦିଆଯାଉଛି ।

**ଅଣାକ୍ଷର ମନ୍ତ୍ର :** ଅଚ୍ୟୁତାନନ୍ଦ ଅଣାକ୍ଷର ମନ୍ତ୍ରର ଉପାସକ ଥିଲେ । ସେ ତାଙ୍କର ବିଭିନ୍ନ ଗ୍ରନ୍ଥରେ ଅଣାକ୍ଷର ମନ୍ତ୍ର, ଅଣାକ୍ଷର ଯନ୍ତ୍ର ବିଷୟ ଉଲ୍ଲେଖ କରିଛନ୍ତି । ଅଚ୍ୟୁତାନନ୍ଦଙ୍କ 'ଜନ୍ମ ଶରଣ'ରେ ଉଲ୍ଲେଖ ଅଛି—

"ଅଣାକ୍ଷର ମନ୍ତ୍ର ତତ୍ତ୍ୱ ଉପଦେଶ
ପରଂବ୍ରହ୍ମ ଗୁରୁ ଅଚ୍ୟୁତ ଯେ ଦାସ ।"

( ପୃ ୧୬ )

କୌଣସି ତନ୍ତ୍ର ଗ୍ରନ୍ଥରେ ଅଣାକ୍ଷର ମନ୍ତ୍ରର ଉଲ୍ଲେଖ ଦେଖିବାକୁ ମିଳେ ନାହିଁ । ତେଣୁ ମନେହୁଏ, ଏହା ଅଚ୍ୟୁତାନନ୍ଦଙ୍କର ନିଜସ୍ୱ କଳ୍ପନା । ଅଣାକ୍ଷର କହିଲେ ସାଧାରଣତଃ ଅକ୍ଷରବିହୀନ ମନ୍ତ୍ରକୁ ବୁଝାଏ । ଅଚ୍ୟୁତାନନ୍ଦ ଯେଉଁ ଅଣାକ୍ଷର ମନ୍ତ୍ରର ଚିତ୍ର ଦେଇଛନ୍ତି, ସେଥିରେ ପାଞ୍ଚଟି ବର୍ଣ୍ଣର ସମାହାର ହୋଇଛି । କିନ୍ତୁ ତାହାକୁ କୌଣସି ଗୋଟିଏ ବର୍ଣ୍ଣ କୁହାଯାଇ ପାରିବ ନାହିଁ । ଏହି ପାଞ୍ଚଟି ବର୍ଣ୍ଣ ପ୍ରକୃତରେ ହେଉଛି ପ୍ରଣବ ବା ଓଁ ର ପାଞ୍ଚଟି ବାହାର ସ୍ୱର । ଅଚ୍ୟୁତଙ୍କ ଗ୍ରନ୍ଥରେ ଯେଉଁ ଅଣାକ୍ଷର ମନ୍ତ୍ରର ଚିତ୍ର ଦିଆଯାଇଛି, ତାହା ନିମ୍ନରେ ପ୍ରଦତ୍ତ ହେଲା ।

ଥ୍ରୋଂ

( ଏହି ଅଣାକ୍ଷର ମନ୍ତ୍ର ଅଚ୍ୟୁତାନନ୍ଦଙ୍କ 'ଜନ୍ମ ଶରଣ' ପୃ ୫୬ ରୁ ଗୃହୀତ )

ଏଥିରେ ଆ, ଇ, ଉ, ଏ, ଓ ଏହି ପାଞ୍ଚଟି ବର୍ଣ୍ଣ ବା ବାହାର ସ୍ୱର ବା ବାହାର ରୂପ ରହିଛି ।

**ବ୍ରହ୍ମ ଏକାକ୍ଷର ମନ୍ତ୍ର :** ଅଣାକ୍ଷର ଭଳି ବ୍ରହ୍ମ ଏକାକ୍ଷର ମନ୍ତ୍ରର ଉଲ୍ଲେଖ ଅଚ୍ୟୁତାନନ୍ଦ ବାରମ୍ବାର କରିଛନ୍ତି ଏବଂ ଏହି ବୀଜମନ୍ତ୍ର କିପରି ଲେଖାଯିବ, ତାହାର ବିବରଣୀ ଶୂନ୍ୟସଂହିତାରେ ଦେଇଛନ୍ତି ।

"ମଧ୍ୟେ ବିନ୍ଦୁ ହ-କାର ରୂପେ ହରି
ର-କାର ସ୍ୱରୂପେ ରାଧା ପାଦ ବନ୍ଦୀ କରି
X X X
ହ-କାରକୁ ଘେନଣ ଅ-କାର ଶୂନ୍ୟ ଝଷି
ହ-କାରର ମଧ୍ୟରେ ନାମ ବିଶ୍ରାମିଲା ଆସି ।
ଆ-କାରକୁ ଘେନଣ ଉ-କାର ମିଶିଗଲା
ଏ-କାରକୁ ଇ-କାର ଯେ ଓ-କାର ମିଶିଗଲା
ହ-କାର ସବୁର ମୂଳହେତୁ କରି ଘେନ
ଚତୁର୍ଦ୍ଦଶାକ୍ଷର ନାମ ଏକାକ୍ଷର ବ୍ରହ୍ମ ।"

(ତୃତୀୟ ଅଧ୍ୟାୟ)

ଉକ୍ତ ବିବରଣୀ ଅନୁଯାୟୀ ଏକାକ୍ଷର ବ୍ରହ୍ମ ବୀଜମନ୍ତ୍ରର ରୂପ ଏହିପରି ହେବ—

# ହ୍ରୌଁ

ଏହି ଅକ୍ଷର ଲେଖା ପ୍ରଣାଳୀ ମଧ୍ୟ ଅଚ୍ୟୁତାନନ୍ଦଙ୍କ ଦ୍ୱାରା ଉଦ୍ଭାବିତ ହୋଇଥିବା ମନେହୁଏ ।

**ପ୍ରଣବ ମନ୍ତ୍ର ବା ଓଁ :—** ପ୍ରଣବ ବା ଓଁ-କାରକୁ ପ୍ରାୟ ସମସ୍ତ ଜ୍ଞାନମିଶ୍ରା ଭକ୍ତ ସାଧକ ସର୍ବ ପ୍ରଧାନ ସ୍ଥାନ ଦେଇଛନ୍ତି । ସେ ସମ୍ବନ୍ଧରେ ବିସ୍ତୃତ ବର୍ଣ୍ଣନା ଶୂନ୍ୟସଂହିତା'ର ବିବରଣୀରୁ ଜଣାଯାଏ । ଉପନିଷଦ୍ ଏବଂ ଶ୍ରୀମଦ୍ଭଗବଦ୍ ଗୀତାରେ ଓଁ କୁ ବ୍ରହ୍ମ କୁହାଯାଇଛି । ଗୋରେଖ ନାଥ ମଧ୍ୟ ଓଁ କାରକୁ ସବୁ ମନ୍ତ୍ରର ମୂଳ ବୋଲି କହିଛନ୍ତି ।

"ଓଁ କାର ଅଟନ୍ତି ମୂଳ ମନ୍ତ୍ର ଧାରା
ଓଁ କାର ଦାପିଲେ ସକଳ ସଂସାର
ଓଁ କାର ନାଭି ହୁଦୈ ଦେବଗୁରୁ ସୋଇ
ଓଁ କାର ସାଧେ ବିନା ସିଧି ନ ପାଇ" ।

ଗୋରେଖବାଣୀ, ୧୨/୧

ଓଁ ଦଶ ଭାଗରେ ବିଭକ୍ତ । ପାଞ୍ଚଭାଗ ହେଉଛି ଭିତର ରୂପ ଏବଂ ପାଞ୍ଚଭାଗ ହେଉଛି ବାହାର ରୂପ । ପାଞ୍ଚଟି ବାହାର ରୂପ ହେଉଛି ପାଞ୍ଚଟି ସ୍ୱର । ସେଗୁଡ଼ିକ ହେଉଛି ଓ, ଏ, ଉ, ଇ, ଅ । ଏହି ପଞ୍ଚ ସ୍ୱରକୁ ବାହାର ରୂପ କହିବାର ତାତ୍ପର୍ଯ୍ୟ ହେଉଛି ଓଁ ଉଚ୍ଚାରଣ କଲାବେଳେ ଏହି ପାଞ୍ଚଟି ସ୍ୱର ବାହ୍ୟିକ ଉଚ୍ଚାରଣ ଅନୁଭୂତ ହୋଇଥାଏ ।

ଭିତର ପାଞ୍ଚଟି ରୂପ ହେଉଛି ଅର୍ଦ୍ଧମାତ୍ରା, ବିନ୍ଦୁ, ତାରକ, ଦଣ୍ଡକ, ଓ କୁଣ୍ଡଳୀ । (ଶୂନ୍ୟ ସଂହିତାର ଦ୍ୱିତୀୟ ଅଧ୍ୟାୟ ଦ୍ରଷ୍ଟବ୍ୟ) ତାହାକୁ ଚକ୍ରରେ ଦର୍ଶାଇ ଦିଆଯାଇଛି ପରିଶିଷ୍ଟ 'ଖ' ଦ୍ରଷ୍ଟବ୍ୟ ।

ପ୍ରଣବ ବା 'ଓଁ'ର ପାଞ୍ଚଟି ସ୍ୱରବର୍ଣ୍ଣରୁ ପଞ୍ଚସଖା ଏବଂ ତାଙ୍କର ଅନୁଗାମୀ କେତେଗୁଡ଼ିଏ ତତ୍ତ୍ୱ ଆବିଷ୍କାର କରିଛନ୍ତି । ଏହାକୁ ସପ୍ତପଞ୍ଚାତ୍ମିକା ତତ୍ତ୍ୱ କୁହାଯାଇଥାଏ । 'ଶୂନ୍ୟ ସଂହିତା'ରେ ଅଚ୍ୟୁତାନନ୍ଦ ଲେଖିଛନ୍ତି—

"ପଞ୍ଚାତ୍ମିକା ବୁଝିଥିଲେ ପରମ ସୁଗତି
ଜ୍ୟୋତିରେ ଜ୍ୟୋତି ମିଶିଲେ ବଇକୁଣ୍ଠ ପ୍ରାପ୍ତି ।"

(ଚତୁର୍ଥ ଅଧ୍ୟାୟ)

ଚନ୍ଦ୍ରମଣି ଦାସ ମଧ୍ୟ 'ସୁଧାସାର ଗୀତା'ରେ ଏହି ସପ୍ତପଞ୍ଚାତ୍ମିକା ତତ୍ତ୍ୱ କଥା ବାରମ୍ବାର ଲେଖିଛନ୍ତି । କେବଳ ଅଚ୍ୟୁତାନନ୍ଦ ଯେଉଁଠି ପଞ୍ଚବୀଜ କଥା କହିଛନ୍ତି ସେଠାରେ ସେ ପଞ୍ଚଲେକ କଥା କହିଛନ୍ତି । ଅନ୍ୟ ସମସ୍ତ ପ୍ରାୟ ସମାନ ।

ଓଁରେ ଯେଉଁ ପଞ୍ଚସ୍ୱର (ବିନ୍ଦୁ ବ୍ୟତୀତ ଓ-ଏ-ଉ-ଇ-ଅ ଆଦି ପଞ୍ଚସ୍ୱର) ଅଛି ସେଥିରୁ ସପ୍ତ ପଞ୍ଚାତ୍ମିକା ତତ୍ତ୍ୱର ବିସ୍ତୃତ କରାଯାଇଛି ।

୧ । **ପଞ୍ଚସ୍ୱର**—ଓଁରେ ଥିବା ଉପରୋକ୍ତ ଓ, ଏ, ଉ, ଇ, ଅ ସ୍ୱର ।

୨ । **ପଞ୍ଚଭୂତ**—ପୃଥ୍ୱୀ, ଅପ୍, ତେଜ, ବାୟୁ, ଆକାଶ ।

ଓଁ ଉଚ୍ଚାରଣ କଲାବେଳେ ଏଥିରେ ଥିବା ପଞ୍ଚସ୍ୱର ମୂଳାଧାର ଚକ୍ରଠାରୁ ଆରମ୍ଭ କରି ବିଭିନ୍ନ ଚକ୍ରରେ ଧ୍ୱନିତ ହୋଇଥାଏ । କାରଣ ଓଁକାର ଧ୍ୱନିରେ ଉଦାତ୍ତ ସ୍ୱର ରହିଛି । ଏହାର ଦୀର୍ଘ ଉଚ୍ଚାରଣ ବେଳେ ଗୁହ୍ୟଦ୍ୱାର, ଲିଙ୍ଗମୂଳ, ନାଭି ଦେଶ, ହୃଦୟ ଓ କଣ୍ଠଦେଶ ଆଘାତ ପ୍ରାପ୍ତ ହୋଇ ସ୍ୱର ସଙ୍କୁଚିତ ହୋଇଥାଏ ଏବଂ ଏହା ଧୀରେ ଧୀରେ ଉପରକୁ ଉଠି ଆଜ୍ଞା ଚକ୍ର (ଭ୍ରୁଦ୍ୱୟ ମଧ୍ୟ)ରେ

ଠୁଳୀଭୂତ ହୋଇ ସହସ୍ର ଦଳ ଚକ୍ର (ମସ୍ତକ ମଧ୍ୟ)ରେ ବନ୍ଦୀନ ହୋଇଥାଏ ।
ଓଁକାର ଜପରେ ସିଦ୍ଧିଲାଭ ହେଲେ, ପଞ୍ଚ ମହାଭୂତର ପଞ୍ଚତନ୍ମାତ୍ର (ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ)କୁ ଜୟ କରନ୍ତିଏ, ଅର୍ଥାତ୍ ପଞ୍ଚ ଇନ୍ଦ୍ରିୟ (ଚକ୍ଷୁ, କର୍ଣ୍ଣ, ଜିହ୍ୱା, ନାସିକା, ତ୍ୱକ୍)ର ପଞ୍ଚତନ୍ମାତ୍ର ଉପଭୋଗ ପାଇଁ ବହିର୍ଗମନର ବ୍ୟାକୁଳତା ଉପଶମିତ ହୁଏ । ପୂର୍ବରୁ ଯୋଗତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ ପଞ୍ଚଚକ୍ରରେ ପଂଚଭୂତ ତତ୍ତ୍ୱଥିବା କଥା କୁହାଯାଇଛି । ପଂଚଚକ୍ରରେ ପଞ୍ଚଭୂତର ଅବସ୍ଥିତି ଏହିପରି —

ମୂଳାଧାର ଚକ୍ର (ଗୁହ୍ୟଦେଶ)—ପୃଥ୍ୱୀ ତତ୍ତ୍ୱର ସ୍ଥାନ

ସ୍ୱାଧିଷ୍ଠାନ ଚକ୍ର (ଲିଙ୍ଗଦେଶ)—ଅପ୍ ବା ଜଳତତ୍ତ୍ୱର ସ୍ଥାନ

ମଣିପୁର ଚକ୍ର (ନାଭିଦେଶ)—ଅଗ୍ନିତତ୍ତ୍ୱର ସ୍ଥାନ

ଅନାହତ ଚକ୍ର (ହୃଦୟ ଦେଶ)—ବାୟୁ ତତ୍ତ୍ୱର ସ୍ଥାନ

ବିଶୁଦ୍ଧ ଚକ୍ର (କଣ୍ଠଦେଶ)—ଆକାଶ ତତ୍ତ୍ୱର ସ୍ଥାନ

୩ । **ପଞ୍ଚପ୍ରାଣ ବାୟୁ** : ଯେ କୌଣସି ବର୍ଣ୍ଣର ଉଚ୍ଚାରଣ, କେବଳ ବାୟୁର ସଂଘର୍ଷ ହେଲେ ବା ବାୟୁ ଆଘାତ ପ୍ରାପ୍ତ ହେଲେ ସମ୍ଭବ । 'ଓଁ' ଭଳି ଉଦାତ୍ତ ସ୍ୱର ବିଶିଷ୍ଟ ଅକ୍ଷରକୁ ଉଚ୍ଚାରଣ କଲାବେଳେ ତାହା ସମଗ୍ର ଦେହକୁ କମ୍ପିତ କରିବା ସ୍ୱାଭାବିକ କଥା । ଓଁ ମଧ୍ୟରେ ଥିବା ପାଞ୍ଚଟି ସ୍ୱର ଆମ ଦେହରେ ପରିବ୍ୟାପ୍ତ ପଞ୍ଚପ୍ରାଣବାୟୁରେ କମ୍ପନ ସୃଷ୍ଟି କରିଥାଏ । ତେଣୁ ଜ୍ଞାନଦିଗ୍ରା ଭକ୍ତ ସାହିତ୍ୟରେ ପଞ୍ଚବାୟୁକୁ 'ଓଁ'ର ପଞ୍ଚସ୍ୱର ଉଚ୍ଚାରଣ ସହିତ ସଂଯୁକ୍ତ କରାଯାଇଛି । ପଞ୍ଚବାୟୁ ଦେହର ବିଭିନ୍ନ ସ୍ଥାନରେ ଏହିଭଳି ରହିଛନ୍ତି । (ଏହା ଯୋଗତତ୍ତ୍ୱ ଆଲୋଚନା ବେଳେ ଦର୍ଶାଇ ଦିଆଯାଇଛି ।)

ପ୍ରାଣବାୟୁ—ହୃଦୟରେ

ଅପାନବାୟୁ—ଗୁହ୍ୟଦେଶରେ

ସମାନବାୟୁ—ନାଭି ଦେଶରେ

ଉଦାନବାୟୁ—କଣ୍ଠ ଦେଶରେ

ବ୍ୟାନବାୟୁ—ସମଗ୍ର ଶରୀରରେ

ଓଁ ଉଚ୍ଚାରଣ କଲେ ଏହି ପଞ୍ଚ ପ୍ରାଣବାୟୁ ଓଁକାରର ପଞ୍ଚସ୍ୱର ଧ୍ୱନି ସହିତ ମିଳିତ ହୋଇ ସୁଷୁମ୍ନା ମାର୍ଗରେ ଊର୍ଦ୍ଧ୍ୱକୁ ଗତି କରି ଓଁ କାର ଧ୍ୱନିର ଲୟାବସ୍ଥା ସ୍ଥାନ ସହସ୍ର ଦଳ ଚକ୍ରରେ ଠୁଳୀଭୂତ ହୁଅନ୍ତି । ପ୍ରାଣାୟାମ ଦ୍ୱାରା

ପଞ୍ଚପ୍ରାଣ ପବନକୁ ସୁଷୁମ୍ନା ନାଡ଼ୀରେ ଊର୍ଦ୍ଧ୍ୱକୁ ଉତ୍ତୋଳନ କରି ସହସ୍ର ଦଳ ଚକ୍ରରେ ପହଞ୍ଚାଇବା ହେଉଛି ଯୋଗ ସାଧନାର ଲକ୍ଷ୍ୟ । ଓଁ' ଉଚ୍ଚାରଣ ପ୍ରାଣାୟମ ସହ ସଂଯୁକ୍ତ ହେଲେ ଏହି କାର୍ଯ୍ୟ ଶୀଘ୍ର ସମ୍ପନ୍ନ ହୋଇଥାଏ । ତେଣୁ ଯୋଗ ସାଧନା-ରେ ଓଁ' ଉଚ୍ଚାରଣକୁ ଅପରିହାର୍ଯ୍ୟ କରାଯାଇଛି । "

୪ । ପଞ୍ଚମନ : ଜୀବର ଇନ୍ଦ୍ରିୟ ସୁଖ ଭୋଗ ତୈନ୍ଦ୍ରିକ ଚଞ୍ଚଳ ସ୍ୱଭାବ କେବଳ ମନର ଚଞ୍ଚଳତା ଯୋଗୁଁ ହୋଇଥାଏ । ମନର ଗତି ବାୟୁର ଗତି ଭଳି କ୍ଷିପ୍ର । 'ବାୟୋରିବ ସୁଦୁଷ୍କରଂ' (ଶ୍ରୀମଦ୍ଭଗବଦ୍ଗୀତା) । ଏହି ଚଞ୍ଚଳମନକୁ କେବଳ ପ୍ରାଣାୟମ ସାଧନା ଓ ଓଁକାର ଧ୍ୱନି ଉଚ୍ଚାରଣ ଦ୍ୱାରା ସ୍ଥିର କରାଯାଇ-ଥାଏ । ମନୁଷ୍ୟର ବନ୍ଧନ (ସାଂସାରିକ ବନ୍ଧନ) ଏବଂ ମୋକ୍ଷ ପାଇଁ ମନ ହେଉଛି କାରଣ (ମନଃ ଏବ ମନୁଷ୍ୟାଣାଂ କାରଣଂ ବନ୍ଧ ମୋକ୍ଷ ୟୋଃ) ମନକୁ ଓଁକାର ଜପଦ୍ୱାରା ସ୍ଥିର ଏକାଗ୍ର ଏବଂ ଊର୍ଦ୍ଧ୍ୱଗାମୀ କରାଯାଇ ମୋକ୍ଷ ପ୍ରାପ୍ତିରେ ମଧ୍ୟ ବିନିଯୋଗ କରାଯାଇପାରେ । ଓଁକାର ଉଚ୍ଚାରଣ ବେଳେ ଇତସ୍ତତଃ ପ୍ରବାହିତ ପ୍ରାଣବାୟୁ ଓଁକାର ଧ୍ୱନି ସହିତ ମିଶି ଗୋଟିଏ ମାର୍ଗ (ସୁଷୁମ୍ନା ମାର୍ଗ)ରେ ଗତିକରି ଊର୍ଦ୍ଧ୍ୱଗାମୀ ହୋଇଥାଏ । ପ୍ରାଣବାୟୁର ପ୍ରବାହ ସହିତ ମନ ମଧ୍ୟ ସଂଯୁକ୍ତ ହୋଇ ଊର୍ଦ୍ଧ୍ୱଗାମୀ ହୁଏ । ଏହା ଫଳରେ ମନ ଧୀରେ ଧୀରେ ସ୍ଥିର ଓ ଶାନ୍ତ ହୋଇ ପରିଶୁଦ୍ଧ ଅବସ୍ଥା ଧାରଣ କରେ । ମନର ଏହି ସ୍ଥିର ଶାନ୍ତ ପରିଶୁଦ୍ଧ ଅବସ୍ଥାକୁ ପାଞ୍ଚଟି ସ୍ତରରେ ବିଭକ୍ତ କରାଯାଇଛି । ଏହାକୁ ପଂଚମନ କୁହାଯାଇଥାଏ । ସେଗୁଡ଼ିକ ହେଉଛି ମନ, ସୁମନ, କୁମନ, ବିମନ ଏବଂ ଅମନ । ମନର ଏହି ପାଂଚ ଅବସ୍ଥାକୁ ବୁଝାଇବାକୁ ଯାଇ ଚନ୍ଦ୍ରମଣି ଦାସ 'ସୁଧାସାର ଗୀତା'ରେ ଲେଖିଛନ୍ତି—

"ପ୍ରଥମରେ ସତ୍ୟମନ ନାମ ତାର ଦ୍ୱିତୀୟେ ଆନନ୍ଦ କହି
ତୃତୀୟେ ନିଶ୍ଚଳ, ଚତୁର୍ଥେ ଉଚିତ ପଂଚମେ ସାନନ୍ଦ କହି ।"

(ପଞ୍ଚଦଶ ବୋଲି)

ପାତଞ୍ଜଳ ଯୋଗଦର୍ଶନର ପ୍ରଥମ ଅଧ୍ୟାୟରେ ଚିତ୍ତ ବା ମନର ୫ଟିସ୍ତର (କ୍ଷିପ୍ତ, ମୂଢ଼, ବିକ୍ଷିପ୍ତ ଏକାଗ୍ର ଓ ନିରୁଦ୍ଧ) ବିଷୟରେ ଉଲ୍ଲେଖ ଅଛି । ସ୍ଥିର, ଶାନ୍ତ, ପରିଶୁଦ୍ଧ ମନର ପ୍ରଥମ ଅବସ୍ଥା ହେଉଛି ସତ୍ୟାନ୍ୱେଷୀ, ଦ୍ୱିତୀୟାବସ୍ଥା ହେଉଛି ବାସ୍ତବ ଆନନ୍ଦ ସନ୍ଧାନୀ, ତୃତୀୟାବସ୍ଥା ହେଉଛି ନିଶ୍ଚଳତା ବା ସ୍ଥିରତାଯୁକ୍ତ । ଚତୁର୍ଥା-ବସ୍ଥା ହେଉଛି ବିବେକ ଜ୍ଞାନଯୁକ୍ତ ଓ ପଞ୍ଚମାବସ୍ଥା ହେଉଛି ବ୍ରହ୍ମାନନ୍ଦ ମଜ୍ଜିତ । ମନର ଏହି ପାଞ୍ଚ ଅବସ୍ଥା ସୃଷ୍ଟି ଓଁର ପଞ୍ଚସ୍ୱର ସହିତ ଲୀନ ହେବା ଯୋଗେ ସମ୍ଭବ ହୋଇଥାଏ ।

୫। ପଞ୍ଚତତ୍ତ୍ୱ : ପଞ୍ଚତତ୍ତ୍ୱ ହେଉଛି ରୂପ, ନାମ, ବୁଦ୍ଧି, ବିବେକ ଓ ଆଶ୍ରୟ । ଏହା ସାଧନାର ପଞ୍ଚ ଆଶ୍ରୟ । ସାଧକ ସାଧନା ଆରମ୍ଭ କଲାବେଳେ ପ୍ରଥମେ ରୂପ (ଦେବତାଙ୍କ ରୂପ)କୁ ଆଶ୍ରୟ କରେ ତତ୍ପରେ ରୂପର ଆଶ୍ରୟ ଛାଡ଼ି ନାମର ଆଶ୍ରୟ କରେ । ନାମର ଆଶ୍ରୟ ପରେ ନାମକୁ ଛାଡ଼ି ବ୍ରହ୍ମଙ୍କୁ ବୁଦ୍ଧିଦ୍ୱାରା ବିଚାର କରି ତାଙ୍କର ଆଶ୍ରୟ ନେଇଥାଏ । ଏହା ଦ୍ୱାରା ତାର ଲକ୍ଷ୍ୟ ସିଦ୍ଧି ନ ହେବାରୁ ବିବେକ ବା ଜ୍ଞାନ ଦ୍ୱାରା ବ୍ରହ୍ମଙ୍କୁ ଜାଣିବା ପାଇଁ ଚେଷ୍ଟା କରେ । ଜ୍ଞାନର ପରିପକ୍ୱତା ଆସିଗଲେ ସେ ବ୍ରହ୍ମଙ୍କୁ ଏକମାତ୍ର ତାହାର ଆଶ୍ରୟ ଭାବି ତାଙ୍କଠାରେ ଶରଣାଗତ ହୁଏ । ଏହାକୁ ଏକାନ୍ତ ଆଶ୍ରୟ କୁହାଯାଏ । ଶ୍ରୀମଦ୍ଭଗବଦ୍ ଗୀତାରେ ଶ୍ରୀକୃଷ୍ଣ ଠିକ୍ ଏହି କଥା ଅର୍ଜୁନଙ୍କୁ କହିଛନ୍ତି—'ମାମେକଂ ଶରଣଂ ବ୍ରଜ' (ଶ୍ରୀମଦ୍ଭଗବଦ୍ ଗୀତା) ଏହା ସାଧନାର ଶେଷ ସ୍ତର । ଓଁକାର ଉଚ୍ଚାରଣ କରୁ କରୁ ସାଧନାରେ କ୍ରମଶଃ ପୂର୍ଣ୍ଣସିଦ୍ଧି ଆସିଥାଏ । ସେହି ସିଦ୍ଧି ଉପରୋକ୍ତ ପାଂଚଟି ସ୍ତର ଦେଇ ଗତି କରୁଥିବାରୁ ଓଁକାର ପଂଚସ୍ୱର ସହିତ ଏହା ସଂପୃକ୍ତ କରାଯାଇଛି ।

୬। ପଞ୍ଚଆତ୍ମା : ଉପନିଷଦୀୟ ବର୍ଣ୍ଣନାନୁଯାୟୀ ଜୀବାତ୍ମା ନିତ୍ୟଶୁଦ୍ଧ, ମୁକ୍ତ ହେଲେ ହେଁ ମାୟାବନ୍ଧନରେ ଆବଦ୍ଧ ହେବା ଫଳରେ ଜନ୍ମମୃତ୍ୟୁ ଚକ୍ରରେ ପଡ଼ି କ୍ଳେଶ ଓ ଚିନ୍ତାପର ଅଧୀନ ହୋଇଥାଏ । ପ୍ରଣବ ଜପ ଓ ଯୋଗ ସାଧନା ଦ୍ୱାରା ଜୀବାତ୍ମା ନିଜର ସ୍ୱରୂପକୁ ଉପଲବ୍ଧି କରିବା ଫଳରେ ଜୀବାତ୍ମା କ୍ରମଶଃ ମାୟା ପ୍ରଭାବ ରହିତ ନିର୍ମଳାବସ୍ଥାକୁ ପ୍ରାପ୍ତ ହୋଇଥାଏ । ମନ ପରିଶୁଦ୍ଧ ହେବାର ଯେପରି ପାଞ୍ଚଟି ସ୍ତର ରହିଛି, ସେହିପରି ଆତ୍ମା ପରିଶୁଦ୍ଧ ହେବାର ପାଞ୍ଚଟି ସ୍ତର ରହିଛି । ସେଗୁଡ଼ିକ ହେଉଛି—ଜୀବାତ୍ମା, ତତ୍ତ୍ୱାତ୍ମା, ଜ୍ଞାନାତ୍ମା, ଧ୍ୟାନାତ୍ମା ଓ ପରମାତ୍ମା । ଚନ୍ଦ୍ରମଣି ଦାସ ଏହାକୁ ହଂସ, ସୁହଂସ, ପରମହଂସ, ରାଜହଂସ ଓ ପରମାତ୍ମା କହିଛନ୍ତି । (ସୁଧାସାରଗୀତା, ଦ୍ୱିତୀୟ ବୋଲି) 'ଜ୍ଞାନସାଗର' ଗ୍ରନ୍ଥର ପଞ୍ଚମ ପରିଚ୍ଛେଦରେ ଏ ସମ୍ପର୍କରେ କୁହାଯାଇଛି—

"ଜ୍ଞାନଆତ୍ମା ଯେ ଧ୍ୟାନ ଆତ୍ମା
ତତ୍ତ୍ୱାତ୍ମା ଜୀବ ପରମାତ୍ମା
ଏ ପଂଚଆତ୍ମା ଏ ପ୍ରକାରେ
ପୂରି ରହିଛନ୍ତି ଶରୀରେ ।"

୭। ପଞ୍ଚବୀଜ ମନ୍ତ୍ର : ଅଚ୍ୟୁତାନନ୍ଦ 'ଶୂନ୍ୟ ସଂହିତା'ରେ ଲେଖିଛନ୍ତି—

"ଏବେ କହୁବା ଶୁଣ ପଂଚତତ୍ତ୍ୱ ଗୁଣ
ହ୍ଲୁଂ, ଶ୍ଲୁଂ, କ୍ଲୁଂ, ଧ୍ଲୁଂ, ପ୍ଲୁଂ ଯେ ପ୍ରମାଣ ।'

(ତୃତୀୟ ଅଧ୍ୟାୟ)

*(ଏଠାରେ ହ୍ଲୁଂକୁ ହ୍ରୀଂ, ଶ୍ଲୁଂକୁ ଶ୍ରୀଂ ଭାବେ ଗ୍ରହଣ କରିବାକୁ ହେବ, କାରଣ ପଦରେ ମଧ୍ୟପାତର ସମତା ଜନିତ ଲାଳିତ୍ୟ ରଖିବା ପାଇଁ କବି ଏହା କରିଛନ୍ତି ।)

ବଳରାମ ଆଦି ପଂଚସଖା ଏହି ବୀଜମନ୍ତ୍ର ସମୂହରେ ବିଶେଷ ପ୍ରାଧାନ୍ୟ ଦେଇଛନ୍ତି । ତନ୍ତ୍ର ଶାସ୍ତ୍ର ଅନୁଯାୟୀ ବୀଜମନ୍ତ୍ରଗୁଡ଼ିକ ହେଉଛି ଦେବତାଙ୍କର ଆତ୍ମା ସଦୃଶ । ନିର୍ଦ୍ଦିଷ୍ଟ ବୀଜମନ୍ତ୍ର ଜପରେ ନିର୍ଦ୍ଦିଷ୍ଟ ଦେବତାଙ୍କର ଆବିର୍ଭାବ ଘଟି ସାଧକର ଗୋଚରୀଭୂତ ହୋଇଥାଆନ୍ତି । ଅଚ୍ୟୁତାନନ୍ଦ ଏ ସମ୍ପର୍କରେ ଲେଖିଛନ୍ତି—

"ବୋଲନ୍ତି ଶୁଣ ହୋ ବାଳ ତପସ୍ୱୀ
ବୀଜବ୍ରହ୍ମ ଦୁଇ ଏକତ୍ର ହୋଇ
ବୀଜକୁ ଚିହ୍ନିଲେ ବ୍ରହ୍ମକୁ ପାଇ
ବ୍ରହ୍ମ ଚିହ୍ନିଲେ ଜଗତ ତରଇ
ଶୁଭଇ ଶବଦ
ସଦ୍‌ଗୁରୁ ବିନା ଜାଣଇ ଭେଦ ।"

(ଅଚ୍ୟୁତାନନ୍ଦ ଜନ୍ମ ଶରଣ, ପୃ ୩୭)

ଯଶୋବନ୍ତ ଦାସଙ୍କ ବର୍ଣ୍ଣନାରେ ତାହା ଏହିପରି—

"ବୀଜ ସୁଖ ତହିଁ ପାଇବୁ ଯେବେ
ବ୍ରହ୍ମ ସଙ୍ଗ ତହିଁ ଲଭିବୁ ତେବେ
ଅଙ୍ଗ ଗୋଟି କାଲେ ହୋଇବ ସାର
କୋଟି ପୁରୁଷ ହୋଇବ ଉଦ୍ଧାର"

(ଅଚ୍ୟୁତାନନ୍ଦ ଜନ୍ମ ଶରଣ, ପୃ ୪୮)

ପଂଚସ୍ୱର ଯୁକ୍ତ ଓଁକାର ଉଚ୍ଚାରଣରେ ଯେଉଁ ସିଦ୍ଧି ମିଳେ, ଏହି ପଂଚ ବୀଜମନ୍ତ୍ର ଉଚ୍ଚାରଣରେ ସେହି ସିଦ୍ଧି ମିଳିଥାଏ ବୋଲି ପଂଚସଖାଙ୍କର ମତ । ଏମାନଙ୍କ ମଧ୍ୟରୁ 'କ୍ଲୁଂ' ବୀଜମନ୍ତ୍ର ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କର ମୂର୍ତ୍ତି, ଶ୍ରୀଂବୀଜ ଲକ୍ଷ୍ମୀ, ଶ୍ରୀରାଧା ଓ ସୁଭଦ୍ରାଙ୍କର ମୂର୍ତ୍ତି, ହ୍ରୀଂ ବୀଜ ବଳଭଦ୍ର ଅନନ୍ତ ଓ ଚନ୍ଦ୍ରାବଳୀ-

ଙ୍କର ମୂର୍ତ୍ତି, ଧ୍ଲୀଂ ବୀଜ ମନ୍ତ୍ର ସୁଦର୍ଶନଙ୍କର ମୂର୍ତ୍ତି ଏବଂ ଫ୍ଲୀଂ ବୀଜମନ୍ତ୍ର ପରଂବ୍ରହ୍ମଙ୍କ ମୂର୍ତ୍ତି ବୋଲି 'ଶୂନ୍ୟ ସଂହିତା'ରେ କୁହାଯାଇଛି । (ଚତୁର୍ଥ ଅଧ୍ୟାୟ)

ପଂଚସଖାରୁ ପ୍ରତ୍ୟେକ ଏହି ବୀଜମନ୍ତ୍ରରୁ ଭିନ୍ନ ଭିନ୍ନ ବୀଜମନ୍ତ୍ରକୁ ସେମାନଙ୍କର ଜପରେ ପ୍ରାଧାନ୍ୟ ଦେଇଥିଲେ । ଯଥା—

ବଳରାମ ଦାସ—ହ୍ରୀଂ, ବୀଜମନ୍ତ୍ର

ଜଗନ୍ନାଥ ଦାସ—କ୍ଳୀଂ ବୀଜମନ୍ତ୍ର

ଯଶୋବନ୍ତ ଦାସ—ଫ୍ଲୀଂ, ବୀଜମନ୍ତ୍ର

(ଅଚ୍ୟୁତାନନ୍ଦଙ୍କ ଜନ୍ମ ଶରଣ ଦ୍ରଷ୍ଟବ୍ୟ)

ଶିଶୁ ଅନନ୍ତ ଦାସ—ଶ୍ରୀଂ ବୀଜମନ୍ତ୍ର

(ଜଗନ୍ନାଥ ଦାସକୃତ 'ରତ୍ନପାଦୁକା' ଦ୍ରଷ୍ଟବ୍ୟ)

ଅଚ୍ୟୁତାନନ୍ଦ ଜନ୍ମ ଶରଣରେ ଅଚ୍ୟୁତାନନ୍ଦ ଅଣାକ୍ଷର ମନ୍ତ୍ର ଜପ କରୁଥିବାରୁ ଉଲ୍ଲେଖ ଅଛି । ଧ୍ଲୀଂ ବୀଜମନ୍ତ୍ର ଅକାର ବିହୀନ ସୁଦର୍ଶନଙ୍କର ବୀଜମନ୍ତ୍ର ହୋଇଥିବାରୁ ମନେହୁଏ, ଅଚ୍ୟୁତାନନ୍ଦ ଧ୍ଲୀଂ ବୀଜମନ୍ତ୍ରକୁ ଜପ କରୁଥିଲେ ଏବଂ ଏହାକୁ ଅଣାକ୍ଷର ମନ୍ତ୍ର କହୁଥିଲେ । ଏହି ବୀଜଗୁଡ଼ିକ ପଞ୍ଚବୀଜର ପ୍ରତୀକ ଯଥା—

କ୍ଳୀଂ—କାମବୀଜ

ଶ୍ରୀଂ—ରମାବୀଜ

ହ୍ରୀଂ—ଲଜ୍ଜାବୀଜ (ଶୂନ୍ୟ ସଂହିତାରେ ପ୍ରେମ ବୀଜ କୁହାଯାଇଛି) ।

ଧ୍ଲୀଂ—ଧାମବୀଜ

ଫ୍ଲୀଂ— ବ୍ରହ୍ମବୀଜ

(ଶୂନ୍ୟ ସଂହିତା, ପୃ ୧୬-୧୭)

ଚନ୍ଦ୍ରମଣି ଦାସ ପଞ୍ଚବୀଜ ମନ୍ତ୍ର ସ୍ଥାନରେ ପଞ୍ଚଲୋକ କଥା ଲେଖିଛନ୍ତି । ସେଗୁଡ଼ିକ ହେଉଛି—ସ୍ୱଃ, ମହଃ, ଜନଃ, ତପଃ ଓ ସତ୍ୟଲୋକ । ଯୋଗ ଶାସ୍ତ୍ରରେ କଣ୍ଠଠାରୁ ସହସ୍ରଦଳ ଚକ୍ର ପର୍ଯ୍ୟନ୍ତ ସ୍ଥାନରେ ସ୍ୱଃ, ମହଃ, ଜନଃ, ତପଃ ଓ ସତ୍ୟ ଲୋକର କଳ୍ପନା କରାଯାଇଛି । ଏଠାରେ ଏକ ସାରଣୀରେ ଆଲୋଚିତ ସପ୍ତ ପଞ୍ଚାତ୍ମିକା ତତ୍ତ୍ୱକୁ ଉପସ୍ଥାପନା କରାଯାଉଛି ।

# ଓଁ ମନ୍ତ୍ରର ସପ୍ତତତ୍ତ୍ୱ

| | | | | | | |
|---|---|---|---|---|---|---|
| ୧ | ପଞ୍ଚସ୍ୱର | ଓ | ଏ | ଉ | ଇ | ଅ |
| ୨ | ପଞ୍ଚଭୂତ | ପୃଥ୍ୱୀ | ଜଳ | ତେଜ ବା ଅଗ୍ନି | ବାୟୁ | ଆକାଶ |
| ୩ | ପଞ୍ଚପ୍ରାଣ | ପ୍ରାଣ | ଅପାନ | ସମାନ | ଉଦାନ | ବ୍ୟାନ |
| ୪ | ପଞ୍ଚମନ | ମନ (ସତ୍ୟମନ) | ସୁମନ (ଆନନ୍ଦମନ) | କୁମନ (ନଷ୍ଟଲମନ) | ବିମନ (ଉଚିତ ମନ ବା ବିବେକ ମନ) | ଅମନ |
| ୫ | ପଞ୍ଚତତ୍ତ୍ୱ | ରୂପ | ନାମ | ବୁଦ୍ଧି | ବିବେକ | ଆଶ୍ରୟ |
| ୬ | ପଞ୍ଚଆତ୍ମା | ଜୀବାତ୍ମା | ତତ୍ତ୍ୱାତ୍ମା | ଜ୍ଞାନାତ୍ମା | ଧ୍ୟାନାତ୍ମା | ପରମାତ୍ମା |
| ୭ | ପଞ୍ଚବୀଜ | ଶ୍ରୀଂ (ରମାବୀଜ) | କ୍ଲୀଂ (କାମବୀଜ) | ହ୍ରୀଂ (ପରମବୀଜ) | ଧ୍ଲୀଂ (ଧାମବୀଜ) | ପ୍ଲୀଂ ପରମବୀଜ |

ଚନ୍ଦ୍ରମଣି ଦାସ 'ସୁଧାସାରଗୀତା'ର ସପ୍ତତତ୍ତ୍ୱରେ ପଞ୍ଚବୀଜ ତତ୍ତ୍ୱ ବଦଳରେ ପଞ୍ଚଲୋକ ତତ୍ତ୍ୱ ଯଥା—ସ୍ୱଃ, ମହଃ, ଜନଃ, ତପଃ ଓ ସତ୍ୟଲୋକକୁ ପ୍ରଦାନ କରିଅଛନ୍ତି । ଜ୍ଞାନସାଗର ଗ୍ରନ୍ଥରେ ବ୍ରଜ ଅବସ୍ଥା ଦାସ ଅଷ୍ଟପଞ୍ଚାତ୍ମିକାତତ୍ତ୍ୱକୁ ନିମ୍ନ ସାରଣୀ ଅନୁଯାୟୀ ପ୍ରଦାନ କରିଛନ୍ତି ।

## ଅଷ୍ଟପଞ୍ଚାତ୍ମିକା ତତ୍ତ୍ୱ

| | | | | | | |
|---|---|---|---|---|---|---|
| ୧ | ପଞ୍ଚସ୍ୱର | ଓ | ଏ | ଉ | ଇ | ଅ |
| ୨ | ପଞ୍ଚମାତ୍ରା | ଦଣ୍ଡକ | ତାରକ | କୁଣ୍ଡଳୀ | ଅର୍ଦ୍ଧମାତ୍ରା | ବିନ୍ଦୁ |
| ୩ | ପଞ୍ଚଭୂତ | ପୃଥ୍ୱୀ | ଜଳ | ତେଜ | ବାୟୁ | ଆକାଶ |
| ୪ | ପଞ୍ଚପ୍ରାଣ | ପ୍ରାଣ | ଅପାନ | ସମାନ | ଉଦାନ | ବ୍ୟାନ |
| ୫ | ପଞ୍ଚଆତ୍ମା | ଜୀବାତ୍ମା | ତତ୍ତ୍ୱାତ୍ମା | ଜ୍ଞାନାତ୍ମା | ଧ୍ୟାନାତ୍ମା | ପରମାତ୍ମା |
| ୬ | ପଞ୍ଚମନ | ମନ | ସୁମନ | କୁମନ | ବିମନ | ଅମନ |
| ୭ | ପଞ୍ଚତତ୍ତ୍ୱ | ରୂପ | ନାମ | ବୁଦ୍ଧି | ବିବେକ | ଆଶ୍ରୟ |
| ୮ | ପଞ୍ଚବୀଜ | ରମାବୀଜ | କାମବୀଜ | ପଦ୍ମବୀଜ | ଧାମବୀଜ | ପରମବୀଜ |

## ପ୍ରଣବର ତିନିବର୍ଣ୍ଣ—

ଉପନିଷଦ୍ ଓ ତନ୍ତ୍ର ଗ୍ରନ୍ଥମାନଙ୍କରେ ପ୍ରଣବର ତିନିତତ୍ତ୍ୱ ପ୍ରଦାନ କରା-ଯାଇଥିବାର ଦେଖାଯାଇଥାଏ । ତାହା ହେଉଛି ଅ, ଉ, ମ —ଏହି ତିନି ସ୍ୱରର ମିଳନରେ ପ୍ରଣବ ଗଠିତ । ଏହା ଯଥାକ୍ରମେ ସତ୍ତ୍ୱ, ରଜଃ ଓ ତମୋଗୁଣ ଏବଂ ବ୍ରହ୍ମା ବିଷ୍ଣୁ ଓ ମହେଶ୍ୱରଙ୍କର ପ୍ରତୀକ । ଅନୁରୂପ ତତ୍ତ୍ୱ ବର୍ଣ୍ଣନା ପଞ୍ଚ-ସଖାଙ୍କର ଗ୍ରନ୍ଥରେ ମଧ୍ୟ ଦେଖିବାକୁ ମିଳିଥାଏ । 'ତୁଳାଭିଣା'ରେ କବି ଜଗନ୍ନାଥ ଦାସ ଲେଖିଛନ୍ତି ଅ, ଉ, ମ ରୁ ହ୍ରୀଂ, କ୍ଲୀଂ, ଶ୍ରୀଂ —ଏହି ତିନିବୀଜ —ମନ୍ତ୍ରର ଉତ୍ପତ୍ତି ହେଲା । ପୁଣି ସେହି ତିନି ବୀଜମନ୍ତ୍ରରୁ ହରେ, ରାମ, କୃଷ୍ଣ ଏହିପରି ଷଡ଼କ୍ଷର ମହାମନ୍ତ୍ର ସୃଷ୍ଟି ହେଲା । ( ପ୍ରଥମ ଅଧ୍ୟାୟ ) ଅଚ୍ୟୁତାନନ୍ଦ ମଧ୍ୟ 'ଶୂନ୍ୟ ସଂହିତା' ଗ୍ରନ୍ଥରେ ଏହି ତତ୍ତ୍ୱର ଉପସ୍ଥାପନ କରିଛନ୍ତି ।

## ଅବନା ମନ୍ତ୍ର—

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଏହି ଅବନା ମନ୍ତ୍ର ଉପରେ ଗୁରୁତ୍ୱ ଦିଆଯାଇଛି । ଚନ୍ଦ୍ରମଣି ଦାସ 'ସୁଧାସାର ଗୀତା'ରେ ଲେଖିଛନ୍ତି—

"ଅନାହତ ପୁରେ ଅବନା ଅକ୍ଷର ଅନାଦି ସ୍ଥାପି ଅଛନ୍ତି
ମାତ୍ରା ନ ଲଗାଇ ଯେଣୁ ସେ ଅକ୍ଷର ତେଣୁ ଅବନା ବୋଲନ୍ତି ।"

ଦ୍ୱିତୀୟ ବୋଲି

ଏହାକୁ 'ଛତିଶଗୁପ୍ତ ଗୀତା'ରେ ଆହୁରି ପ୍ରାଞ୍ଜଳ କରି ଲେଖାଯାଇଛି—

"ପରରଜ ସଶବଦ ପାଉଛି ସଂସାର ଭେଦ
ଅଜପା ବୀଜକୁ ହେଉଛି ଅବନା ।"

(ଦ୍ୱିତୀୟ ଅଧ୍ୟାୟ)

'ପରରଜ' ହେଉଛି ଗାୟତ୍ରୀଙ୍କର ତୃତୀୟ ପଦ । ବୃହଦାରଣ୍ୟକ ଉପନିଷଦ୍‌ରେ ପଞ୍ଚମ ଅଧ୍ୟାୟ, ଚତୁର୍ଦ୍ଦଶ ବ୍ରାହ୍ମଣରେ କୁହାଯାଇଛି—ଗାୟତ୍ରୀଙ୍କର ପ୍ରଥମ ପାଦ ଭୂମି, ଅନ୍ତରୀକ୍ଷ ଏବଂ ଆକାଶରେ ପରିବ୍ୟାପ୍ତ । ଏହା ଆଠ ଅକ୍ଷର ବିଶିଷ୍ଟ । ତାଙ୍କର ଦ୍ୱିତୀୟ ପାଦ ଆଠ ଅକ୍ଷର ବିଶିଷ୍ଟ ଏବଂ ତାହା ଋକ୍, ଯଜୁଃ, ଏବଂ ସାମବେଦ ସଦୃଶ । ଗାୟତ୍ରୀଙ୍କର ତୃତୀୟ ପାଦ ହେଉଛି ପ୍ରାଣ, ଅପାନ ଓ ବ୍ୟାନ । ଏହା ମଧ୍ୟ ଆଠ ଅକ୍ଷର ବିଶିଷ୍ଟ ।

ଏହି ତିନି ପାଦ ଶେଷରେ ଯେଉଁ ଚତୁର୍ଥ ପଦ ରହିଛି ତାହା ଅଦୃଶ୍ୟ ଏବଂ ତୁରୀୟାବସ୍ଥା । ଗାୟତ୍ରୀଙ୍କର ପ୍ରଥମ ତିନିପାଦ ହେଉଛି ଦୃଶ୍ୟମାନ୍ ଜଗତ୍ । ଏହା ରଜ ବା ରଜୋଗୁଣ ଅଟେ । ଏହାପର ଚତୁର୍ଥ ପାଦ୍, ରଜର ପରବର୍ତ୍ତୀ ହେତୁ ତାହାକୁ ପରୋରଜ କୁହାଯାଏ ।

"ଗାୟତ୍ର୍ୟସ୍ୟେକପଦୀ ଦ୍ୱିପଦୀ ତ୍ରିପଦୀ
ଚତୁଷ୍ପଦ୍ୟ ପଦସି ନହି ପଦ୍ୟସେ । ନମସ୍ତେ ତୁରୀୟାୟ
ଦର୍ଶନାୟ ପରୋରଜସେଽସାବଦୋ"

(୫।୧୦।୭)

ଓଡ଼ିଆ ଜ୍ଞାନମିଶ୍ରାଭକ୍ତି ସାହିତ୍ୟରେ ବର୍ଣ୍ଣିତ ଅବନାମନ୍ତ୍ର "ପରରଜ ସଶବଦ ।" ଉପରୋକ୍ତ ଶ୍ଳୋକର ରୂପାନ୍ତର ବୋଲି ମନେହୁଏ । ଏଥିରେ କୌଣସି ମାତ୍ରା ନଥିବାରୁ ଏହାକୁ ଅବନା ମନ୍ତ୍ର କୁହାଯାଇଛି ।

**ଅଜପା ମନ୍ତ୍ର :** ଯୋଗତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ "ହଂସଃସୋଽହଂ" ଅଜପା ମନ୍ତ୍ର ବିଷୟ କଥିତ ହୋଇଛି । ତେଣୁ ଏଠାରେ ତାହାର ପୁନରାବୃତ୍ତି ଅନାବଶ୍ୟକ । ଏତଦ୍‌ବ୍ୟତୀତ ଦ୍ୱାତ୍ରିଂଶ ଅକ୍ଷର ମହାମନ୍ତ୍ର ଅଷ୍ଟାଦଶାକ୍ଷର ଓ ଦଶାକ୍ଷର ଗୋପାଳ ମନ୍ତ୍ର, ରାମନାମ ଆଦି ମନ୍ତ୍ରର ପ୍ରଶସ୍ତି 'କଳିସନ୍ତରଣୋପନିଷଦ୍', ଗୋପାଳତାପିନୀ, ପଦ୍ମପୁରାଣ ଓ ରାମ ପୂର୍ବତାପନୀୟୋପନିଷଦ୍ ପ୍ରଭୃତି ଗ୍ରନ୍ଥରେ ଦେଖିବାକୁ ମିଳିଥାଏ । ଓଡ଼ିଶାରେ ଜ୍ଞାନମିଶ୍ରାଭକ୍ତି ସାଧକବୃନ୍ଦ ବୈଷ୍ଣବ ହୋଇଥିବାରୁ ସେଗୁଡ଼ିକୁ ନିଜସ୍ୱ ସାଧନାର ଅନ୍ତର୍ଭୁକ୍ତ କରିଛନ୍ତି ।

ମନ୍ତ୍ରକୁ ଜପ କରିବା ପୂର୍ବରୁ ଯନ୍ତ୍ରରେ ସ୍ଥାପନ କରି ବିଧି ପୂର୍ବକ ତାହାର ପୂଜା କରିବାକୁ ହୋଇଥାଏ । ତେଣୁ ମନ୍ତ୍ର ସହିତ ଯନ୍ତ୍ରର ପ୍ରତ୍ୟକ୍ଷ ସଂଯୋଗ ରହିଛି । ବଳରାମ ଆଦି ପଞ୍ଚସଖା ଯନ୍ତ୍ର ନିର୍ମାଣରେ ଧୂରନ୍ଧର ଥିଲେ । ପଞ୍ଚସଖାଙ୍କ ଦ୍ୱାରା ( ବିଶେଷତଃ ଅଚ୍ୟୁତ ଓ ଅନନ୍ତ ) ପ୍ରସ୍ତୁତ ଅନେକ ଯନ୍ତ୍ରର ଚିତ୍ର-ସମ୍ବଳିତ ପୋଥି ଦେଖିବାକୁ ମିଳିଥାଏ । ସେଗୁଡ଼ିକର ସଂଖ୍ୟା ବହୁତ । ଅଚ୍ୟୁତାନନ୍ଦଙ୍କ ଦ୍ୱାରା ନିର୍ମିତ ୮୪ ପ୍ରକାର ଯନ୍ତ୍ରର ଏକ ପୋଥି ଅଚ୍ୟୁତାମନ୍ଦ ସ୍ମୃତି ସଂସଦ ଦ୍ୱାରା ସଂଗୃହୀତ ହୋଇଛି । ଏଥିରେ ତ୍ରିକୋଣ, ଚତୁଷ୍କୋଣ, ଷଟ୍‌କୋଣ, ଅଷ୍ଟକୋଣ ଓ ଅନେକ ପ୍ରକାର କୋଣ ବିଶିଷ୍ଟ ଅନେକ ଯନ୍ତ୍ର ରହିଛି । ସେଗୁଡ଼ିକର ଗଠନ ପ୍ରଣାଳୀ ଲେଖକଙ୍କର ନିଜସ୍ୱକଳ୍ପନାପ୍ରସୂତ ବୋଲି ମନେହୁଏ । ଏହି ଗ୍ରନ୍ଥରେ ସେ ସମସ୍ତ ଯନ୍ତ୍ରର ଚିତ୍ର ପ୍ରଦାନ କରିବା ସମ୍ଭବ ନୁହେଁ । ଓଡ଼ିଶାର ଜ୍ଞାନମିଶ୍ରା

ଭକ୍ତସାଧକମାନଙ୍କ ମଧ୍ୟରୁ ପଞ୍ଚସଖା ସ୍ୱୀୟ ସାଧନାରେ ବିଶେଷ ଭାବରେ ମନ୍ତ୍ର, ଯନ୍ତ୍ର ତନ୍ତ୍ରର ଆଶ୍ରୟ ନେଉଥିଲେ । ସେଥିପାଇଁ ଅଚ୍ୟୁତାନନ୍ଦ ଲେଖିଛନ୍ତି---

"ଯନ୍ତ୍ରଂ, ଯନ୍ତ୍ରଂ, ତନ୍ତ୍ରଂ ଚୈବ ଗୁହ୍ୟାନ୍ୟୋଢ଼ବିବାଡ଼ିଶ୍ଚ
ହଠ ସମାଧି ରସଗୁଣଂ ଯୋ ଜାନାତି ସ ବୈଷ୍ଣବଃ ।"

ଶୂନ୍ୟ ସଂହିତା ଗ୍ରନ୍ଥରେ ମଧ୍ୟ ଉଲ୍ଲେଖ ଅଛି---

"ପ୍ରକଟ ହୋଇଲା ନାମ ହୃଦେ ହେଲେ ଭକ୍ତ
ଆମ୍ଭେ ପଞ୍ଚସଖା ଅଟୁ ସଂସାରେ ବିଦିତ ।
ଦଶିଲ ଯେ ମନ୍ତ୍ରମୂର୍ତ୍ତି ଶ୍ରୁତି ସ୍ମୃତି ଆଦି
ଯେ ମୂର୍ତ୍ତିକା କେଉଁ ମନ୍ତ୍ର ସୂତ୍ରରେ ସମାଧି ।
ଯେଉଁ ପାପ ଯେଉଁ ନାମ କରଇ ଦହନ
ଯହିଁ ନାମ ପୁଣ୍ୟ କାମ ପାପ ବିମୋଚନ ।
ଲୁଆଇଲେ ମନ୍ତ୍ର ମୂର୍ତ୍ତି ଯନ୍ତ୍ର ତନ୍ତ୍ର ଧ୍ୟାନ
ମହାମନ୍ତ୍ର ମନ୍ତ୍ରରାଜ ପ୍ରଣବାଦି ଯେତେ ।
କାମ ବୀଜ ମନ୍ତ୍ରମୂର୍ତ୍ତି ଅସଂଖ୍ୟ ସହିତେ ।

X X X

ଆଗମ ନିଗମ ଶାସ୍ତ୍ରରେ ଆଦି ଯେତେ ଧ୍ୟାନ
ଲୁଆଇଲେ ପଞ୍ଚଜନ ଏହୁ ନାମ ।"

( ଦଶମ ଅଧ୍ୟାୟ )

…※…

# ଗୁରୁବାଦ

ଈଶ୍ୱରଦାସ ଜ୍ଞାନସାଗର ଗ୍ରନ୍ଥରେ ଲେଖିଛନ୍ତି—;

ଗୁରୁଙ୍କ ହସ୍ତରେ କର୍ଣ୍ଣି ଯାଇଣ ରହିଛି
ଗୁରୁଙ୍କୁ ନସେବ ଯେହୁ ମାୟାରେ ଭ୍ରମୁଛି ।
ସେ କାହୁଁ ପାଇବ ଏହି ଜ୍ଞାନସନ୍ଧ ଭେଦ
ଆଖି ଥାଉଁ ଥାଉଁ ହୋଇଅଛି ସେହୁ ଅନ୍ଧ ।

(ଅଷ୍ଟମ ପରିଚ୍ଛେଦ)

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ ଏକ ଗୁରୁମୁଖୀ ବିଦ୍ୟାର ଶାସ୍ତ୍ର । ଏଥିରେ ବ୍ରହ୍ମଜ୍ଞାନ ବା ଆତ୍ମଜ୍ଞାନ ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ଷଡ଼ଚକ୍ର ଭେଦ ଆଦି ଯେତେ ବିଷୟ ବର୍ଣ୍ଣିତ ହୋଇଛି ତାହା ପ୍ରତ୍ୟକ୍ଷ ସ୍ତରରେ ଅବଗମ୍ୟ ନହେଲେ ଯେଉଁଭଳି ଦୁର୍ବୋଧ ହୋଇଥାଏ, ସେହିପରି ଏହାର ପଠନ କେବଳ ନିଷ୍ଫଳ ଶ୍ରମରେ ପର୍ଯ୍ୟବସିତ ହୋଇଥାଏ । ତେଣୁ ଏହି ସାହିତ୍ୟରେ ସର୍ବତ୍ର ଗୁରୁଙ୍କର ଉପଯୋଗିତା ଶତମୁଖରେ ପ୍ରଶଂସିତ ହୋଇଛି । ଭାରତୀୟ ଧର୍ମ ଧାରଣାରେ ଗୁରୁଙ୍କର ସ୍ଥାନ ଅତ୍ୟନ୍ତ ଗୁରୁତ୍ୱ-ପୂର୍ଣ୍ଣ । ଶ୍ୱେତାଶ୍ୱତର ଉପନିଷଦରେ କୁହାଯାଇଛି—ପରଂବ୍ରହ୍ମଙ୍କଠାରେ ଯେଉଁ ପ୍ରକାର ଭକ୍ତି, ଗୁରୁଙ୍କଠାରେ ସେହିପରି ଭକ୍ତି ଜାତ ହେଲେ, ଉପନିଷଦର ଅର୍ଥ ବା ତତ୍ତ୍ୱ ସମ୍ବୁଦ୍ଧ ହୃଦୟରେ ସ୍ୱତଃ ପ୍ରକାଶିତ ହୋଇଥାଏ । "ଯସ୍ୟ ଦେବେ ପରା-ଭକ୍ତିଃ ଯଥାଦେବେ ତଥା ଗୁରୌ, ତସ୍ୟୈତେ କଥିତା ହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ" (ଶ୍ୱେତାଶ୍ୱତର ୬/୨୩)

ମୁଣ୍ଡକ ଉପନିଷଦରେ କୁହାଯାଇଛି—ସେହି ପରଂବ୍ରହ୍ମଙ୍କ ସମ୍ବନ୍ଧରେ ଜ୍ଞାନଲାଭ କରିବା ପାଇଁ ଗୁରୁଙ୍କର ଶରଣ ନେବା ଉଚିତ, (ତଦ୍ ବିଜ୍ଞାନାର୍ଥଂ ସଗୁରୁମେବାଭି ଗଚ୍ଛେତ୍, ମୁଣ୍ଡକ ୧ । ୨ । ୧୨) ।

ଛାନ୍ଦୋଗ୍ୟ ଉପନିଷଦରେ କୁହାଯାଇଛି—ଆଚାର୍ଯ୍ୟ ବା ଗୁରୁଙ୍କୁ ପୁରୁଷ ଅର୍ଥାତ୍ ବ୍ରହ୍ମବୋଲି ଜାଣ । (ଆଚାର୍ଯ୍ୟବାନ୍ ପୁରୁଷୋ ବେଦ-ଛାନ୍ଦୋଗ୍ୟ ୬/୧୪/୨)

ମହୋପନିଷଦରେ ବର୍ଣ୍ଣିତ ଅଛି—ସଦ୍‌ଗୁରୁଙ୍କର କରୁଣା ବିନା ବିଷୟ ତ୍ୟାଗ ଦୁର୍ଲଭ, ତତ୍ତ୍ୱଦର୍ଶନ ଦୁର୍ଲଭ ଏବଂ ସହଜାବସ୍ଥା ବି ଦୁର୍ଲଭ । ଦୁର୍ଲଭୋ ବିଷୟ ତ୍ୟାଗୋ, ଦୁର୍ଲଭଂ ତତ୍ତ୍ୱ ଦର୍ଶନମ୍ । ଦୁର୍ଲଭୋ ସହଜାବସ୍ଥା (ସଦ୍‌ଗୁରୋଃ କରୁଣାଂ ବିନା-ମହୋପନିଷଦ ୪ । ୭୭)

ଶ୍ରୀମଦ୍ଭାଗବତରେ ଭଗବାନ୍ ଶ୍ରୀକୃଷ୍ଣ ଗୁରୁଙ୍କୁ ନିଜ ସହିତ ଏକ ଏବଂ ଅଭିନ୍ନ ବୋଲି ଘୋଷଣା କରି କହିଛନ୍ତି—ମୋତେ ଆଚାର୍ଯ୍ୟ ବୋଲି ଜାଣ । ଆଚାର୍ଯ୍ୟ ବା ଗୁରୁଙ୍କଠାରେ ମାନବ ଭାବ ପୋଷଣ କରି ତାଙ୍କୁ ଅବମାନନା କରିବା ବା ତାଙ୍କଠାରେ ଅସୂୟା ଭାବ ପ୍ରକାଶ କରିବା ଉଚିତ ନୁହେଁ, କାରଣ ଗୁରୁ ହେଉଛନ୍ତି ସର୍ବଦେବମୟ—ଆଚାର୍ଯ୍ୟମାଂ ବିଜାନୀୟାନ୍ନାବମନ୍ୟେତ୍ କହିଁଚିତ୍ । ନ ମର୍ତ୍ତ୍ୟ-ବୁଦ୍ଧ୍ୟାସୂୟେତ ସର୍ବଦେବମୟୋ ଗୁରୁଃ (ଶ୍ରୀମଦ୍ଭାଗବତ ୧୧ । ୧୭ । ୨୭)

ଉପନିଷଦ୍ ବ୍ୟତୀତ ତନ୍ତ୍ର ଗ୍ରନ୍ଥମାନଙ୍କରେ ମଧ୍ୟ ଗୁରୁଙ୍କର ମହିମା ବହୁ ବର୍ଣ୍ଣିତ ହୋଇଛି । ମନ୍ତ୍ର ଦୀକ୍ଷା ଗ୍ରହଣ ଓ ତାନ୍ତ୍ରିକ ପୂଜା ନିମିତ୍ତ ଗୁରୁ ଗ୍ରହଣ ଏକାନ୍ତ ଆବଶ୍ୟକ । ତେଣୁ ତନ୍ତ୍ରରେ ଗୁରୁଙ୍କର ସ୍ଥାନ ସର୍ବାଗ୍ରରେ ।

ରୁଦ୍ରଯାମଳ ଗ୍ରନ୍ଥରେ କୁହାଯାଇଛି—

ଗୁରୁରେବ ପରୋମନ୍ତ୍ରୋ ଗୁରୁରେବ ପରୋଜପଃ ।
ଗୁରୁରେବ ପରାବିଦ୍ୟା ନାସ୍ତି କିଞ୍ଚିତ୍ ଗୁରୁଂବିନା ।

ଆଗମ ସାର ଗ୍ରନ୍ଥରେ କଥିତ ଅଛି—

'ଗ' କାରଃ ସିଦ୍ଧିଦଃ ପ୍ରୋକ୍ତୋ ରେଫଃ ପାପସ୍ୟ ଦାହକଃ
'ଉ' କାରଃ ଶିବ ଇତ୍ୟୁକ୍ତସ୍ତ୍ରିତୟାତ୍ମା ଗୁରୁଃ ପରଃ

ମନ୍ତ୍ର ଗ୍ରହଣ, ମନ୍ତ୍ରଭେଦ ଉପାୟ, ଯନ୍ତ୍ର ନିର୍ମାଣ, ଯନ୍ତ୍ରଧ୍ୟାନ ଇତ୍ୟାଦି ବିଷୟ କେବଳ ଗୁରୁଙ୍କଠାରୁ ଗ୍ରହଣ କରାଯାଇଥାଏ । ଏସବୁ ଅର୍ଥରେ ଗୁରୁଙ୍କର ସିଦ୍ଧି ନଥିଲେ ଗୁରୁ ଗୁରୁପଦବାଚ୍ୟ ନୁହନ୍ତି- କିମ୍ବା ଶିଷ୍ୟ ଗୁରୁଙ୍କ ନିର୍ଦ୍ଦେଶ ଅନୁଯାୟୀ ଯଦି ତନ୍ତ୍ର ସଂଜ୍ଞ ଭେଦ କରି ନପାରେ ସେ ମଧ୍ୟ ଶିଷ୍ୟ ପଦବାଚ୍ୟ ନୁହେଁ । ଏହି କଥାକୁ ଲକ୍ଷ୍ୟ କରି ଗୁରୁଭକ୍ତି ଗୀତାରେ କୁହାଯାଇଛି—

ଅଂଶ, ମଂଶ, ତଂଶ ଭେଦଲେ ଶିଷ୍ୟ ଜନ୍ତୁ
ତିନଭେଦ ନଜାଣିଲେ ଅଗାଡ଼ନ୍ତି ସେହୁ
ଗୁରୁ ଏହୁ ତିନ ଭେଦ ନଜାଣିଲେ ପୁଣ
ଇହପର ନୋହେ ହାସ୍ୟ ହୋଏ ତତକ୍ଷଣ ।

(ପ୍ରଥମ ଖଣ୍ଡ)

ନିର୍ଗୁଣ, ନିରାକାର, ଶୂନ୍ୟବାଚକ, ଅଚିନ୍ତ୍ୟମୟବ୍ରହ୍ମଙ୍କୁ ଦର୍ଶନ କରାଇବା ଯେପରି ଭଳି ଉତ୍ତମ ଗୁରୁର କାର୍ଯ୍ୟ, ଶୂନ୍ୟ ବ୍ରହ୍ମଙ୍କୁ ସହଜରେ ଚିହ୍ନିବା ସେହିଭଳି ଉତ୍ତମ ଶିଷ୍ୟର ଲକ୍ଷଣ ।

ଗୁରୁଭକ୍ତି ଗୀତାରେ ସେଥିପାଇଁ କୁହାଯାଇଛି—

ଗୁରୁ ଚିହ୍ନାନ୍ତି ମହାଶୂନ୍ୟ । ତେବେ ବୋଲିବା ଗୁରୁଧନ୍ୟ ।
ଯେ ଶିଷ୍ୟ ମହାଶୂନ୍ୟ ଚହ୍ନେ । ଶିଷ୍ୟ ବୋଲିବା ସେହୁ ଜନେ ।
ଯେ ମହାଶୂନ୍ୟ ଚିହ୍ନି ନାହିଁ । ସେ ଜୀବ ନିସ୍ତରିବ କାହିଁ ।

(ତୃତୀୟ ଖଣ୍ଡ ପ୍ରଥମ ଅଧ୍ୟାୟ)

ସଦଗୁରୁଙ୍କ କୃପାରୁ ହିଁ ବ୍ରହ୍ମଦର୍ଶନ ଓ ବ୍ରହ୍ମଜ୍ଞାନ ଲାଭ ହୋଇଥାଏ । କାରଣ ସେ ନିଜେ ହେଉଛନ୍ତି ବ୍ରହ୍ମଦର୍ଶୀ ଓ ବ୍ରହ୍ମମୟ । ସେଥିପାଇଁ ବଳରାମ ଦାସ ଗୁପ୍ତ ଗୀତାରେ ଲେଖିଛନ୍ତି—

ଯାହା ପଚାରିଲୁ ଅର୍ଜ୍ଜୁନ । ଗୁରୁଙ୍କୁ ସେବା କଲେ ପୁଣ ।
ଗୁରୁ ସେବାରେ ଜ୍ଞାନ ପାଇ । ଅନ୍ଧ କୂପରୁ ଉଦ୍ଧରଇ ।
ଗୁରୁ ନ ସେବିଲେ ଅର୍ଜ୍ଜୁନ । କାହୁଁ ପାଇବୁ ସଦଜ୍ଞାନ ।
ଗୁରୁଟି ବ୍ରହ୍ମା ହରିହର । ଗୁରୁଟି ସ୍ୱୟଂ ନିରାକାର ।
ଏ ଯେଣୁ ଗୁରୁ ଭଗବାନ । ସେ ନୁହେଁ ମନୁଷ୍ୟ ସମାନ ।
ଏମନ୍ତେ ଗୁରୁଙ୍କର ସେବା । ଯେ ପ୍ରାଣୀ କରେ ସେ ଦୁର୍ଲ୍ଲଭ ।

(ତୃତୀୟ ଅଧ୍ୟାୟ)

ଶ୍ରୀମଦ୍ଭାଗବତରେ ମଧ୍ୟ କୁହାଯାଇଛି—ଜ୍ଞାନଦୀପ ପ୍ରଦଗୁରୁ ସାକ୍ଷାତ୍ ଭଗବାନଙ୍କ ସ୍ୱରୂପ ଅଟନ୍ତି । ଯେଉଁ ବ୍ୟକ୍ତି ସେହି ଗୁରୁଦେବଙ୍କଠାରେ ମନୁଷ୍ୟ ଜ୍ଞାନ ପୋଷଣ କରେ ତାହାର ସମସ୍ତ ଶ୍ରବଣ (ଶାସ୍ତ୍ର ଓ ମନ୍ତ୍ରର ଶ୍ରବଣ) ହସ୍ତୀସ୍ନାନ ସଦୃଶ ବ୍ୟର୍ଥ ହୋଇଥାଏ । ଗୁରୁ ହେଉଛନ୍ତି ସାକ୍ଷାତ୍ ଭଗବାନ୍ ଏବଂ ପ୍ରଧାନ (ପ୍ରକୃତି) ଓ

ପୁରୁଷର ଈଶ୍ୱର । ଯୋଗେଶ୍ୱରଗଣ ମଧ୍ୟ ତାଙ୍କର ଚରଣ ଅନ୍ୱେଷଣ କରିଥାଆନ୍ତି । ଲୋକମାନେ ତାଙ୍କୁ ଯାହା ମନୁଷ୍ୟ ଜ୍ଞାନ କରିଥାଆନ୍ତି ତାହା ଭ୍ରାନ୍ତି ମାତ୍ର ।

ଯସ୍ୟ ସାକ୍ଷାଦ୍ଭଗବତି ଜ୍ଞାନଦୀପ ପ୍ରଦେଗୁରୌ
ମର୍ତ୍ତ୍ୟାସଦ୍ଧୀଃ ଶ୍ରୁତଂ ତସ୍ୟ ସର୍ବଂ କୁଞ୍ଜର ଶୌଚବତ୍
ଏଷ ବୈଭଗବାନ୍ ସାକ୍ଷାତ୍ ପ୍ରଧାନ ପୁରୁଷେଶ୍ୱରଃ
ଯୋଗେଶ୍ୱରୈର୍ବିମୃଗ୍ୟାଙ୍ଘ୍ରିଂ ଲୋକୋଽୟଂ ମନ୍ୟତେ ନରମ୍

[ଶ୍ରୀମଦ୍ଭାଗବତ ୭ । ୧୮ । ୨୭-୨୯]

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ଗୁରୁଙ୍କୁ ମନ୍ତ୍ର, ବୀଜମନ୍ତ୍ର ମଧ୍ୟରେ ଚହ୍ନିତ କରିଯିବାର ପ୍ରୟାସ ପରିଲକ୍ଷିତ ହୋଇଥାଏ । ତୁଳାଭିଣା ଗ୍ରନ୍ଥରେ ଜଗନ୍ନାଥ ଦାସ ହ୍ରୀଂ, କ୍ଲୀଂ, ଶ୍ରୀଂ ଏହି ତିନି ବୀଜମନ୍ତ୍ର ମଧ୍ୟରୁ ଶ୍ରୀଂ ବୀଜମନ୍ତ୍ରକୁ ଗୁରୁ ରୂପରେ ଚହ୍ନିତ କରି ଲେଖିଛନ୍ତି—

କ୍ଲୀୟଂ ଅକ୍ଷର ଜଗନ୍ନାଥ । ଶ୍ରୀୟଂଟି ଗୁରୁ ଜାଣି ତତ୍ତ୍ୱ

(ପ୍ରଥମ ଅଧ୍ୟାୟ)

ବେଦାନ୍ତସାର ଗୁପ୍ତ ଗୀତାରେ ବଳରାମ ଦାସ 'ହରେ ରାମକୃଷ୍ଣ' ମହାମନ୍ତ୍ରର 'ରାମ' ଶବ୍ଦକୁ ଗୁରୁ ଏବଂ 'ହରେ' ଶବ୍ଦକୁ ଶିଷ୍ୟ କହିଛନ୍ତି—

ଯଥା—ହରେ ଶବଦ ଶିଷ୍ୟ ଅଛି । ରାମ ଶବଦେ ଗୁରୁ ରହି । ୩୧ ।

(ଦଶମ ଅଧ୍ୟାୟ)

ଈଶ୍ୱର ଦାସ ମଧ୍ୟ ଚୈତନ୍ୟ ଭାଗବତରେ ଲେଖିଛନ୍ତି—

ହରେ ଶିଷ୍ୟସ୍ଥୂଳ ସ୍ୱରୂପ । ରାମ ଶ୍ରୀଗୁରୁ ଆପେ ଆପ । ୫୫ ।

(ଏକପଞ୍ଚାଶତ୍ ଅଧ୍ୟାୟ)

ପୁନଶ୍ଚ ସେ ପଞ୍ଚାଶତ୍ତମ ଅଧ୍ୟାୟରେ ଲେଖିଛନ୍ତି—

ଶିଷ୍ୟ ଯେ ଗୁରୁ କୃଷ୍ଣ ତିନି । ଜ୍ଞାତବ୍ୟ ମନ୍ତ୍ର ରୂପ ଘେନି
ଏ ତତ୍ତ୍ୱ ଯେ ପ୍ରାଣୀ ଜାଣନ୍ତି । ସଂସିଦ୍ଧ ସେହି ସେ ହୁଅନ୍ତି । ୧୪ ।

ଅଚ୍ୟୁତାନନ୍ଦ ସ୍ୱରଚନାରେ ଗୁରୁଙ୍କର ଅନେକ ପ୍ରକାର ବର୍ଣ୍ଣନା ନିରୂପଣ କରିଛନ୍ତି ।

ଶୂନ୍ୟସଂହିତାର ଊନବିଂଶ ଅଧ୍ୟାୟରେ ବିଦ୍ୟାଗୁରୁ, ବ୍ରହ୍ମଜ୍ଞାନ ଦାତା ଗୁରୁ ଏବଂ ପରିଚୟଗୁରୁ ଏହି ପ୍ରକାର ତିନିଗୁରୁଙ୍କର ଉଲ୍ଲେଖ କରିଛନ୍ତି । ବିଦ୍ୟାଗୁରୁଙ୍କର କାମ ହେଉଛି ଶିଷ୍ୟକୁ ବିଭିନ୍ନ ବର୍ଣ୍ଣ, ଫଳା ଓ ବେଦକୁ ପଢ଼ାଇବା । ବ୍ରହ୍ମଜ୍ଞାନ ଦାତା ଗୁରୁ ଶିଷ୍ୟକୁ ବ୍ରହ୍ମଜ୍ଞାନ ବିଷୟରେ ଉପଦେଶ ପ୍ରଦାନ କରନ୍ତି ଏବଂ ପରିଚୟ ଗୁରୁ ବ୍ରହ୍ମଙ୍କ ସହିତ ଶିଷ୍ୟର ପରିଚୟ ପ୍ରଦାନ କରି ତାକୁ ଯମ କଙ୍କାଳରୁ ମୁକ୍ତି ପ୍ରଦାନ କରନ୍ତି । ଏତଦ୍‌ବ୍ୟତୀତ ସେ ପଂଚମ ଅଧ୍ୟାୟରେ ଛାୟା ସାଧନା ଗୁରୁ ବିଷୟ ଉଲ୍ଲେଖ କରିଛନ୍ତି ।

ଛାୟାରେ ଭେଦ ଗୁରୁଦ୍ୟନ୍ତି କହି
ଗୁରୁ ନ କହିଲେ ଶିଷ୍ୟ ଜାଣିପାରେ ନାହିଁ ।

ସେହିପରି ତୃତୀୟ ଅଧ୍ୟାୟରେ ଶୂନ୍ୟ ଭଜନ ଭେଦଜ୍ଞାତା ଗୁରୁଙ୍କ ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି ।

ସାରସ୍ୱତ ନିରାକାର ଶୂନ୍ୟ ଯେ ଭଜନ
ସଦ୍‌ଗୁରୁ କୃପାକଲେ ଚିହ୍ନି ପାରେ ମନ ।

ପୁନଶ୍ଚ ସପ୍ତବିଂଶ ଅଧ୍ୟାୟରେ ନାମ ଦାତା ଗୁରୁଙ୍କର ପ୍ରଶସ୍ତି କରି ଲେଖିଛନ୍ତି—

ନାମ ରୂପରେଖ ପ୍ରତିରେ ବ୍ୟାପିଣ ସଂସାରେ ଖେଳୁ ଅଛଇ
ଗୁରୁ ଯେବେ କୃପା କରି ଚହ୍ନାଇଲେ ତେବେ ତାକୁ ଭେଟ ପାଇ ।

ଗୁରୁଭକ୍ତି ଗୀତାର ତୃତୀୟ ପଟଳରେ [ତୃତୀୟ ଖଣ୍ଡ] ବୋଧଗୁରୁ, ସୁବୀଜ ଗୁରୁ, ତତ୍ତ୍ୱଗୁରୁ ଓ ସଦ୍‌ଗୁରୁ, ଏହିପରି ଚାରିପ୍ରକାର ଗୁରୁଙ୍କର ଉଲ୍ଲେଖ ରହିଛି ।

ବୋଧଗୁରୁଙ୍କ ସମ୍ପର୍କରେ ଏହିପରି ଉଲ୍ଲେଖ ଅଛି—

ଯନ୍ତ୍ରରେ ମନ୍ତ୍ର ବୁଝିଲେଣ । ମନ୍ତ୍ରକୁ ମନ୍ତ୍ରରେ ଭେଦଣ ।
ତେବେ ଶିଷ୍ୟର ଚଉବୋଧ । ଯେ ଗୁରୁ ଜାଣେ ତତ୍ତ୍ୱବୋଧ ।
ବୋଧଗୁରୁ ଯେବେ ମିଳଇ । ଶିଷ୍ୟ ଯେ ତେବେ ବୋଧ ପାଇ ।

ସୁବୀଜ ଗୁରୁ ହେଉଛନ୍ତି ବୀଜମନ୍ତ୍ର ପ୍ରଦାତାଗୁରୁ, ଉତ୍ତମ ଗୁରୁଙ୍କଠାରୁ ବୀଜମନ୍ତ୍ର ଗ୍ରହଣ କଲେ, ସେହି ବୀଜମଂତ୍ର ଜପରେ ଶୀଘ୍ର ସିଦ୍ଧି ମିଳିଥାଏ ।

ସେଥିପାଇଁ ଗୁରୁଭକ୍ତ ଗୀତାରେ ଉଲ୍ଲେଖ ଅଛି—

ଯେ ବୀଜ ଯେ ପୁଣ ବୁଣଇ । ସେହି ବୀଜର ଯେ ପୁଣି ଜାଇ ।
ତେଣୁ ସୁବୀଜ ଗୁରୁ ଖୋଜ । ଅଗାଡ଼ି ଧାନେ କସ କାର୍ଯ୍ୟ ।

ତତ୍ତ୍ୱଗୁରୁଙ୍କ କାମ ହେଉଛି ଜ୍ୟୋତିର୍ମୟ ବ୍ରହ୍ମଙ୍କୁ ଦର୍ଶନ କରାଇ ସେଥିରୁ କେତେ ରୂପ ପ୍ରକାଶ ହୁଏ ତାହାର ତତ୍ତ୍ୱ ଶିଷ୍ୟଙ୍କୁ ବୁଝାଇ ଦେବା ।

ଗୁରୁ ଦେଖାନ୍ତି ଜ୍ୟୋତି ସ୍ଥାନ । ଜ୍ୟୋତିରୁ କେତେ ରୂପମାନ ।
ସେ ଅଂଶ ଜନମ ହୁଅନ୍ତି । ସେ କଥା ଚହ୍ନି ନପାରନ୍ତି ।
ଯେବେ ସେ ତତ୍ତ୍ୱ ଗୁରୁ ପାଇ । ସେ ସ୍ଥାନ ହଅନ୍ତି ଚହ୍ନାଇ ।
ଯେ ଗୁରୁ ସେ ସ୍ଥାନ ଚହ୍ନାଇ । ତାହାଙ୍କୁ ତତ୍ତ୍ୱଗୁରୁ କହି ।

ପଞ୍ଚମଂତ୍ରକୁ ଜାଣିଥିବା ଗୁରୁଙ୍କୁ, ଗୁରୁଭକ୍ତ ଗୀତାରେ ସଦ୍‌ଗୁରୁ କୁହାଯାଇଛି ।

ଅଣ ଅକ୍ଷର ଏକାକ୍ଷର । ତାରକ, ଶ୍ୟାମ ପଞ୍ଚାକ୍ଷର ।
ହରେ ରାମ ଯେ ମଂତ୍ର ପଞ୍ଚ । ଏ ମନ୍ତ୍ରମାନଙ୍କରେ ଉଚ ।

X X X

ଏ ପଞ୍ଚମନ୍ତ୍ର ଯେ ଜାଣଇ । ଏହାଙ୍କୁ ସଦଗୁରୁ କହି ।

ଗୁରୁଭକ୍ତ ଗୀତାରେ ଗୁରୁଙ୍କର ମହିମା ପ୍ରାୟ ସବୁଠି କୀର୍ତ୍ତିତ ହୋଇଛି । ଗୁରୁ ଆଶ୍ରୟ ବିନା ଜୀବନ କପରି ବ୍ୟର୍ଥ ହୁଏ ତାହାର ସୁନ୍ଦର ବର୍ଣ୍ଣନା ଏଥିରେ ଦେଖିବାକୁ ମିଳିଥାଏ । ଯଥା —

ସଂଶୟ ଫେଡ଼ିବା ଗୁରୁ ଲଗିଲା ତ ଧନ୍ଦ
ଗୁରୁ ନ ଚିହ୍ନିଲା ଲୋକ ହୋଇଲା ତ ଅନ୍ଧ । ୧ ।

କରୁଣା କରିବ ନାଥ ବ୍ରହ୍ମାଣ୍ଡ ଧାରଣ
ଗୁରୁ ବିନୁ ସଂସାରେ ତ ନାହିଁ ପରିତ୍ରାଣ । ୨ ।

× × ×

ଏ ଭବ ସଂସାରେ ଜାତ ହୋଇଲେ ତ ମର
ବିଷ୍ଣୁ ନଛାଡ଼ନ୍ତି ମଧ୍ୟେ ଧଇଲେଣ ଶର ।
ଗୁରୁ ଆଶ୍ରେ କରି ବିଷ୍ଣୁ ଛାଡ଼ିଲେ ସଂସାର
ନର ଦେହ ଗୋଟାକୁ ଯେ ଗୁରୁ ବଡ଼ ସାର । ୬ ।
ଶ୍ୱେତରଙ୍ଗ ଶ୍ୟାମଳ ଅଟେ ଯେଉଁ ଜ୍ୟୋତି
ତହିଁ ଜ୍ୟୋତି ମଧ୍ୟେ ରଙ୍ଗ ଗୁରୁ ରୂପ ଚନ୍ଦ୍ର । ୭ ।
ଏ ଗୁରୁଙ୍କ ଯେଉଁଜନ ପାଇଅଛି ଭେଟ
ମରିବା ଜୀଇବାକୁ ସେ ନୁହଇ ଡରନ୍ତ । ୮ ।

(ଅଷ୍ଟମ ଛାନ୍ଦ, ପ୍ରଥମ ଖଣ୍ଡ)

ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ ଏକ ବ୍ରହ୍ମଜ୍ଞାନ ତତ୍ତ୍ୱର ସାହିତ୍ୟ । ଦୁରଧିଗମ୍ୟ ଯୋଗସାଧନାର ପ୍ରତି ସ୍ତରରେ ଗୁରୁଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ନଥିଲେ ସାଧନାରେ ଅଗ୍ରଗତି ଅସମ୍ଭବ । ତେଣୁ ବଳରାମ ଦାସ ଯଥାର୍ଥରେ କହିଛନ୍ତି—

ଗୁରୁ ଶିଷ୍ୟଙ୍କ ଭେଦ ଏହି । କହୁଛି ଶୁଣ ମନ ଦେଇ ।
ଗୁରୁ ଯେ ଶିଷ୍ୟକୁ କହନ୍ତି । ଅନ୍ୟ କେ ଶମି ନପାରନ୍ତି ।
ଗୁରୁ ଶିଷ୍ୟଙ୍କ ଧନ ଏହି । ଗୁରୁ କହନ୍ତି ଏହା ଫେଇ ।

(ପ୍ରଥମ ଅଧ୍ୟାୟ)

ସେଥିପାଇଁ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟରେ ସର୍ବତ୍ର ଗୁରୁଙ୍କୁ ସର୍ବୋଚ୍ଚ ସମ୍ମାନ ପ୍ରଦାନ କରାଯାଇଛି । ଛତିଶ ଗୁପ୍ତ ଗୀତାରେ ଗୁରୁଙ୍କର ପ୍ରଶସ୍ତି କରି କୁହାଯାଇଛି—

ଗୁରୁବ୍ରହ୍ମା, ଗୁରୁଶିବ, ଗୁରୁଟି ହେ ବିଷ୍ଣୁ ଦେବ, ପିଣ୍ଡକୁ ଯେ ମୋକ୍ଷ କରି ବୁଝାଇ ଜ୍ଞାନ । ୧୫ ।

ତାହାଙ୍କୁ ଶୁଝିବା କାହିଁ, ଧନ ଯଉବନ ଦେଇ, କର୍ଣ୍ଣ ଉପଦେଶ କଥା ଏଥିକି ଦୂର । ୧୬ ।

X X X

ତାହାଠାରୁ ବଳନାହିଁ, ବ୍ରହ୍ମକୁ ଦେଲା ଚହ୍ନାଇ, ଉତ୍ତମ ଗୁରୁଟି ସେହି ସର୍ବ ଉପରେ ।

ତାହାଙ୍କୁ ସେବା କରିବା, ସୁଚିତ୍ତେ ଦେହେ ରହିବା, ତେବେଣ ସେ ସନ୍ତୋଷ ହେବେ ତାଙ୍କ ଚିତ୍ତରେ । ୧୭ ।

ଏହିଟି ପରମ ତତ୍ତ୍ୱ, ଏକା ଚେତିଥିବୁ ପାର୍ଥ, ଗୁରୁଙ୍କୁ ତୁ ମୋର ପରିସ୍ତେ ମଣିଥିବୁ ।

ଅନ୍ୟ ଦୃଷ୍ଟି ହେବ ନାହିଁ, ପର ନ ମଣିବୁ ବୁଦ୍ଧି, ପରମ ବ୍ରହ୍ମ ପୁରୁଷ ତାକୁ ମଣିବୁ । ୧୮ ।

ସେଠାବରେ ଦ୍ରୋହ କଲେ, ନବର୍ତିଟି ଉନକାଳେ, ଉନଦନ ଉନମାସ, ଉନ ବରଷ ।

ଅବଶ୍ୟ ପାଇ କଷଣ, ଦୁଃଖ ହିଂସା ତନୁଦନ, ପୁତ୍ରଧନ କ୍ଷୟ ଯାଇ ଆପଣେ ଶେଷ । ୧୯ ।

(ଦଶମ ଅଧ୍ୟାୟ)

ଗୁରୁବାଦ ଭାରତୀୟ ଧର୍ମ ପରମ୍ପରାରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ଓଡ଼ିଆ ଜ୍ଞାନମିଶ୍ରା ଭକ୍ତ ସାଧକ ବୃନ୍ଦ ଦାୟାଦ ସୂତ୍ରରେ ତାହା ଆହରଣ କରି ନିଜ ନିଜର ସାହିତ୍ୟରେ ତାହାର ପ୍ରତିଫଳନ କରାଇଛନ୍ତି ମାତ୍ର । ସେହି ପ୍ରତିଫଳନ ମଧ୍ୟରେ ରହିଛି ସେମାନଙ୍କର ସ୍ୱକୀୟ ଆଭିମୁଖ୍ୟ ଓ ଉପସ୍ଥାପନା କୌଶଳ ।



